# "ଜ୍ଞାନାଞ୍ଜନ"

ଶ୍ରୀ ନାରାୟଣ ତ୍ରିପାଠୀ, ବିଦ୍ୟାଭୂଷଣ
ସାହିତ୍ୟ, ସାଂଖ୍ୟ, ଉପାଧ୍ୟାୟ
ବ୍ୟାକରଣ, ଜ୍ୟୋତିଷ, ବିଶାରଦ
ଅଧ୍ୟାପକ ରେଭେନ୍ସା କଲେଜ,
ପରମ ଗୁରୁ
ପୁରୀ ରାଜଭବନ

—ପ୍ରଥମ ସଂସ୍କରଣ—

ମୂଲ୍ୟ ଟ ୨ ୴ ଦୁଇଟଙ୍କା ବାରଅଣା

Digitized by srujanika@gmail.com

ଅଶେଷ ସଦ୍‌ଗୁଣାଲଂକୃତ ପଣ୍ଡିତପ୍ରବର, ଉତ୍କଳର ପ୍ରଧାନମନ୍ତ୍ରୀ

# ଡକ୍‌ଟର ଶ୍ରୀ ହରେକୃଷ୍ଣ ମହତାବ

## ମହୋଦୟେଷୁ—

ସବିନୟ ନିବେଦନ

**ମାନ୍ୟବର !**

କଥୋପକଥନ ସମୟରେ ଆପଣ ଦିନେ ତନ୍ତ୍ରଶାସ୍ତ୍ରର ରହସ୍ୟ ପଚାରିଥିଲେ । କିଛିକ୍ଷଣ ଆଲୋଚନା ପରେ ପୁନଃପୁନଃ ଆଲୋଚନା କରିବାକୁ ଇଚ୍ଛା ପ୍ରକାଶ କରିବାରୁ, ଆପଣଙ୍କର ତନ୍ତ୍ରପ୍ରତି ବିଶେଷ ଆଗ୍ରହ ଦେଖି ଓ ଉତ୍ସାହିତ ହୋଇ ଲିଖିତାକାରରେ ଯଥା ସମ୍ଭବ ସେ ସମସ୍ତ ଜଣାଇବି ବୋଲି କହିଥିଲି । ଆଜି ସେ ଦିନର ପ୍ରତିଶ୍ରୁତି କାର୍ଯ୍ୟରେ ପରିଣତ ହୋଇଅଛି ।

ଭବଦୀୟ ପାଣ୍ଡିତ୍ୟ ଓ ସୌଜନ୍ୟରେ ମୁଗ୍ଧହୋଇ ମୁଁ ଏହି "ଜ୍ଞାନାଞ୍ଜନ" ବହିଖଣ୍ଡିକ ଆପଣଙ୍କ କରକମଳରେ ଅର୍ପଣକଲି । ସାଦରେ ଏହାକୁ ଗ୍ରହଣ କଲେ ନିଜକୁ ଧନ୍ୟ ମନେକରିବି । ଇତି ।

ଭବଦୀୟ ମଙ୍ଗଳାକାଙ୍‌କ୍ଷୀ
**ଶ୍ରୀ ନାରାୟଣ ତ୍ରିପାଠୀ**
ବିଦ୍ୟାଭୂଷଣ

Digitized by srujanika@gmail.com

## ପ୍ରଥମ ଭାଗ



## ଦ୍ୱିତୀୟ ଭାଗ



Digitized by srujanika@gmail.com

| ବିଷୟ | ପୃଷ୍ଠା |
|---|---|



---

## ତୃତୀୟ ଭାଗ

| ବିଷୟ | ପୃଷ୍ଠା |
|---|---|



---

Digitized by srujanika@gmail.com

# ଭୂମିକା

ମୋର ସୌଭାଗ୍ୟର ବିଷୟ, ଅଧ୍ୟାପକ ପଣ୍ଡିତ ଶ୍ରୀ ନାରାୟଣ ତ୍ରିପାଠୀ; ବିଦ୍ୟାଭୂଷଣ, ସାହିତ୍ୟ , ସାଂଖ୍ୟ, ଉପାଧ୍ୟାୟ, ବ୍ୟାକରଣ, ଜ୍ୟୋତିଷ ବିଶାରଦଙ୍କର ରଚିତ "ଜ୍ଞାନାଞ୍ଜନ" ପୁସ୍ତକର ପାଣ୍ଡୁଲିପି ଖଣ୍ଡି ପ୍ରକାଶନ ଉଦ୍ଦେଶ୍ୟରେ ଛାପାଖାନାକୁ ଯିବା ପୂର୍ବରୁ ମୁଁ ପଢ଼ିବାର ସୁଯୋଗ ପାଇଥିଲି ।

ସେ ଦେବୀ * ଜଗତତାରିଣୀଙ୍କର ନିଷ୍ଠାପର ଭକ୍ତ । ୧୭ ବର୍ଷ ବୟସରୁ ସେ ବୈଷ୍ଣବ ରୀତିରେ ତନ୍ତ୍ର ଉପାସନା କରି ଆସୁଛନ୍ତି । ଧର୍ମର ପ୍ରକୃତ ତତ୍ତ୍ୱ ଜାଣିବା ନିମନ୍ତେ ଉତ୍ସୁକ ହୋଇ ବିଭିନ୍ନ ଧର୍ମର ଶାସ୍ତ୍ରମାନ ଅଧ୍ୟୟନ କରିଥିଲେ । ମୂର୍ତ୍ତି ପୂଜା ପ୍ରତି ତାଙ୍କର ଘୋର ଅବିଶ୍ୱାସ ଜାତ ହେବା ସମୟରେ ପୁରୀଜିଲ୍ଲା ଭୁବନେଶ୍ୱରର ରେଲ୍‌ୱେ ଷ୍ଟେସନ ନିକଟସ୍ଥ ଶ୍ରୀ ଜଗତତାରିଣୀ ତାଙ୍କୁ ସ୍ୱପ୍ନରେ ଆଦେଶ ଦେଲେ, "ମୋ ପୀଠର ଉତ୍ତର ପାର୍ଶ୍ୱସ୍ଥ ଖଜୁରୀବନ୍ଧ ପୂର୍ବପାଖ ବରଗଛ ମୂଳ ଖୋଳି ଯେଉଁ ଜିନିଷ ପାଇବୁ, ତାକୁ ନେଇ ମୋ ପୀଠରେ କାର୍ଯ୍ୟ କରିବୁ ଓ ସେହି ମନ୍ତ୍ରହିଁ ତୋର ଉପାସ୍ୟ ହେବ । ଭିକ୍ଷା ଦ୍ୱାରା ମୋ ମନ୍ଦିର ନିର୍ମାଣ କରାଇବୁ । ମୟୂରଭଞ୍ଜର ସରାଳୀ, କଟାଳୀ ଓ ବୃନ୍ଦାବନଙ୍କ ଧାରରୁ ପ୍ରାପ୍ତ ମନ୍ତ୍ର ( ଯାହା ସବୁ ପୂର୍ବରୁ ଗ୍ରହଣ କରିଥିଲୁ ) ସାମୟିକ ଫଳ ପ୍ରଦାନ କରିବ ।" ଖୋଲ୍ ଗାଁ ବନ ନିକଟସ୍ଥ ମନ୍ତ୍ର ମଧ୍ୟ ।

ସ୍ୱପ୍ନାଦେଶକୁ ପରଖିବା ସକାଶେ ଖଜୁରୀ ବନ୍ଧର ପୂର୍ବ ପାଖରେ ଥିବା ବରଗଛ ମୂଳ ଖୋଳିଲେ । ଆଶ୍ଚର୍ଯ୍ୟର କଥା, ଖୋଳିବା ସ୍ଥାନରୁ ହିଙ୍ଗୁଳ ନିର୍ମିତ ତାରାମନ୍ତ୍ର ପ୍ରତିଷ୍ଠିତ ଗୋଟିଏ ଯନ୍ତ୍ର ଏବଂ ଖଣ୍ଡିଏ ତାଳପତ୍ର ପୋଥି ପାଇଲେ । ଯନ୍ତ୍ରଟିରେ ଅଷ୍ଟାକ୍ଷର ମନ୍ତ୍ରଟି ତାନ୍ତ୍ରିକ ବିଧାନରେ ବିନ୍ୟସ୍ତ ଥିଲା ।

---

* ତାରାଦେବୀଙ୍କର

Digitized by srujanika@gmail.com

ତାଳପତ୍ର ପୋଥିରେ ତାର ରହସ୍ୟ ଆଧ୍ୟାତ୍ମିକ ବ୍ୟାଖ୍ୟା ସହିତ ଲିଖିତ ଥିଲା ।

ସେହି ଦିନଠାରୁ ହିନ୍ଦୁଧର୍ମର ପୋଥି, ପୁରାଣ, ପୂଜା ପଦ୍ଧତି, ମନ୍ତ୍ର ଯନ୍ତ୍ର ପ୍ରତି ତାଙ୍କ ମନରେ ଦୃଢ଼ ବିଶ୍ୱାସ ଜନ୍ମିଲା । ସ୍ୱପ୍ନାଦେଶ ଅନୁଯାୟୀ ତ୍ରିପାଠୀ ମହାଶୟ ଜଗନ୍ନାଥ ଭଗବାନ୍ ପୀଠରେ ଅର୍ଦ୍ଧ ଲକ୍ଷାଧିକ ଟଙ୍କା ବ୍ୟୟ ଦ୍ୱାରା ଏକାଧିକ ଶିବ ମନ୍ଦିର, ମୁଖଶାଳା ଓ ଧର୍ମଶାଳା ପ୍ରଭୃତି ନିର୍ମାଣ କରାଇ ଅକ୍ଷୟ କୀର୍ତ୍ତି ଅର୍ଜନ କରିଅଛନ୍ତି ।

ସେହି ମନ୍ତ୍ରବଳରେ ନିଜର ଅଗାଧ ପାଣ୍ଡିତ୍ୟ ଲାଭ କରି ଜଣେ ସାଧାରଣ ଟୋଲ୍ ପଣ୍ଡିତ ପଦରୁ ଆଜି ସେ ରେଭେନ୍ସା କଲେଜର ଅଧ୍ୟାପକ ପଦକୁ ଉନ୍ନୀତ ହୋଇ ପାରିଛନ୍ତି ।

ଆଜି କାଲିକାର ରକେଟ୍ ଯୁଗରେ ତଥା ବିଜ୍ଞାନୋନ୍ନତ ଭୌତିକ ପୃଥିବୀରେ ସୁଧୀ ସମାଜ ଆମ ହିନ୍ଦୁଧର୍ମର ମନ୍ତ୍ର, ଯନ୍ତ୍ର, ତନ୍ତ୍ର ଓ ଶାସ୍ତ୍ରକୁ ଗବେଷଣା କରିବା ଦୂରେ ଥାଉ ଥରେ ଅଧେ ପଢ଼ିବାକୁ ମଧ୍ୟ କୁଣ୍ଠିତ ହେଉ ଅଛନ୍ତି ।

ଆମ୍ଭମାନଙ୍କର ସମସ୍ତ ମୂଳ ଧର୍ମଶାସ୍ତ୍ର ସଂସ୍କୃତ ଭାଷାରେ ଲିଖିତ । ବିଦେଶୀ ଶାସନ ଅମଳରେ ସଂସ୍କୃତ, ଜର୍ମାନ୍ ପ୍ରଭୃତି ବିଜ୍ଞାନୋନ୍ନତ ଦେଶମାନଙ୍କରେ ଅଦୃତ ହେଉଥିଲେ ସୁଦ୍ଧା ଆମ ଦେଶର ସୁଧୀ ସମାଜରେ ମୃତଭାଷା ( Dead Language ) ବୋଲି ଅବହେଳିତ ।

ସ୍ୱାଧୀନତା ଲାଭ ପରେ ଶିକ୍ଷିତ ସମାଜର ସଂସ୍କୃତ ଭାଷାପ୍ରତି ସୁଦୃଷ୍ଟି ପଡ଼ୁଥିଲେ ସୁଦ୍ଧା ଆଧୁନିକ ବୈଜ୍ଞାନିକମାନଙ୍କର ବିଶ୍ୱାସ ଜନ୍ମି ନାହିଁ ଆମର ଏ ଭାଷାରେ ବା ଆମର ଏ ଭାରତବର୍ଷରେ ଏ ଯୁଗର ନବ ଆବିଷ୍କୃତ ବୈଜ୍ଞାନିକ ତଥ୍ୟମାନଙ୍କର କୌଣସି ସତ୍ତା ଥିଲା ବୋଲି ।

Digitized by srujanika@gmail.com

ପକ୍ଷବିଗ୍ରାହୀ ପାଣ୍ଡିତ୍ୟ ନ ଦେଖାଇ ସଂସ୍କୃତ ଲିଖିତ ପୁରାତନ ଶାସ୍ତ୍ରମାନ ଗବେଷଣା ମୂଳକ ଅଧ୍ୟୟନ କଲେ, ବିଦୁଷ, ବିଦୁଷୀମାନେ ହୃଦୟଙ୍ଗମ କରିବେ—ଯାହା ସଂସ୍କୃତରେ ଅଛି, ତାହା ଭାରତରେ ଅଛି—ଯାହା ଭାରତରେ ଅଛି, ତାହା ପୃଥିବୀରେ ଧୀରେ ଧୀରେ ଆବିଷ୍କୃତ ହେଉଛି, ନୂତନତ୍ୱ କିଛି ନାହିଁ ।

ପୃଥିବୀ ମାନଚିତ୍ର କାନ୍ଥରେ ଟାଙ୍ଗି ଦେଇ ଶିକ୍ଷକ ଯେପରି ପଏଣ୍ଟର ବା ନିର୍ଦ୍ଦେଶକ ସାହାଯ୍ୟରେ ବିଭିନ୍ନ ସ୍ଥାନମାନ ଦେଖାଇ ଦିଅନ୍ତି, ଅଧ୍ୟାପକ ମହାଶୟ ସେହିପରି ଏ ପୁସ୍ତକରେ ବିଭିନ୍ନ ପ୍ରବନ୍ଧରେ ବହୁ ନବଯୁଗ ଆବିଷ୍କୃତ ବିଜ୍ଞାନ ସମ୍ବଳିତ ତଥ୍ୟମାନ ଆମ ଦେଶରେ ତଥା ସଂସ୍କୃତ ଭାଷାର ବିଭିନ୍ନ ଶାସ୍ତ୍ରରେ କିପରି ଲିପିବଦ୍ଧ ହୋଇ ରହିଛି, ତାହା ସେ ଦର୍ଶାଇଛନ୍ତି ।

ତା’ ପରେ ସଂସ୍କୃତ ଭାଷାରେ ଲିଖିତ ଶାସ୍ତ୍ରର ବିଷୟକୁ ଅର୍ଦ୍ଧଶିକ୍ଷିତ ପକ୍ଷବିଗ୍ରାହୀ ଟୀକାକାରମାନେ କିପରି କଦର୍ଥ କରିଛନ୍ତି, ତାହା ମଧ୍ୟ ଦର୍ଶାଇଛନ୍ତି ।

ନବ ଯୁଗର ଉତ୍ସାହୀ, ଉଦ୍ୟମଶୀଳ ଓ ଅଗ୍ରହୀ ସୁଧିବୃନ୍ଦ ଜ୍ଞାନାଞ୍ଜନ ଲିଖିତ ବିଷୟଗୁଡ଼ିକ ପାଠ କରି ନୂତନ ନୂତନ ତଥ୍ୟମାନ ଗବେଷଣା କରି ନିଜ ନିଜର ଜ୍ଞାନ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଜନସମାଜର ପ୍ରଭୂତ ମଙ୍ଗଳ ସାଧନ କରିବେ ବୋଲି ଆଶା ।

ଶ୍ରୀ ବୀରକିଶୋର ଦାସ

Digitized by srujanika@gmail.com

ସଂସ୍କୃତ ଭାଷା ଭାରତବର୍ଷର ହୃତ୍‌ପିଣ୍ଡ । ସଂସ୍କୃତ ନ ଶିଖିଲେ ଆମ ଦେଶକୁ ତଥା ଆମ୍ଭ ଜାତିକୁ ଚହ୍ନିବା ସହଜ ନୁହେଁ । ସେହି ସଂସ୍କୃତ ଭାଷାର ପ୍ରଥମ ସିଂହଦ୍ୱାର ଶବ୍ଦଶାସ୍ତ୍ର । ଭବ ଲେଖିଛନ୍ତି :—

"ଅନନ୍ତ ପାରଂ କିଲ ଶବ୍ଦଶାସ୍ତ୍ରଂ ସ୍ୱଳ୍ପଂ ତଥାୟୁ ର୍ବହବଶ୍ଚବିଘ୍ନାଃ ।"

ପ୍ରଥମେ ସେହି ଶବ୍ଦଶାସ୍ତ୍ର ଅଧ୍ୟୟନ କରି ତଥା ଅନ୍ୟାନ୍ୟ ପ୍ରକାଶିତ ଓ ଅପ୍ରକାଶିତ ଶାସ୍ତ୍ରମାନ ଚର୍ଚ୍ଚାକରି ମୁଁ ଏହି ଯେ କେତୋଟି ପ୍ରବନ୍ଧ ଲେଖିଛି; ତାହା ଦେଶର ବିଦ୍ୱାନ ଓ ବିଦୁଷୀ-ମାନଙ୍କର ଜ୍ଞାନମାର୍ଗର ନିର୍ଦ୍ଦେଶକ ହେବ ବୋଲି ମୋହର ଆଶା ।

ପାଠକ ଓ ପାଠିକାମାନେ ପ୍ରବନ୍ଧଗୁଡ଼ିକ ପାଠ କରି ତାହାର ସତ୍ୟାସତ୍ୟ ଗବେଷଣା କଲେ, ନିଜକୁ ଧନ୍ୟ ମନେ କରିବି ଓ ଉତ୍ତରୋତ୍ତର ଉତ୍ସାହିତ ହୋଇ ଅନ୍ୟାନ୍ୟ ପ୍ରବନ୍ଧଗୁଡ଼ିକ ପ୍ରକାଶନ ନିମନ୍ତେ ଉଦ୍ୟମ କରିବି ।

ଏହି ଜ୍ଞାନାଞ୍ଜନ ବହି ଖଣ୍ଡିକ ପାଠ କରି ଜାତୀୟ କବି ଶ୍ରୀମାନ୍ ବୀର କିଶୋର ଦାସ ମତେ ଯେଉଁ ଉତ୍ସାହ ଦେଇ ଅଛନ୍ତି, ସେଥିଲାଗି ମୁଁ ତାଙ୍କ ନିକଟରେ କୃତଜ୍ଞ । ଇତି ।

ଶ୍ରୀ ନାରାୟଣ ତ୍ରିପାଠୀ

Digitized by srujanika@gmail.com

# ଶ୍ରୀମଦ୍‌ଭଗବଦ୍ ଗୀତା
# ଓ
# ଭାରତୀୟ ଦର୍ଶନ



ଶ୍ରୀମଦ୍ ଭଗବଦ୍ ଗୀତା ଭାରତୀୟ ଆର୍ଯ୍ୟ ଧର୍ମ ଶାସ୍ତ୍ରମାନଙ୍କ ମଧ୍ୟରେ ଗୋଟିଏ ଉଜ୍ଜ୍ୱଳ ରତ୍ନ । ପୃଥିବୀରେ ଏପର୍ଯ୍ୟନ୍ତ ପ୍ରକାଶିତ ହୋଇଥିବା ଧର୍ମଶାସ୍ତ୍ର ମାନଙ୍କ ମଧ୍ୟରେ ଏହାର ବିଶିଷ୍ଟତା ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ଦେଶର ପଣ୍ଡିତମାନେ ଏକବାକ୍ୟରେ ସ୍ୱୀକାର କରିଅଛନ୍ତି । ପରିଦୃଶ୍ୟମାନ ଜଡ଼ ବ୍ରହ୍ମାଣ୍ଡ ଜ୍ଞାନ ସଙ୍ଗେ ଅଧ୍ୟାତ୍ମ ତତ୍ତ୍ୱ ସଂକ୍ଷେପରେ ଅଥଚ ଅସନ୍ଦିଗ୍ଧ ରୂପେ ବିବୃତ କରି ଏହି ଅପୂର୍ବ ଗ୍ରନ୍ଥ ମାନବ ସମାଜକୁ ସତ୍ୟର ଅନୁସନ୍ଧାନ ପାଇଁ ଯେଉଁ ଉଜ୍ଜ୍ୱଳ ପଥ ଦେଖାଇ ଦେଇଅଛି, କେବଳ ସଂସ୍କୃତ ସାହିତ୍ୟରେ ନୁହେ, ଜଗତର ଯେ କୌଣସି ସାହିତ୍ୟରେ ତାହା ଦୁର୍ଲ୍ଲଭ । ଏହା ଶାତ ଶହ ଶ୍ଲୋକ ବିଶିଷ୍ଟ ଗୋଟିଏ କ୍ଷୁଦ୍ର ଗ୍ରନ୍ଥ; ତଥାପି ଏହା ସର୍ବ ଧର୍ମର ସାର; ଯେପରି ସମୁଦ୍ର ମନ୍ଥନରୁ ଅମୃତର ଉତ୍ପତ୍ତି ହୋଇଥିଲା, ସେହିପରି ଶାସ୍ତ୍ରସମୁଦ୍ର ମନ୍ଥନରୁ ଏହି ଗୀତାରୂପ ଅମୃତ ଉତ୍ପନ୍ନ ହୋଇଅଛି, ସେହି ହେତୁରୁ କୁହାଯାଏ "ଗୀତା ସୁଗୀତା କର୍ତ୍ତବ୍ୟା କିମନ୍ୟୈଃ ଶାସ୍ତ୍ର ବିସ୍ତରୈଃ" ।

Digitized by srujanika@gmail.com

'ସାର୍ବଭୌମତା ଗୀତାର ଗୋଟିଏ ବିଶେଷତ୍ୱ । ପୃଥିବୀର ପ୍ରତ୍ୟେକ ଧର୍ମମତରେ ଯେଉଁ ସାମ୍ପ୍ରଦାୟିକତା ବା ସଙ୍କୀର୍ଣ୍ଣତା ଦେଖାଯାଏ, ଗୀତାରେ ସେପରି ଭାବ ଥିଲେ ତାହା ଅନ୍ୟ ବିଭିନ୍ନ ଧର୍ମାବଲମ୍ବୀଙ୍କ ମଧ୍ୟରେ ଏତେଲା ଆଦୃତ ହେଇ ନ ଥାନ୍ତା । ଏହା ଗୋଟିଏ ବିଶ୍ୱତୋମୁଖ ଗ୍ରନ୍ଥ । କର୍ମୀ, ଜ୍ଞାନୀ, ଯୋଗୀ, ଭକ୍ତ ଓ ସାଧକ ଏହାକୁ ସମାନଦୃଷ୍ଟିରେ ଦେଖନ୍ତି । ଏହାର ପ୍ରଧାନ କାରଣ ଗୀତାର ବ୍ୟଞ୍ଜନା ଶକ୍ତି ।

ଏହା ସତ୍ୟର ସୂର୍ଯ୍ୟ ସ୍ୱରୂପ; ସୂର୍ଯ୍ୟ ରଶ୍ମି ସର୍ବବିଧ ବର୍ଣ୍ଣର ସମନ୍ୱୟ, ଯେଉଁ ପୁଷ୍ପ ଯେଉଁ ବର୍ଣ୍ଣ ପ୍ରତି ଫଳିତ କରିପାରେ ସେହି ପୁଷ୍ପ ସୂର୍ଯ୍ୟ କିରଣରେ ସେହି ବର୍ଣ୍ଣ ଧାରଣ କରେ । ସୂର୍ଯ୍ୟ ରଶ୍ମି ଯେବେ ସବୁ ବର୍ଣ୍ଣର ସମନ୍ୱୟ ନ ହୋଇ ନୀଳ, ପୀତ ବା ହରିତ୍‌ବର୍ଣ୍ଣ ହୋଇଥାନ୍ତା ତେବେ ସବୁ ବର୍ଣ୍ଣର ପୁଷ୍ପ ସେ ଆଲୋକରେ ପ୍ରକାଶିତ ହୋଇ ପାରନ୍ତା ନାହିଁ, ସେହିପରି ଗୀତା ଯେବେ ସମସ୍ତ ସାର ସତ୍ୟରସମନ୍ୱୟ ନ କରି ସତ୍ୟର ଏକ ଅଂଶ ମାତ୍ର ପ୍ରକଟିତ କରୁଥାଆନ୍ତା ତେବେ ତାହା କେବେହେଁ ବିଶ୍ୱବାସୀ ସମସ୍ତଙ୍କର ଚିତ୍ତ ଉଦ୍‌ଭାସିତ କରିପାରନ୍ତା ନାହିଁ ।

ଗୀତା ମହାଭାରତର ଅଂଶ ବିଶେଷ, ଏ ଯୁଗର ପ୍ରତ୍ନତତ୍ତ୍ୱ ଅନୁସନ୍ଧିତ୍ସୁ ପଣ୍ଡିତମାନେ ନିର୍ଣ୍ଣୟ କରି ଅଛନ୍ତି ଯେ, ଖ୍ରୀଷ୍ଟଜନ୍ମର ୧୪୦୦ ବର୍ଷ ପୂର୍ବେ ମହାଭାରତ ରଚିତ ହୋଇଥିଲା । ଭାରତୀୟ ଆର୍ଯ୍ୟ ସଭ୍ୟତା ଖ୍ରୀଷ୍ଟଜନ୍ମର ପାଞ୍ଚହଜାର ବର୍ଷ ପୂର୍ବେ ଆରମ୍ଭ ହୋଇଥିଲା ବୋଲି ନିର୍ଦ୍ଧାରିତ ହୋଇଅଛି । ସୁତରାଂ ବୈଦିକ ସଭ୍ୟତାର କାଳ ମହାଭାରତ ରଚନାର ପ୍ରାୟ ତିନିହଜାର ବର୍ଷ ପୂର୍ବେ । ବେଦ ପୃଥିବୀର ଗ୍ରନ୍ଥାଗାରରେ ପ୍ରାଚୀନତମ ଗ୍ରନ୍ଥ । ଏହା ସମସ୍ତେ ସ୍ୱୀକାର କରନ୍ତି । ବେଦର ସଂହିତା ଓ ବ୍ରାହ୍ମଣ ଅଂଶ

Digitized by srujanika@gmail.com

'କର୍ମକାଣ୍ଡାତ୍ମକ ଏବଂ ଅରଣ୍ୟକ ଓ ଉପନିଷଦ୍ ଅଂଶ ଜ୍ଞାନ କାଣ୍ଡାତ୍ମକ 'ପ୍ରଥମେ କର୍ମକାଣ୍ଡର ପ୍ରଭାବ । ଐହିକ ଓ ପାରଲୌକିକ ସଦ୍‌ଗତି କାମନାରେ ଯଜ୍ଞ କରିବାର ବିଧି ଏହି କର୍ମକାଣ୍ଡାତ୍ମକ ସଂହିତା ଓ ବ୍ରାହ୍ମଣ ଅଂଶର ପ୍ରତିପାଦିତ ବିଷୟ ବସ୍ତୁ । ସେହି ଆଦିମ ଯୁଗରେ ଏହାହିଁ ଧର୍ମଲାଭର ଏକମାତ୍ର ଉପାୟ ଥିଲା । ଖ୍ରୀଷ୍ଟ ପୂର୍ବ ପଞ୍ଚମ ଶତାବ୍ଦୀରୁ ଖ୍ରୀଷ୍ଟାବ୍ଦ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାୟ ଛଅହଜାର ବର୍ଷ ସମଗ୍ର ଭାରତର ନାନା ସ୍ଥଳରେ ଏହି ଯଜ୍ଞୀୟ ବ୍ୟାପାର ମହା ଆଡ଼ମ୍ବରରେ ସମାହିତ ହେଉଥିଲା । ଦିଲ୍ଲୀର ଶେଷ ସ୍ୱାଧୀନ ହିନ୍ଦୁରାଜା ପୃଥ୍ୱୀରାଜ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀର ଶେଷ ପାଦରେ ଯେଉଁ ଅଶ୍ୱମେଧ ଯଜ୍ଞ କରିଥିଲେ ତାହାହିଁ ଭାରତରେ ସର୍ବଶେଷ ଅଶ୍ୱମେଧ ଯଜ୍ଞ । ଏହି ସମୟରେ ସ୍ମୃତିକାରମାନେ ପ୍ରଚାରକଲେ—

ଅଶ୍ୱାଲମ୍ଭଂ ଗବାଲମ୍ଭଂ ସନ୍ନ୍ୟାସଂ ପଲପୈତ୍ରିକମ୍ ।
ଦେବରେଣ ସୁତୋତ୍ପତ୍ତିଂ କଲୌ ପଞ୍ଚ ବିବର୍ଜୟେତ୍ ॥

ଅଶ୍ୱମେଧ ଯଜ୍ଞ, ଗୋମେଧ ଯଜ୍ଞ, ସନ୍ନ୍ୟାସାଶ୍ରମ, ମାଂସ ଦ୍ୱାରା ପିତୃଶ୍ରାଦ୍ଧ ସମ୍ପାଦନ ଓ ବିଧବାର ଦେବର ଦ୍ୱାରା ବଂଶରକ୍ଷା ଉଦ୍ଦେଶ୍ୟରେ ସନ୍ତାନ ଉତ୍ପାଦନ— କଳିଯୁଗରେ ଏ ସବୁ ତ୍ୟାଗ କରିବା ଉଚିତ । ଏହି ଦୀର୍ଘକାଳ ମଧ୍ୟରେ ଏ ଦେଶରେ ଅର୍ଯ୍ୟଋଷିମାନେ ଏହିସବୁ ସକାମ ଯଜ୍ଞରେ ଆତ୍ମସନ୍ତୋଷ ଲାଭ କରି ନ ପାରି ପ୍ରକୃତ ସତ୍ୟ ଅନୁସନ୍ଧାନ ପାଇଁ ଗଭୀର ସମାଧି ସାଗରରେ ନିମଗ୍ନ ରହିଲେ ଓ ଜ୍ଞାନଚକ୍ଷୁରେ ଦେଖିପାରିଲେ ଅନନ୍ତକାଳ ପାରିବାର ଏକ ଦିବ୍ୟଜ୍ୟୋତିରେ ଉଦ୍ଭାସିତ ହେଉଅଛି । ତାହାହିଁ "ବ୍ରହ୍ମଜ୍ୟୋତିଃ" ଏହି ସତ୍ୟ ପ୍ରଚାରିତ ହେବାପରେ ଆର୍ଯ୍ୟ ଭୂମିରେ ଧର୍ମର ପ୍ରକୃତ ତତ୍ତ୍ୱ ଅନୁସନ୍ଧିତ୍ସୁ ମାନଙ୍କର ଚିନ୍ତାର ସ୍ରୋତ ପରିବର୍ତ୍ତିତ

Digitized by srujanika@gmail.com

ହୋଇଗଲା, ଏହା ସେହି ବୈଦିକ ଯୁଗର କାର୍ଯ୍ୟ । ବୈଦିକ ଯୁଗରୁ ପ୍ରଥମ ଭାଗରେ ଯେଉଁ ସକାମ କର୍ମ ପ୍ରବଣତାରୁ ଯଜ୍ଞୀୟ କ୍ରିୟା କାଣ୍ଡର ଉତ୍ପତ୍ତି, ସେହି ବୈଦିକ ଯୁଗର ପରବର୍ତ୍ତୀ ଚିନ୍ତାଧାରାରୁ ଏହି ଜ୍ଞାନବାଦର ଉତ୍ପତ୍ତି । ବେଦର ଆରଣ୍ୟକ ଓ ଉପନିଷଦ୍‌ ଭାଗ ବା ଜ୍ଞାନ କାଣ୍ଡର ପ୍ରଚୁର ପରେ ଅବଶ୍ୟ ସଂହିତା ଓ ବ୍ରାହ୍ମଣଭାଗ ବା କର୍ମକାଣ୍ଡର ଅପ୍ରତିହତ ପ୍ରଭାବ କମିଗଲା । ତଥାପି ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀର ଶେଷପର୍ଯ୍ୟନ୍ତ ସମାଜରେ ଏହାର ପ୍ରଭାବ ଅକ୍ଷୁନ୍ନ ଥିଲା ।

ବୈଦିକ ଜ୍ଞାନ କାଣ୍ଡର ପ୍ରବର୍ତ୍ତକ ଆର୍ଯ୍ୟ ଋଷିମାନେ ପ୍ରଚାରିଲେ—

"ଶ୍ରୋତବ୍ୟଃ ଶ୍ରୁତିବାକ୍ୟେଭ୍ୟୋ ମନ୍ତବ୍ୟଶ୍ଚୋପପତ୍ତିଭିଃ ।
ମତ୍ୱା ଚ ସତତଂ ଧ୍ୟେୟଃ ଏତେ ଦର୍ଶନ ହେତବଃ" ।

"ଶ୍ରୁତିବାକ୍ୟ ଶ୍ରବଣ କରିବାକୁ ହେବ, ଏବଂ ସେହି ଶ୍ରୁତିବାକ୍ୟ ସମୂହ ପରସ୍ପର ସମନ୍ୱୟ କରି 'ମନନ' କରିବାକୁ ହେବ, ଏବଂ ସେ ସମ୍ବନ୍ଧରେ ଏକାଗ୍ର ଚିତ୍ତରେ ଧ୍ୟାନ ( ନିଦିଧ୍ୟାସନ ) କରିବାକୁ ହେବ, ତେବେ ପ୍ରକୃତ ସତ୍ୟର ଦର୍ଶନ ମିଳିବ" ।

ଏହି ଜ୍ଞାନକାଣ୍ଡ ବା ଉପନିଷଦ୍‌ର ମନ୍ତ୍ର ଗୁଡ଼ିକ 'ଶ୍ରୁତି' ନାମରେ ଅଭିହିତ ହୁଏ ଏବଂ ଶ୍ରୁତି ଓ ସ୍ମୃତିର ବଚନ ମାନ ଆପ୍ତବାକ୍ୟ ବୋଲି ଧରାଯାଏ ଚରମ ସତ୍ୟ "ନିର୍ଣ୍ଣୟ ବେଳେ" ଆପ୍ତବାକ୍ୟହିଁ ଆମ ପକ୍ଷରେ ପରମ ପ୍ରମାଣ । ଆମ ଦେଶରେ ଯେଉଁ ସବୁ ଦାର୍ଶନିକ ସତ୍ୟ ପ୍ରଚଳିତ ଅଛି, ସେ ସବୁର ବୁଦ୍ଧିମାନ୍ ଦାର୍ଶନିକ ମାନଙ୍କର ସୂକ୍ଷ୍ମ ବୁଦ୍ଧିର ପରିଚୟ ଦେଖାଯାଏ, କିନ୍ତୁ ଶ୍ରୁତି ମତରେ ଏ ଉପାୟରେ ଚରମ ସତ୍ୟ ନିର୍ଣ୍ଣୟ କରାଯାଏ ନାହିଁ । ଶ୍ରୁତିରେ ସ୍ପଷ୍ଟ ଲେଖାଅଛି :—

Digitized by srujanika@gmail.com

"ନୈଷା ତର୍କେଣ ମତି ରାପନେୟା" ।

ଅର୍ଥାତ୍ ତର୍କଦ୍ୱାରା ତତ୍ତ୍ୱଜ୍ଞାନ ଲାଭ ହୁଏ ନାହିଁ । ଜଣେ ବୁଦ୍ଧିମାନ୍ ଲୋକର ଅନୁମୋଦିତ ତର୍କ ଅନ୍ୟ ବୁଦ୍ଧିମାନ୍ ଲୋକ ନିରାଶ କରନ୍ତି, ତୃତୀୟ ବୁଦ୍ଧିମାନ୍ ଲୋକଙ୍କ ଦ୍ୱାରା ସେହି ଦ୍ୱିତୀୟ ବୁଦ୍ଧିମାନ୍ ଲୋକଙ୍କ ତର୍କ ମଧ୍ୟ ଖଣ୍ଡିତ ହୁଏ । ଏପରି ଅବସ୍ଥାରେ ତର୍କର ଶେଷ କେଉଁଠାରେ ? ତେଣୁ କୁହାଯାଏ—

"ଅଚିନ୍ତ୍ୟାଃ ଖଲୁ ଯେ ଭାବାଃ ।
ନତାଂ ତର୍କେଣ ଯୋଜୟେତ୍" ।

ତେଣୁ ଆର୍ଯ୍ୟ ଋଷିମାନଙ୍କର ପ୍ରଦର୍ଶିତ ପଥରେ ଗତିକରି ଅର୍ଥାତ୍ ଶ୍ରବଣ, ମନନ, ଓ ନିଦିଧ୍ୟାସନ ଦ୍ୱାରାହିଁ ଚରମ ସତ୍ୟ ନିର୍ଣ୍ଣୟ କରିବାକୁ ହୁଏ । ଅମ୍ଭେମାନେ ଅତଃପର ଯେଉଁ ଗୀତା ପ୍ରତିପାଦିତ ସତ୍ୟର ଆଲୋଚନା କରିବୁଁ ତାହା ଏହି ଶ୍ରୁତି ପ୍ରଦର୍ଶିତ ଆଦର୍ଶରେହିଁ କରିବୁଁ, ତର୍କଦ୍ୱାରା ନୁହେଁ ।

ପୂର୍ବେ କୁହାଯାଇ ଅଛି ଗୀତା ଖ୍ରୀଷ୍ଟ ପୂର୍ବ ଚତୁର୍ଦ୍ଦଶ ଶତାବ୍ଦୀରେ ରଚିତ ହୋଇଥିଲା । ଗୀତା ଆଲୋଚନାରୁ ଜଣାଯାଏ ତତ୍ ପୂର୍ବରୁ ଉପନିଷଦ୍ ଓ ଅଧୁନା ପ୍ରଚଳିତ ଦାର୍ଶନିକ ମତବାଦ ସବୁ ଏ ଦେଶରେ ପ୍ରଚାରିତ ହୋଇ ଯାଇଥିଲା । ଭାରତୀୟ ଦର୍ଶନ ଗ୍ରନ୍ଥମାନ ବର୍ତ୍ତମାନ୍ ଯେଉଁରୂପରେ ପ୍ରଚାରିତ ହୋଇଅଛି, ଗୀତା ରଚନା ପୂର୍ବେ ସେ ସବୁ ଯେ ସେ ଆକାରରେ ନ ଥିଲା ଏହା ନିଃସନ୍ଦେହ । ପରବର୍ତ୍ତୀ ବହୁ ଆଲୋଚନା ଫଳରେ ସେହିଗୁଡ଼ିକ ବର୍ତ୍ତମାନର ଆକୃତି ପ୍ରାପ୍ତ ହୋଇଅଛି । କିନ୍ତୁ ମୂଳ ଦାର୍ଶନିକ ମତ ସବୁ ଯେ ବୈଦିକ ଜ୍ଞାନ କାଣ୍ଡ ଆଲୋଚନାର ସମସାମୟିକ ଏଥିରେ ସନ୍ଦେହ କରାଯାଇ ନ ପାରେ । 'ବୃହଦାରଣ୍ୟକ' ନାମକ

Digitized by srujanika@gmail.com

ଉପନିଷଦ୍ ଗ୍ରନ୍ଥ ଅତି ପ୍ରାଚୀନ ଓ ଗୀତାର ପୂର୍ବବର୍ତ୍ତୀ, ତହିଁର ଗୋଟିଏ ମନ୍ତ୍ର ଏହିପରି ।

"ଅସ୍ୟ ମହତୋ ଭୂତସ୍ୟ ନିଃଶ୍ୱସିତ ମେତତ୍ ।
ଯଦ୍ ଋଗ୍‌ବେଦୋ ଯଜୁର୍ବେଦଃ ସାମବେଦୋଽଥର୍ବାଙ୍ଗିରସ ।
ଇତିହାସ ପୁରାଣାଂ ବିଦ୍ୟା ଉପନିଷଦଃ ଶ୍ଳୋକାଃ ସୂତ୍ରାଣି ।" ୨।୪।୧୦

ଏ ମନ୍ତ୍ରରେ ପ୍ରଯୁକ୍ତ 'ସୂତ୍ରାଣି' ପଦରୁ ବୁଝାଯାଏ ଯେ ଏହା ଅଧୂନା ପ୍ରଚଳିତ ଦର୍ଶନ ସୂତ୍ର ସମୂହର ପୂର୍ବରୂପ । ଏହା ହୋଇ ନ ଥିଲେ ଗୀତାରେ ଏହିସବୁ ଦର୍ଶନର ମୌଳିକ ମତ କିପରି ଅଲୋଚିତ ହୋଇ ଥାଆନ୍ତା ?

ଗୀତାରେ ଧର୍ମର ଯେଉଁ ମୂଳତତ୍ତ୍ୱ ସବୁର ଆଲୋଚନା ହୋଇଅଛି, ପ୍ରାଚୀନ ଉପନିଷଦ୍ ସମୂହ ତାହାର ମୂଳଭିତ୍ତି । ଏପରିକି ଉପନିଷଦ୍ ମାନଙ୍କର ଅନେକ ମନ୍ତ୍ର ଗୀତାରେ ଗୃହୀତ ହୋଇଅଛି । ଏଥିରୁ ଜଣା ଯାଉଅଛି ଗୀତା ମଧ୍ୟ ବୈଦିକ ଜ୍ଞାନ କାଣ୍ଡ ବା ଶ୍ରୁତିକୁ ଆପ୍ତବାକ୍ୟ ବା ଅଭ୍ରାନ୍ତ ସତ୍ୟରୂପେ ଗ୍ରହଣ କରିଅଛି । ଗୀତାର ପ୍ରତ୍ୟେକ ଅଧ୍ୟାୟ ଶେଷରେ ଶ୍ରୀମଦ୍ ଭଗବଦ୍ ଗୀତା ସୁପନିଷଦ୍‌ସୁ ଇତ୍ୟାଦି ଯେଉଁ ଲିଖିତ ଅଛି ତହିଁରୁ ଜଣାଯାଏ ଗୀତା ମଧ୍ୟ ଗୋଟିଏ ଉପନିଷଦ୍ । ଗୀତା ଧ୍ୟାନରେ ମଧ୍ୟ ସ୍ପଷ୍ଟରୂପେ ଲିଖିତ ଅଛି ଯେ—

"ସର୍ବୋପନିଷଦୋ ଗାବୋ ଦୋଗ୍‌ଧା ଗୋପାଳ ନନ୍ଦନଃ
ପାର୍ଥୋ ବତ୍ସଃ ସୁଧୀ ର୍ଭୋକ୍ତା ଦୁଗ୍‌ଧଂ ଗୀତାମୃତଂ ମହତ୍" ।

ଏହି ସବୁ କଥାରୁ ବୋଧହୁଏ ଦାର୍ଶନିକ ମତବାଦର ମୌଳିକ ତତ୍ତ୍ୱ ସବୁ ବିଶ୍ଳେଷଣ କରି ଗୀତା ମୌଳିକ ଧର୍ମମତ ପ୍ରଚାର କରିବା ଉଦ୍ଦେଶ୍ୟରେ ଉପନିଷଦର ବାକ୍ୟମାନଙ୍କୁ ପରମ ସତ୍ୟ ସ୍ୱରୂପ ଗ୍ରହଣ କରିଅଛି, ଅନ୍ୟଥା ତର୍କଦ୍ୱାରା ସତ୍ୟ ନିର୍ଣ୍ଣୟ ହୋଇପାରେ ନାହିଁ ।

Digitized by srujanika@gmail.com

# ଭାରତୀୟ ଦର୍ଶନ

ପ୍ରାଚୀନ ଭାରତୀୟ ଦର୍ଶନ ଛଅଗୋଟି । କପିଳଙ୍କ ସାଂଖ୍ୟ, ଜୈମିନୀଙ୍କ ପୂର୍ବ ମୀମାଂସା, ବ୍ୟାସଦେବଙ୍କ ଉତ୍ତର ମୀମାଂସା ଅର୍ଥାତ୍ ବେଦାନ୍ତ, ପତଞ୍ଜଳିଙ୍କ ଯୋଗ, ଗୌତମଙ୍କ ନ୍ୟାୟ ଓ କଣାଦଙ୍କ ବୈଶେଷିକ, ଏହି ସବୁ ଦାର୍ଶନିକ ମତ କେବେ ପ୍ରଚଳିତ ହୋଇଥିଲା ତାହାର ଐତିହାସିକ ପ୍ରମାଣ ମିଳେ ନାହିଁ, କିନ୍ତୁ ଗୀତା ରଚନା ପୂର୍ବରୁ ଯେ ଏହି ସବୁ ମତ ସମାଜରେ ପ୍ରଚଳିତ ହୋଇଥିଲା, ଏହା ନିଃସନ୍ଦେହ । ଏକଥା ପୂର୍ବରୁ କୁହା ଯାଇଅଛି ।

ଦୁଃଖବାଦହିଁ ପ୍ରତ୍ୟେକ ଦର୍ଶନର ଭିତ୍ତି । ସଂସାରୀ ମନୁଷ୍ୟ ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ ଦୁଃଖରେ ନିତ୍ୟ ଯନ୍ତ୍ରଣା ଭୋଗକରେ । କି ଉପାୟ ଅବଲମ୍ବନ କଲେ ମନୁଷ୍ୟ ଏହି ଦୁଃଖ ଯନ୍ତ୍ରଣାରୁ ରକ୍ଷା ପାଇବ, ଏହାର ଉପାୟ ଅନ୍ୱେଷଣ କରିବା ପ୍ରତ୍ୟେକ ଦର୍ଶନର କାର୍ଯ୍ୟ । ଏହି ଦୁଃଖ ନାଶର ଉପାୟ ନିର୍ଦ୍ଧାରଣ କରିବା ପାଇଁ ପ୍ରତ୍ୟେକ ଦର୍ଶନକାର ଭିନ୍ନ ଭିନ୍ନ ମାର୍ଗ ଉଦ୍ଭାବନ କରି ଅଛନ୍ତି । ଗୀତାକାର ମଧ୍ୟ ଏହି ଦୁଃଖ ବାଦ ସମର୍ଥନ କରି ଅଛନ୍ତି—

"ମାମୁପେତ୍ୟ ପୁନର୍ଜନ୍ମ ଦୁଃଖାଲୟମଶାଶ୍ୱତମ୍
ନାପ୍ନୁବନ୍ତି ମହାତ୍ମାନଃ ସଂସିଦ୍ଧିଂ ପରମାଂ ଗତାଃ ।" ୮।୧୫
ଅନିତ୍ୟ ମସୁଖଂ ଲୋକ ମିମଂ ପ୍ରାପ୍ୟ ଭଜସ୍ୱମାମ୍ । ଗୀତା ୯।୩୩

ଦୁଃଖ ନାଶର ଉପାୟ ସମ୍ବନ୍ଧରେ ଦର୍ଶନଶାସ୍ତ୍ର ମାନଙ୍କରେ ଯେଉଁ ଉପଦେଶ ପ୍ରଦତ୍ତ ହୋଇଅଛି, ଗୀତାର ଉପଦେଶ କିନ୍ତୁ ତହିଁରୁ ପୃଥକ୍ । ଏହି ପାର୍ଥକ୍ୟର ମୂଳସୂତ୍ର ଗୀତାର ଈଶ୍ୱରବାଦ ।

Digitized by srujanika@gmail.com

ଏକମାତ୍ର ବେଦାନ୍ତ ଦର୍ଶନ ଛଡ଼ା ଅନ୍ୟ ଦର୍ଶନମାନଙ୍କରେ ଈଶ୍ୱରବାଦ ଏକପ୍ରକାର ଉପେକ୍ଷିତ ହୋଇଅଛି । କ୍ରମେ ସଂକ୍ଷେପରେ ଏ ସମ୍ବନ୍ଧରେ ସେ ସବୁର ସୂଚନା ଦିଆଯିବ ।

## ୧—ନ୍ୟାୟ ଦର୍ଶନ

ନ୍ୟାୟ ଓ ବୈଶେଷିକ ଏକ ଜାତୀୟ ଦର୍ଶନ ବୁଦ୍ଧିର ତୀକ୍ଷ୍ଣତା ସମ୍ପାଦନରେ ଏବଂ ଯୁକ୍ତି ଓ ତର୍କର ମୌଳିକତା ନିର୍ଣ୍ଣୟରେ ଏହି ଦୁଇ ଦର୍ଶନ ଯେଉଁ ସୂକ୍ଷ୍ମ ଚିନ୍ତାର ଧାରା ପ୍ରଦର୍ଶନ କରି ଅଛନ୍ତି, ତାହା ଅତୁଳନୀୟ । ନ୍ୟାୟ ଦର୍ଶନ ମତରେ ଦୁଃଖ ନାଶର ଏକ ମାତ୍ର ଉପାୟ ପ୍ରମାଣ, ପ୍ରମେୟ, ସଂଶୟ, ପ୍ରୟୋଜନ, ଦୃଷ୍ଟାନ୍ତ, ସିଦ୍ଧାନ୍ତ, ଅବୟବ, ତର୍କ, ନିର୍ଣ୍ଣୟ, ବାଦ, ଜଳ୍ପ, ବିତଣ୍ଡା, ହେତ୍ୱାଭାସ, ଛଳ, ଜାତି ଏବଂ ନିଗ୍ରହସ୍ଥାନ ଏହି ଷୋଡ଼ଶ ପଦାର୍ଥର ତତ୍ତ୍ୱଜ୍ଞାନ । ଏହି ତତ୍ତ୍ୱଜ୍ଞାନ ଲାଭକରି ପାରିଲେ ଜୀବ ସାଂସାରିକ ଦୁଃଖରୁ ମୁକ୍ତ ହୋଇ ପାରିବ । ନ୍ୟାୟ ଦର୍ଶନ ଈଶ୍ୱର ଅସ୍ୱୀକାର କରନ୍ତି ନାହିଁ ମାତ୍ର ଜୀବର ଦୁଃଖ ନାଶ ବିଷୟରେ ଈଶ୍ୱରଙ୍କର ସମ୍ବନ୍ଧ ନାହିଁ । ଏହି ହେତୁରୁ ଗୀତା ମଧ୍ୟରେ ନ୍ୟାୟ ଦର୍ଶନର କୌଣସି ଆଭାସ ନାହିଁ । ଅନେକେ ମଧ୍ୟ ମନେ କରାଯାଏ ଯେ ଗୀତା ରଚନା ପରେହିଁ ଏହି ଦାର୍ଶନିକ ମତବାଦର ସୃଷ୍ଟି ।

## ୨—ବୈଶେଷିକ ଦର୍ଶନ

ମହର୍ଷି କଣାଦଙ୍କ ପ୍ରଣୀତ ବୈଶେଷିକ ଦର୍ଶନ କେବେ ରଚିତ ହୋଇଥିଲା ତାହା ଜାଣିବାର ଉପାୟ ନାହିଁ । ଗୌତମ ପ୍ରଣୀତ ନ୍ୟାୟ ଦର୍ଶନ ପରେ ଯେ ଏହାର ସୃଷ୍ଟି, ଏହା ନିଃସନ୍ଦେହ । କାରଣ ଏହି ଦର୍ଶନ ନବ୍ୟ ନ୍ୟାୟ ରୂପରେ ପରିଚିତ । ବୈଶେଷିକ ମତରେ ମଧ୍ୟ ସଂସାର ଦୁଃଖମୟ, ଏବଂ ଏହି ଦୁଃଖର ଅତ୍ୟନ୍ତ

Digitized by srujanika@gmail.com

ନିବୃତ୍ତିହିଁ ନିଃଶ୍ରେୟସ । ତତ୍ତ୍ୱଜ୍ଞାନ ଲାଭହେଲେ ଲୋକ ନିଃଶ୍ରେୟସ ଲାଭକରେ । ଦ୍ରବ୍ୟ, ଗୁଣ, କର୍ମ, ସାମାନ୍ୟ, ବିଶେଷ ସମବାୟ ଓ ଅଭାବ ଏହି ସାତଗୋଟି ପଦାର୍ଥର ସାଧର୍ମ୍ୟ ଓ ବୈଧର୍ମ୍ୟ ଜନିତ ତତ୍ତ୍ୱଜ୍ଞାନ ଜାତହେଲେ ମନୁଷ୍ୟ ନିଃଶ୍ରେୟସ ଲାଭ କରିପାରେ । ବୈଶେଷିକ ଦର୍ଶନ ଈଶ୍ୱର ଅସ୍ୱୀକାର କରେନାହିଁ । ସୂତ୍ରକାର ମନୋହର ଯୁକ୍ତିଦ୍ୱାରା ଶରୀର, ମନ ଓ ଇନ୍ଦ୍ରିୟମାନଙ୍କଠାରୁ ଆତ୍ମାର ସ୍ୱାତନ୍ତ୍ର୍ୟ ପ୍ରତିପାଦନ କରିଅଛନ୍ତି ମାତ୍ର ପରମାତ୍ମାଙ୍କ ଅସ୍ତିତ୍ୱ ସମ୍ବନ୍ଧରେ ମୂଳ ଦର୍ଶନରେ କୌଣସି ଯୁକ୍ତି ପ୍ରଦର୍ଶିତ ହୋଇନାହିଁ । ତେଣୁ ଏହି ଦର୍ଶନରେ ଈଶ୍ୱରଙ୍କ ସ୍ଥାନ ମୁଖ୍ୟ ନୁହେଁ । ଯେଉଁ ନିଃଶ୍ରେୟସ ଲାଭ ଶିକ୍ଷା ଦେବା ଉଦ୍ଦେଶ୍ୟରେ ଏ ଦର୍ଶନ ପ୍ରଣୀତ ହୋଇଅଛି ତାହା ସଙ୍ଗେ ଈଶ୍ୱରଙ୍କର କୌଣସି ସମ୍ବନ୍ଧ ନାହିଁ । ସପ୍ତ ପଦାର୍ଥ ( ଈଶ୍ୱର ଯାହାର ଅଙ୍ଗୀଭୂତ ନୁହନ୍ତି ) ର ସାଧର୍ମ୍ୟ ଓ ବୈଧର୍ମ୍ୟ ଜ୍ଞାନ ଜାତ ହେଲେ ଲୋକ ସାଂସାରିକ ନିର୍ବନ୍ଧ ତାପରୁ ରକ୍ଷା ପାଇବ—ଏହାହିଁ ଏ ଦର୍ଶନର ମୁଖ୍ୟ ପ୍ରତିପାଦ୍ୟ ବିଷୟ; ଗୀତାର ପ୍ରଦର୍ଶିତ ମାର୍ଗ ଏଥିରୁ ସ୍ୱତନ୍ତ୍ର । ସୁତରାଂ ସମଗ୍ର ଗୀତା ଶାସ୍ତ୍ରରେ ଏ ଦର୍ଶନର କୌଣସି ପ୍ରସଙ୍ଗ ନାହିଁ ।

## ୩—ମୀମାଂସା ଦର୍ଶନ

ଜ୍ଞାନକାଣ୍ଡ ଓ କର୍ମକାଣ୍ଡ ଭେଦରେ ବେଦ ଦୁଇ ଭାଗରେ ବିଭକ୍ତ, ଏ କଥା ପୂର୍ବେ କୁହାଯାଇ ଅଛି । ମୀମାଂସାଦର୍ଶନ ମତରେ ବେଦର କର୍ମକାଣ୍ଡହିଁ ସାର୍ଥକ, ଜ୍ଞାନକାଣ୍ଡ ନିରର୍ଥକ । ମହର୍ଷି ଜୈମିନି ଏହାର ପ୍ରଣେତା । ବହୁ ସହସ୍ର ବର୍ଷ ବ୍ୟାପୀ ଯେଉଁ ବୈଦିକ ସକାମ କର୍ମ ଏ ଦେଶରେ ଧର୍ମ ଲାଭର ଏକମାତ୍ର ସୋପାନ ବୋଲି ଲୋକ ସାଧାରଣଙ୍କର ଧାରଣା ଥିଲା ଏହି ଦର୍ଶନହିଁ ତାହାର ପ୍ରତିପାଦକ । ଏ ଦର୍ଶନ ମତରେ ବେଦ

Digitized by srujanika@gmail.com

ଅପୌରୁଷେୟ, ନିତ୍ୟ ଏବଂ ଅଭ୍ରାନ୍ତ ସତ୍ୟ । ଏ ଦର୍ଶନ ଈଶ୍ୱରଙ୍କୁ ଏବଂ ବେଦ ଯେ, ଈଶ୍ୱରଙ୍କ ବାଣୀ ଏହା ସ୍ୱୀକାର କରେ ନାହିଁ । ଦେବତାମାନେ ମନ୍ତ୍ରାତ୍ମକ, ସେମାନଙ୍କର ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ । ବୈଦିକ ବିଧିରେ ଯଜ୍ଞ କଲେ ମନୁଷ୍ୟ ଐହିକ ଏବଂ ପାରତ୍ରିକ ଉଭୟବିଧ ସୁଖ ଲାଭ କରିଥାଏ । ଏ ଦର୍ଶନରେ କୌଣସିଠାରେ ଈଶ୍ୱରଙ୍କର ବା ଆତ୍ମାର କୌଣସି ପ୍ରସଙ୍ଗ ନାହିଁ ।

ପକ୍ଷାନ୍ତରରେ ବୈଦିକ ଜ୍ଞାନବାଦୀମାନେ କର୍ମକାଣ୍ଡର ବିରୋଧୀ । ଉପନିଷଦ୍ ବା ବେଦାନ୍ତ ମତରେ ସକାମ କର୍ମ ସର୍ବଥା ତ୍ୟାଜ୍ୟ । କାରଣ କର୍ମ, ବନ୍ଧନର କାରଣ—

"ଅବଶ୍ୟ ମେବ ଭୋକ୍ତବ୍ୟଂ କୃତଂକର୍ମ ଶୁଭାଶୁଭମ୍ ।"

ସୁକର୍ମ ହେଉ ବା ଦୁଷ୍କର୍ମ ହେଉ ଅବଶ୍ୟ ତାହାର ଫଳ ଭୋଗ କରିବାକୁ ହେବ । 'ନାଭୁକ୍ତଂ କ୍ଷୀୟତେ କର୍ମ କଳ୍ପକୋଟି ଶତୈରପି' । ଫଳଭୋଗ ନ ହେଲେ ଶତକୋଟି କଳ୍ପରେ ମଧ୍ୟ କର୍ମର କ୍ଷୟ ହୁଏ ନାହିଁ । ଏ ସମ୍ବନ୍ଧରେ ମୁଣ୍ଡକ ଉପନିଷଦର ଉକ୍ତି ଏହିପରି—

"ପ୍ଲବାହ୍ୟେତେ ଅଦୃଢ଼ା ଯଜ୍ଞରୂପା
ଅଷ୍ଟାଦଶୋକ୍ତ ମବରଂ ଯେଷୁ କର୍ମ ।
ଏତଚ୍ଛ୍ରେୟୋ ଯେ ଽଭିନନ୍ଦନ୍ତିମୂଢ଼ାଃ
ଜରା ମୃତ୍ୟୁଂ ତେ ପୁନରେ ବାପି ଯାନ୍ତି ।
ଅବିଦ୍ୟାୟାଂ ବହୁଧା ବର୍ତ୍ତମାନାଃ
ବୟଂ କୃତାର୍ଥା ଇତ୍ୟଭି ମନ୍ୟନ୍ତି ବାଳାଃ ।
ଯତ୍‌କର୍ମିଣୋ ନ ପ୍ରବେଦୟନ୍ତି ରାଗାତ୍
ତେନା ତୁରାଃ କ୍ଷୀଣଲୋକାଶ୍ଚ୍ୟବନ୍ତେ ।" ୧।୨।୯

Digitized by srujanika@gmail.com

ଅଷ୍ଟାଦଶ ବ୍ୟକ୍ତିଙ୍କ ଦ୍ୱାରା କରାଯାଇଥିବା ଏହି ଯେ ଯଜ୍ଞରୂପ କର୍ମ, ଏହା ଅଦୃଢ଼ ଭେଳାମାନ, ଯେଉଁ ମୂଢ଼ ବ୍ୟକ୍ତିମାନେ ମଙ୍ଗଳ ଜନକ ମନେ କରି ଏହାର ପ୍ରଶଂସା କରନ୍ତି, ସେମାନେ ପୁନର୍ବାର ଜରା ମୃତ୍ୟୁ ଗ୍ରସ୍ତ ହୁଅନ୍ତି ।

"ନାନାବିଧ ଅଜ୍ଞତା ଦ୍ୱାରା ଅଭିଭୂତ ହୋଇ ମୂର୍ଖଲୋକ କର୍ମାନୁଷ୍ଠାନ କରି ଆପଣାକୁ କୃତାର୍ଥ ମନେକରେ କିନ୍ତୁ ଫଳ ଲାଭର ଆକାଂକ୍ଷା ରଖିଥିବାରୁ ତତ୍ତ୍ୱଜ୍ଞାନ ଲାଭ କରିବାରେ ଅକ୍ଷମ ହୋଇ କର୍ମକ୍ଷୟ ପରେ ଦୁଃଖାର୍ତ୍ତ ହୋଇ ସେ ସ୍ୱର୍ଗଚ୍ୟୁତ ହୁଏ" ଭିନ୍ନ ଭିନ୍ନ ଉପନିଷଦ୍ ମାନଙ୍କରେ ଏହି ଭାବରେ ସକାମ କର୍ମ ନିନ୍ଦିତ ହୋଇଅଛି ।

ଏ ସମ୍ବନ୍ଧରେ ଗୀତାର ମତ ଆଲୋଚନା କଲେ ଜଣାଯାଏ ଯେ ସେହି ଧର୍ମ ବିପ୍ଳବ ଯୁଗରେ ଧର୍ମ ସଂସ୍ଥାପନ ପାଇଁ ଭଗବାନ୍ ଶ୍ରୀକୃଷ୍ଣ ଭୂଲୋକରେ ଅବତୀର୍ଣ୍ଣ ହୋଇଥିଲେ । କର୍ମ କରିବା ଓ ନ କରିବା ଏ ବିଷୟରେ ସେତେବେଳେ ସମାଜରେ କିପରି ତୁମୁଳ ଆଲୋଚନା ବା ଆନ୍ଦୋଳନ ଚାଲିଥିଲା ତାହା ବୈଦିକ କର୍ମକାଣ୍ଡ ଓ ଜ୍ଞାନକାଣ୍ଡର ପରିଚୟରୁ ସ୍ପଷ୍ଟ ଜଣାଯିବ । ମୀମାଂସା ଦର୍ଶନ ପ୍ରଚାର ଫଳରେ ବୈଦିକ ବିଧିରେ ସକାମ ଯାଗ ଯଜ୍ଞାଦି କର୍ମ କରିବାକୁ ସାଧାରଣ ଜନ ସମାଜ, ମାନବ ଜୀବନର ସର୍ବଶ୍ରେଷ୍ଠ କର୍ତ୍ତବ୍ୟ ବୋଲି ମାନୁଥିଲେ । ଏହି ଅବସରରେ ଜ୍ଞାନବାଦୀ ଋଷିମାନେ ସକାମ କର୍ମର ଅସାରତା ପ୍ରତିପାଦନ କରି ଔପନିଷଦିକ ଧର୍ମ ପ୍ରଚାରରେ ନିୟୋଜିତ ଥିଲେ । ଅଭିଜ୍ଞ କେତେକ ଆର୍ଯ୍ୟଋଷି ଦୁଃଖ ନାଶ ଓ ସୁଖ ବୃଦ୍ଧି କାମନାରେ ଦର୍ଶନ ଶାସ୍ତ୍ର ଉଦ୍ଭାବନ କରିବାରେ ଲାଗିଥିଲେ । ଏହି ଜ୍ଞାନ ଓ କର୍ମର ସମନ୍ୱୟ ବିଧାନ କରି ପୃଥିବୀର ଜନ ସମାଜକୁ ନୂତନ

Digitized by srujanika@gmail.com

ଆଲୋକ ପ୍ରଦାନ କରିବା ଶ୍ରୀକୃଷ୍ଣଙ୍କର ଉଦ୍ଦେଶ୍ୟ । ଶ୍ରୀମଦ୍‌ଭଗବଦ୍ ଗୀତା ଶ୍ରୀକୃଷ୍ଣ ପ୍ରବର୍ତ୍ତିତ ଧର୍ମ ମତର ସାର ସଂକଳନ । ଗୀତାରମ୍ଭରେ ଭଗବାନ୍ ପ୍ରଥମେ ଜ୍ଞାନ ଦୃଷ୍ଟିରେ ଆତ୍ମାର ଅବିନଶ୍ୱରତା ପ୍ରତିପାଦନ କରି ସାରି କର୍ମ ଜ୍ଞାନର ସମନ୍ୱୟ ସାଧନ ଉଦ୍ଦେଶ୍ୟରେ ବୈଦିକ ସକାମ କର୍ମର ଅସାରତା ପ୍ରଦର୍ଶନ କରି କହି ଅଛନ୍ତି—

ଯାମିମାଂ ପୁଷ୍ପିତାଂ ବାଚଂ ପ୍ରବଦନ୍ତ୍ୟ ବିପଶ୍ଚିତଃ
ବେଦ ବାଦରତାଃ ପାର୍ଥନାନ୍ୟ ଦସ୍ତୀତି ବାଦିନଃ
କାମାତ୍ମାନଃ ସ୍ୱର୍ଗପରାଃ ଜନ୍ମ କର୍ମ ଫଳପ୍ରଦାମ୍
କ୍ରିୟା ବିଶେଷ ବହୁଳାଂ ଭୋଗୈଶ୍ୱର୍ଯ୍ୟ ଗତିଂ ପ୍ରତି
ଯାବାନର୍ଥ ଉଦପାନେ ସର୍ବତଃ ସଂପ୍ଳୁତୋଦକେ
ତାବାନ୍ ସର୍ବେଷୁ ବେଦେଷୁ ବ୍ରାହ୍ମଣସ୍ୟ ବିଜାନତଃ ।
୨ । ୪୨ । ୪୬

ଏହାର ସାରକଥା—ଯେଉଁମାନେ ସ୍ୱର୍ଗଲାଭ ଏବଂ ଐଶ୍ୱର୍ଯ୍ୟ ପ୍ରାପ୍ତି କାମନାରେ ସକାମ ଯଜ୍ଞ କରିବାକୁ ବେଦର ଦୋହାଇଦେଇ ଲୋକମାନଙ୍କୁ ପ୍ରବର୍ତ୍ତାଉ ଅଛନ୍ତି ସେମାନେ ଅପଣ୍ଡିତ । ସମଗ୍ରସ୍ଥାନ ଜଳପୂର୍ଣ୍ଣ ହେଲେ କ୍ଷୁଦ୍ର ଜଳାଶୟ ଯେପରି କୌଣସି ପ୍ରୟୋଜନରେ ଆସେ ନାହିଁ ସେହିପରି ବ୍ରହ୍ମଜ୍ଞ ବ୍ରାହ୍ମଣଙ୍କ ପକ୍ଷରେ ବେଦର କୌଣସି ପ୍ରୟୋଜନୀୟତା ନାହିଁ ଇତ୍ୟାଦି ।

ଯେଉଁ ବେଦ ସମଗ୍ର ଆର୍ଯ୍ୟ ଜାତିର ଏକ ମାତ୍ର ପବିତ୍ର ଧର୍ମ ଗ୍ରନ୍ଥ, ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ ତାଙ୍କ ପ୍ରବର୍ତ୍ତିତ ଧର୍ମ ତତ୍ତ୍ୱ ଆରମ୍ଭରେ ସେ ବେଦକୁ ଏପରି ଆକ୍ରମଣ କରିବା କମ୍ ଦୁଃଖର କଥା ନୁହେଁ କିନ୍ତୁ ପ୍ରକୃତ କଥା ବିଚାର କଲେ ଜଣାଯାଏ ଯେ ଏହା ବେଦ ନିନ୍ଦା ନୁହେଁ, ବେଦର ସକାମ ଯଜ୍ଞ କର୍ମର ହିଁ ନିନ୍ଦା ।

Digitized by srujanika@gmail.com

ଗୀତାର ଅନେକ ସ୍ଥଳରେ ଭଗବାନ୍ ବେଦର ଭୂରିଭୂରି ପ୍ରଶଂସା-ମଧ୍ୟ କରିଅଛନ୍ତି ।

ଯଜ୍ଞ ଶିଷ୍ଟାଶିନଃ ସନ୍ତୋ ମୁଚ୍ୟନ୍ତେ ସର୍ବକଲ୍‌ବିଷୈଃ
ଭୁଞ୍ଜତେ ତେ ତ୍ୱଘଂ ପାପା, ଯେ ପଚନ୍ତ୍ୟାତ୍ମକାରଣାତ୍
ଗୀତା ୩ । ୧୦ ।

ଯଜ୍ଞାର୍ଥାତ୍ କର୍ମଣୋଽନ୍ୟତ୍ର ଲୋକୋଽୟଂ କର୍ମବନ୍ଧନଃ,
ଗୀତା ୩—୯

ଏ କଥାକୁ ଅନ୍ୟଭାବରେ କହିଲେ ବୈଦିକ ଯାଗ ଯଜ୍ଞ ପ୍ରତି ଭଗବାନଙ୍କର ଏ ଅନ୍ତୋଷ ପ୍ରକୃତରେ ଆର୍ଯ୍ୟର ସର୍ବମାନ୍ୟ ବେଦ ଉପରେ ନୁହେଁ । ସକାମ ଯଜ୍ଞ କର୍ମର ଅନୁମୋଦକ ଦାର୍ଶନିକ ଜୈମିନିଙ୍କ ପ୍ରଣୀତ ମୀମାଂସା ଦର୍ଶନ ଉପରେ । ଯେଉଁ ନିଷ୍କାମ କର୍ମ-ଯୋଗ, ଗୀତାର ପ୍ରତିପାଦ୍ୟ ବିଷୟ, ଭଗବାନ୍ ଏହିଭାବରେ ତାହାର ଉପକ୍ରମ କରି ପରିଶେଷରେ କର୍ମ ଓ ଜ୍ଞାନର ସମନ୍ୱୟ ସାଧନ କରି ନିଷ୍ପତ୍ତି କରିଅଛନ୍ତି । କର୍ମ ଅବଶ୍ୟ କରଣୀୟ । କର୍ମ ନ କରି କେହି କ୍ଷଣମାତ୍ର ରହିପାରେ ନାହିଁ ମାତ୍ର ପ୍ରତ୍ୟେକ କର୍ମ, ଜ୍ଞାନ-ଦୃଷ୍ଟିରେ ନିଷ୍କାମଭାବରେ କରିବାକୁ ହେବ, ବେଦ ବିଧିରେ ଯଜ୍ଞ ଅବଶ୍ୟ କରଣୀୟ, ମାତ୍ର ଫଳକାମନା କରି ଯଜ୍ଞ କରିବା ଉଚିତ ନୁହେଁ ।

"କର୍ମଣ୍ୟେବା ଧିକାରସ୍ତେ ମାଫଳେଷୁକଦାଚନ
ମା କର୍ମ ଫଳ ହେତୁ ଭୂର୍ମାତେ ସଙ୍ଗୋଽସ୍ତ୍ୱ କର୍ମଣି ।"

ଯେଉଁ ଅଲୌକିକ ଧର୍ମମତ ଗୀତା, ଜଗତରେ ପ୍ରଚାର କରିଅଛି ଏହି ଶ୍ଳୋକଟି ତାହାର ମୂଳସୂତ୍ର ।

ସମଗ୍ର ଗୀତା ଗ୍ରନ୍ଥର ସାରତତ୍ତ୍ୱ ଏହି ଗୋଟିଏ ଶ୍ଳୋକରେ ଭଗବାନ୍ ପ୍ରକାଶ କରି ଅଛନ୍ତି ।

Digitized by srujanika@gmail.com

## ୪—ସାଂଖ୍ୟ ଦର୍ଶନ

ସାଂଖ୍ୟ ଦର୍ଶନ ମହର୍ଷି କପିଳଙ୍କ ପ୍ରଣୀତ ଯେତେଦୂର ଅନୁମାନ କରାଯାଏ ସାଂଖ୍ୟହିଁ ଭାରତରେ ଆଦ୍ୟଦର୍ଶନ ଗ୍ରନ୍ଥ। ଅନ୍ୟାନ୍ୟ ଦର୍ଶନ ପରି ସାଂଖ୍ୟ ଦର୍ଶନ ମଧ୍ୟ ସଂସାରୀ ମାନଙ୍କୁ ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ ଦୁଃଖରୁ ଉଦ୍ଧାରକରି ମୁକ୍ତିର ପଥ ପ୍ରଦର୍ଶନ କରିବା ଉଦ୍ଦେଶ୍ୟରେ ପ୍ରଣୀତ ହୋଇ ଅଛି । ସାଂଖ୍ୟମତରେ ପ୍ରକୃତି ଓ ପୁରୁଷର ବିବେକ ବା ପାର୍ଥକ୍ୟ ଜ୍ଞାନଦ୍ୱାରା ଦୁଃଖ ନିବୃତ୍ତି ହୁଏ । ଜଗତର ଯାହା ଅପରିଚ୍ଛିନ୍ନ, ନିର୍ବିଶେଷ ଓ ମୂଳ ଉପାଦାନ ତାହାହିଁ ସାଂଖ୍ୟ ଶାସ୍ତ୍ରୋକ୍ତ ପ୍ରକୃତି, ଏହି ପ୍ରକୃତିର ପରିଣାମରେ ଏହି ବିଚିତ୍ର ଜଗତର ସୃଷ୍ଟି ।

"ସତ୍ତ୍ୱରଜସ୍ତମସାଂ ସାମ୍ୟାବସ୍ଥା ପ୍ରକୃତିଃ, ପ୍ରକୃତେ ର୍ମହାନ୍,
ମହତୋଽହଂକାରଃ,—ଅହଂକାରାତ୍ ପଞ୍ଚତନ୍ମାତ୍ରାଣ୍ୟୁଭୟମିନ୍ଦ୍ରିୟଂ,
ତନ୍ମାତ୍ରେଭ୍ୟଃ ସ୍ଥୂଳଭୂତାନି, ପୁରୁଷ ଇତି ପଞ୍ଚବିଂଶତି ର୍ଗଣଃ,, ।
ସାଂଖ୍ୟସୂତ୍ର ୧—୬୧

ଅର୍ଥାତ୍ ସତ୍ତ୍ୱରଜଃ ଓ ତମଃ—ଏହିତିନ ଗୁଣର ସାମ୍ୟାବସ୍ଥାହିଁ ମୂଳ ପ୍ରକୃତି, ତାହାର ବିକାର ମହତ୍ ତତ୍ତ୍ୱ, ମହତର ବିକାର ଅହଙ୍କାର ତତ୍ତ୍ୱ, ଅହଙ୍କାରର ବିକାର ପଞ୍ଚତନ୍ମାତ୍ର ଓ ଏକାଦଶ ଇନ୍ଦ୍ରିୟ ଏବଂ ପଞ୍ଚତନ୍ମାତ୍ରର ବିକାର ପଞ୍ଚ ମହାଭୂତ ଏବଂ ପୁରୁଷ । ମୋଟରେ କହିଲେ ଅବ୍ୟକ୍ତ ପ୍ରକୃତି, ବୁଦ୍ଧି ଓ ଅହଂକାର ଓ ପଞ୍ଚ ତନ୍ମାତ୍ର—ଏହି ଆଠ ଗୋଟି ମୂଳ ପ୍ରକୃତିହିଁ ମୁଖ୍ୟ । ଏକାଦଶ ଇନ୍ଦ୍ରିୟ ଓ ପଞ୍ଚମହାଭୂତ—ଏହିଷୋଳ ଗୋଟିକୁ ଗୌଣ ଭାବରେ ମଧ୍ୟ ପ୍ରକୃତି ବୋଲାଯାଏ ଏବଂ ପୁରୁଷ ଏହି ପଚିଶି ଗୋଟି ତତ୍ତ୍ୱର ଜ୍ଞାନ ହେଲେ ଜୀବର ମୁକ୍ତିହୁଏ, ଏହାହିଁ ସାଂଖ୍ୟଦର୍ଶନର ମତ ।

"ପଞ୍ଚବିଂଶତି ତତ୍ତ୍ୱଜ୍ଞୋ ଯତ୍ରତତ୍ରାଶ୍ରମେ ବସେତ୍ ।
ଜଟୀ ମୁଣ୍ଡୀ ଶିଖୀ ବାପି ମୁଚ୍ୟତେ ନାତ୍ର ସଂଶୟଃ ।"

Digitized by srujanika@gmail.com

ସାଂଖ୍ୟ ଦର୍ଶନବାଦୀମାନେ କହନ୍ତି—ଯାହାଙ୍କର ଏହି ପଞ୍ଚବିଂଶତି ତତ୍ତ୍ୱର ଜ୍ଞାନ ଲାଭ ହୋଇ ଅଛି, ସେ ଯେ ଆଶ୍ରମରେ ବାସ କରନ୍ତୁ ନା କାହିଁକି ତାହାଙ୍କର ମୁକ୍ତି ସୁନିଶ୍ଚିତ ।

ପ୍ରକୃତି ପୁରୁଷ ଛଡ଼ା ଜଗତରେ ଆଉ ସବୁ ବସ୍ତୁ ଅନିତ୍ୟ, ଗୀତାରେ ଭଗବାନ୍ ଏହି କଥାର ସମର୍ଥନ ମଧ୍ୟ କରିଅଛନ୍ତି :—

ପ୍ରକୃତିଂ ପୁରୁଷଂ ଚୈବ ବିଦ୍ଧ୍ୟନାଦୀ ଉଭାବପି,
ବିକାରାଂଶ୍ଚ ଗୁଣାଂଶ୍ଚୈବ ବିଦ୍ଧି ପ୍ରକୃତି ସମ୍ଭବାନ୍ ।"
ଗୀତା—୧୩—୨୦

ପ୍ରକୃତି ଓ ପୁରୁଷ—ଉଭୟ ଅନାଦି, ସମସ୍ତ ବିକାର ଓ ଗୁଣ ପ୍ରକୃତିରୁ ସମୁଦ୍‌ଭୂତ । ପ୍ରକୃତିର ଆଉ ଗୋଟିଏ ନାମ ତ୍ରୈଗୁଣ୍ୟ, କାରଣ ପ୍ରକୃତି ଗୁଣତ୍ରୟର ସାମ୍ୟାବସ୍ଥା ।

"ସତ୍ତ୍ୱ ରଜସ୍ତମାଂସୀତି ତ୍ରୈଗୁଣ୍ୟାମ୍"—ସୂତ୍ରବୃତ୍ତିଃ ।

ଗୀତାରେ ମଧ୍ୟ ଭଗବାନ୍ ଏହା ସ୍ୱୀକାର କରି ଅଛନ୍ତି ।

"ସତ୍ତ୍ୱଂ ରଜସ୍ତମ ଇତି ଗୁଣାଃ ପ୍ରକୃତି ସମ୍ଭବାଃ
ନିବଧ୍ନନ୍ତି ମହାବାହୋ ଦେହେ ଦେହିନ ମବ୍ୟୟମ୍ ।
ଗୀତା ୧୪—୭

ଉପରେ ପ୍ରକୃତି ସହିତ ଯେଉଁ ଚବିଶିଗୋଟି ତତ୍ତ୍ୱ ବିଷୟ ଲକ୍ଷିତ ହୋଇ ଅଛି, ଭଗବାନ୍ ଗୀତାର ୧୩ଶ ଅଧ୍ୟାୟର ୧୬ଶ ଶ୍ଳୋକରେ ସେହି ଚବିଶଗୋଟି ତତ୍ତ୍ୱ ମଧ୍ୟ ଗଣନା କରି ଅଛନ୍ତି ।

"ମହାଭୂତାନ୍ୟହଂକାରୋ ବୁଦ୍ଧିର ବ୍ୟକ୍ତମେବଚ
ଇନ୍ଦ୍ରିୟାଣି ଦଶୈକଂ ଚ ପଞ୍ଚଚେନ୍ଦ୍ରିୟ ଗୋଚରାଃ ।"

ପୁରୁଷର ପରିଚୟ ସ୍ଥଳରେ ସାଂଖ୍ୟ ଦର୍ଶନର ବୃତ୍ତିକାର କହନ୍ତି— "ଅଥାହ କଃ ପୁରୁଷ ଇତ୍ୟୁଚ୍ୟତେ, ପୁରୁଷ ଅନାଦିଃ, ସୂକ୍ଷ୍ମଃ, ସର୍ବଗତ ଶ୍ଚେତନୋଽଗୁଣୋ ନିତ୍ୟୋ ଦ୍ରଷ୍ଟାଭୋକ୍ତାଽକର୍ତ୍ତା କ୍ଷେତ୍ରବିଦ ମମଲୋଽପ୍ରସବଧର୍ମୀତି ।"

Digitized by srujanika@gmail.com

ପୁରୁଷ ଅନାଦି, ସୂକ୍ଷ୍ମ, ସର୍ବବ୍ୟାପୀ, ଅଚେତନ, ନିର୍ଗୁଣ, ନିତ୍ୟ, ଦ୍ରଷ୍ଟା, ଭୋକ୍ତା, ଅକର୍ତ୍ତା, କ୍ଷେତ୍ରଜ୍ଞ, ଅମଳ, ଓ ଅପରିଣାମୀ।

ଗୀତାରେ ଯାହାକୁ ଆତ୍ମା କୁହାଯାଇଅଛି ସାଂଖ୍ୟ ମତରେ ତାହାକୁହିଁ ପୁରୁଷ ଆଖ୍ୟା ପ୍ରଦତ୍ତ ହୋଇଅଛି। ଗୀତା ମତରେ ମଧ୍ୟ ଆତ୍ମା ଅନାଦି ଅବ୍ୟୟ ଓ ନିର୍ଲେପ।

ଅନାଦିତ୍ୱାତ୍‌ ନିର୍ଗୁଣତ୍ୱାତ୍‌ ପରମାତ୍ମାୟ ମବ୍ୟୟଃ।
ଶରୀରସ୍ଥୋଽପି କୌନ୍ତେୟ ନ କରୋତି ନଲିପ୍ୟତେ॥
ଗୀତା—୧୩।୩୨

ସାଂଖ୍ୟ ମତରେ ସତ୍ତ୍ୱ ରଜଃ ଓ ତମଃ ପ୍ରକୃତିର ଏହି ଗୁଣତ୍ରୟ ଦ୍ୱାରା ସୃଷ୍ଟି ବ୍ୟାପାର ଚାଲୁଅଛି। ପୁରୁଷ ବା ଆତ୍ମା ଅକର୍ତ୍ତା ଓ ଉଦାସୀନ ସାକ୍ଷୀମାତ୍ର, ଗୀତା ଏହି ମତ ସମର୍ଥନ କରିଅଛି।

ପ୍ରକୃତେଃ କ୍ରିୟମାଣାନି ଗୁଣୈଃ କର୍ମାଣି ସର୍ବଶଃ।
ଅହଂକାର ବିମୂଢ଼ାତ୍ମା କର୍ତ୍ତାହ ମିତି ମନ୍ୟତେ॥
ଗୀତା ୩—୨୭

ପ୍ରକୃତ୍ୟୈବଚ କର୍ମାଣି କ୍ରିୟମାଣାନି ସର୍ବଶଃ।
ଯଃ ପଶ୍ୟତି ତଥାତ୍ମାନମ କର୍ତ୍ତାରଂ ସ ପଶ୍ୟତି॥
ଗୀତା ୧୩—୩୦

ସାଂଖ୍ୟମତରେ ପ୍ରକୃତି ଏକ କିନ୍ତୁ ପୁରୁଷ ବହୁ,

"ଜନ୍ମାଦି ବ୍ୟବସ୍ଥାତଃ ପୁରୁଷ ବହୁତ୍ୱମ୍‌" ସାଂ ସୂତ୍ର ୬-୪୫

ପୁରୁଷ ଅନେକ-ଏହା ସ୍ୱୀକାର ନ କଲେ ଜନ୍ମାଦିର ବ୍ୟବସ୍ଥା ହୁଏ ନାହିଁ। "ଜନ୍ମ ମରଣ କରଣାନାଂ ପ୍ରତିନିୟମାଦ ଯୁଗପତ୍‌ ପ୍ରବୃତ୍ତେଶ୍ଚ, ପୁରୁଷ ବହୁତ୍ୱଂ ସିଦ୍ଧଂ ତ୍ରୈଗୁଣ୍ୟ ବିପର୍ଯ୍ୟୟାଚ୍ଚ "ସାଂଖ୍ୟ କାରିକା ୧୮।" ସମସ୍ତ ଜୀବର ଏକ ସଙ୍ଗରେ ଜନ୍ମମୃତ୍ୟୁ ବା ଇନ୍ଦ୍ରିୟ ବିକଳତା ଦେଖାଯାଏ ନାହିଁ। ଅଡ଼ ମଧ୍ୟ ବିଷୟ ବିଶେଷରେ ସମସ୍ତଙ୍କର ଏକ ପ୍ରକୃତି ଦେଖାଯାଏ ନାହିଁ।

Digitized by srujanika@gmail.com

ଏକ ପୁରୁଷ ଠାରେ ଏକ ଗୁଣ ପ୍ରବଳ, ଅନ୍ୟ ପୁରୁଷ ଠାରେ ଅନ୍ୟଗୁଣ ପ୍ରବଳ; ତେଣୁ ପୁରୁଷ ଅନେକ । ସାଂଖ୍ୟମତରେ ସୃଷ୍ଟିକାଳରେ ପ୍ରକୃତପୁରୁଷ ପରସ୍ପର ସଂଯୁକ୍ତ ଥାଆନ୍ତି, ତାହା ଫଳରେ ପ୍ରକୃତର ଗୁଣ ପୁରୁଷଠାରେ ପୁରୁଷର ଗୁଣ ପ୍ରକୃତ-ଠାରେ ଉପଚରିତ ହୁଏ; ସେହି ହେତୁରୁ ପ୍ରକୃତ ପ୍ରକୃତରେ ଅଚେତନ ହେଲେହେଁ, ଚେତନ ବୋଲି ଧରାଯାଏ ଏବଂ ବସ୍ତୁତଃ ପୁରୁଷ ଅକର୍ତ୍ତା ହେଲେହେଁ କର୍ତ୍ତାପରି ଧରାଯାଏ ।

"ତସ୍ମାତ୍ ତତ୍ ସଂଯୋଗାଦ୍ ଚେତନଂ ଚେତନବଦ୍‌ବଲିଙ୍ଗମ୍
ଗୁଣ କର୍ତ୍ତ୍ତ୍ୱେଽପି ତଥା କର୍ତ୍ତେବ ଭବତ୍ୟୁଦାସୀନଃ ।
ସାଂ-କାରିକା ୨୦ ଶ୍ଳୋକ

ସାଂଖ୍ୟବାଦୀମାନେ ପୁଣି କହନ୍ତି ପ୍ରକୃତ ଅଚେତନ, ସୁତରାଂ ଅନ୍ଧସ୍ଥାନୀୟ । ପୁରୁଷ ଅକର୍ତ୍ତା, ତେଣୁ ପଙ୍ଗୁସ୍ଥାନୀୟ, ଉଭୟ ପରସ୍ପର ସଂଯୁକ୍ତ ହେବାରୁ ଗୋଟିଏ ଅନ୍ୟର ଅଭାବ ପୂରଣ କରେ, ସେମାନଙ୍କ ସଂଯୋଗ ଫଳରେ ସୃଷ୍ଟିକ୍ରିୟା ସମ୍ପନ୍ନ ହୁଏ । ସେ ସୃଷ୍ଟିର ଉଦ୍ଦେଶ୍ୟ ପୁରୁଷର ଭୋଗ ଓ ମୋକ୍ଷ ସାଧନ ।

ପୁରୁଷସ୍ୟ ଦର୍ଶନାର୍ଥଂ ତଥା ପ୍ରଧାନସ୍ୟ କୈବଲ୍ୟାର୍ଥଂ
ପଙ୍ଗ୍ୱନ୍ଧବତ୍ ଉଭୟୋରପି ସଂଯୋଗଃ ତତ୍‌କୃତଃ ସର୍ଗଃ ।
ସାଂ-କାରିକା ୨୧

ପ୍ରକୃତର ପରିଣାମ ଦ୍ୱାରା ଦୁଇଗୋଟି ଉଦ୍ଦେଶ୍ୟ ସିଦ୍ଧ ହୁଏ :—ପ୍ରଥମ ଭୋଗ, ଦ୍ୱିତୀୟ ପ୍ରକୃତ ପୁରୁଷର ଭେଦ ଜ୍ଞାନ । ଯାହାଙ୍କ ପକ୍ଷରେ ଏହି ଦୁଇ ପ୍ରୟୋଜନ ସିଦ୍ଧ ହୋଇଅଛି, ତାଙ୍କ ପକ୍ଷରେ ସୃଷ୍ଟିର ଆବଶ୍ୟକତା ନ ଥାଏ । ଏହିପରି ପ୍ରକୃତ, ପୁରୁଷର



Digitized by srujanika@gmail.com

ମୋକ୍ଷ ସାଧନ କରି କୃତକୃତ୍ୟ ହୁଏ ଏବଂ ପୁରୁଷ ମଧ୍ୟ ପ୍ରକୃତିକୁ ଦର୍ଶନ କରି ମୁକ୍ତ ହୁଏ । ଏହି ଭାବରେ ଉଭୟର ପ୍ରୟୋଜନ ସିଦ୍ଧହେବା ପରେ ବିୟୋଗ ହୁଏ । ଏହାହିଁ ସାଂଖ୍ୟ ମତରେ କୈବଲ୍ୟ ବା ମୁକ୍ତିର ଅବସ୍ଥା ।

ଭାରତୀୟ ପ୍ରଚଳିତ ଧର୍ମ ମତ ଉପରେ ଏହି ସାଂଖ୍ୟ ଦର୍ଶନର ପ୍ରଭାବ ପଡ଼ିଥିବାର ଦେଖାଯାଏ । ପୁରାଣକାରମାନେ ଏହି ସାଂଖ୍ୟ ମତରେହିଁ ସୃଷ୍ଟି ଓ ପ୍ରଳୟ କାର୍ଯ୍ୟ ବର୍ଣ୍ଣନା କରି ଅଛନ୍ତି । ଶକ୍ତି ଉପାସକ ତାନ୍ତ୍ରିକମାନେ ଏହି ପ୍ରକୃତି ପୁରୁଷ ମିଳନ ଦ୍ୱାରା ସ୍ୱମତ ପ୍ରତିଷ୍ଠିତ କରିଅଛନ୍ତି । ଶ୍ରୀମଦ୍‌ଭାଗବତ, ବିଷ୍ଣୁ ପୁରାଣ ପ୍ରଭୃତିରେ ସାଂଖ୍ୟମତର ପ୍ରଭାବ ଅଳ୍ପ ନୁହେଁ । ଭଗବାନ୍ କପିଳ ମହର୍ଷି ରୂପରେ ପୃଥିବୀରେ ଅବତୀର୍ଣ୍ଣ ହୋଇ ସାଂଖ୍ୟ ମତର ପ୍ରଚାର କରିଥିଲେ ବୋଲି ଏପର୍ଯ୍ୟନ୍ତ ଅନେକ ଲୋକ ବିଶ୍ୱାସ କରନ୍ତି । ଗୀତାର ଦଶମ ଅଧ୍ୟାୟରେ ବିଭୂତି ବର୍ଣ୍ଣନା ପ୍ରସଙ୍ଗରେ ଭଗବାନ୍ କହିଅଛନ୍ତି "ସିଦ୍ଧାନାଂ କପିଳୋ ମୁନିଃ" ଏ କପିଳ ଯେ ସାଂଖ୍ୟ ଦର୍ଶନ ପ୍ରଣେତା କପିଳ ନୁହନ୍ତି ଏହା କିଏ କହିବ ।

ସାଂଖ୍ୟବାଦୀମାନେ ଈଶ୍ୱର ବିଶ୍ୱାସ କରନ୍ତି ନାହିଁ । ପ୍ରକୃତି ପୁରୁଷ ଭିନ୍ନ ଏ ସୃଷ୍ଟିର ଅନ୍ୟ ମୌଳିକ ଉପାଦାନ ନାହିଁ, ଏହା ସେମାନଙ୍କର ଦୃଢ଼ବିଶ୍ୱାସ । ମାତ୍ର ଗୀତା ଈଶ୍ୱର ବିଶ୍ୱାସରେ ସମ୍ପୃକ୍ତ; ସୃଷ୍ଟିତତ୍ତ୍ୱ ସମ୍ବନ୍ଧରେ ଗୀତାର କେତେକ ଦାର୍ଶନିକ ମତବାଦ ଭଗବାନ୍ ଗ୍ରହଣ କରିଥିଲେହେଁ ଅନ୍ୟଗୁଡ଼ିକୁ କି ଭାବରେ ଉପେକ୍ଷା କରି ସ୍ୱମତ ପ୍ରତିଷ୍ଠାପିତ କରି ଅଛନ୍ତି ଅତଃପର ତାହାହିଁ ଆଲୋଚିତ ହେବ ।

Digitized by srujanika@gmail.com

ଗୀତାରେ ଭଗବାନଙ୍କର ସ୍ୱମତ ପ୍ରକାଶ ପୂର୍ବେ କୁହାଯାଇ ଅଛି, ସାଂଖ୍ୟ ଦର୍ଶନ ମତରେ ଜ୍ଞାନ ଦ୍ୱାରାହିଁ ମୁକ୍ତି ମିଳେ, ଭଗବାନ୍ ଏହା ଗୀତାର ଚତୁର୍ଥାଧ୍ୟାୟରେ ସ୍ପଷ୍ଟରୂପେ କହି ଅଛନ୍ତି ।

ନହି ଜ୍ଞାନେନ ସଦୃଶଂ ପବିତ୍ରମିହ ବିଦ୍ୟତେ । ଗୀ ୪—୩୮
ଯଥୈଧାଂସି ସମିଦ୍ଧୋଽଗ୍ନି ର୍ଭସ୍ମସାତ୍ କୁରୁତେଽର୍ଜ୍ଜୁନଃ,
ଜ୍ଞାନାଗ୍ନିଃ ସର୍ବକର୍ମାଣି ଭସ୍ମସାତ୍ କୁରୁତେ ତଥା ।
ଗୀ ୪—୩୭

ସାଂଖ୍ୟୋକ୍ତ ଜ୍ଞାନ ପ୍ରକୃତି ପୁରୁଷ ବିଷୟକ ଜ୍ଞାନ, ମାତ୍ର ଗୀତୋକ୍ତ ଜ୍ଞାନ ତତ୍ତ୍ୱଜ୍ଞାନ । ତତ୍—ସେହି ପରମାତ୍ମା, ତାଙ୍କର ବିଷୟକ ଜ୍ଞାନହିଁ ତତ୍ତ୍ୱଜ୍ଞାନ, ଯେଉଁ ଜ୍ଞାନଦ୍ୱାରା ଜୀବ ସମସ୍ତ ପ୍ରାଣୀଙ୍କୁ ପ୍ରଥମତଃ ଆପଣାଠାରେ ଏବଂ ପରିଶେଷରେ ଈଶ୍ୱରଙ୍କଠାରେ ଦର୍ଶନ କରେ ତାହାହିଁ ଜ୍ଞାନ ।

"ଯେନ ଭୂତାନ୍ୟ ଶେଷାଣି ଦ୍ରକ୍ଷ୍ୟସ୍ୟାତ୍ମନ୍ୟଥୋମୟି"
ଗୀ ୪—୩୫

ଉପନିଷଦରେ ଏହାକୁହିଁ ତତ୍ତ୍ୱଜ୍ଞାନ ରୂପେ ନିର୍ଦ୍ଦେଶ କରାଯାଇ ଅଛି ।

"ଅଥ ପରାଜୟା ତଦକ୍ଷର ମଧିଗମ୍ୟତେ"
ମୁଣ୍ଡକୋପନିଷଦ୍ ୧।୧।୫

ଅର୍ଥାତ୍ ଯେଉଁ ପରା ବିଦ୍ୟାଦ୍ୱାରା ସେହି ଅକ୍ଷର ପୁରୁଷଙ୍କୁ ଲାଭ କରା ଯାଏ, ତାହାହିଁ ତତ୍ତ୍ୱଜ୍ଞାନ । ଜ୍ଞାନର ପରିପକ୍ୱାବସ୍ଥାରେ ଭକ୍ତି ସ୍ୱତଃ ଜାତ ହୁଏ । ଜ୍ଞାନର ଲକ୍ଷଣ ନିର୍ଦ୍ଦେଶ ବେଳେ ଗୀତାର ୧୩ଶ ଅଧ୍ୟାୟରେ ଭଗବାନ୍ କହିଅଛନ୍ତି ।

"ମୟି ଚାନନ୍ୟ ଯୋଗେନ ଭକ୍ତିର ବ୍ୟଭିଚାରିଣୀ
ଗୀ—୧୩।୧୦

Digitized by srujanika@gmail.com

ତେଣୁ ଜ୍ଞାନୀକୁ ଭଗବଦ୍ ଭକ୍ତ ହେବାକୁ ପଡ଼େ । ଚତୁର୍ଥ ଅଧ୍ୟାୟରେ ଭଗବଦ୍ ଭକ୍ତଙ୍କର ଶ୍ରେଣୀ ବିଭାଗ ସ୍ଥଳରେ ଏହାହିଁ ବର୍ଣ୍ଣିତ ହୋଇଅଛି ।

"ଚତୁର୍ବିଧା ଭଜନ୍ତେୟନାମ୍"

ମାତ୍ର ସାଂଖ୍ୟୋକ୍ତଜ୍ଞାନ ଏପରି ନୁହେ, ଯହିଁରେ ଈଶ୍ୱର ଅସିଦ୍ଧ ବୋଲି ସ୍ପଷ୍ଟ ଉକ୍ତ ହୋଇଅଛି । ସେଠାରେ ଭକ୍ତିର ସମ୍ବନ୍ଧ ଆସିବ କିପରି ? "ଈଶ୍ୱରାସିଦ୍ଧେଃ" ସାଂଖ୍ୟସୂତ୍ର ୧—୯୨ ଗୀତା ପୁରୁଷଙ୍କର ବହୁତ୍ୱସ୍ୱୀକାର କରନ୍ତି ନାହିଁ । ଗୀତା କହନ୍ତି ଯେପରି ଏକମାତ୍ର ସୂର୍ଯ୍ୟ ସମସ୍ତ ଜଗତ୍ ପ୍ରକାଶ କରନ୍ତି, ସେହିପରି ଏକ କ୍ଷେତ୍ରୀ (ପୁରୁଷ) ସମସ୍ତ କ୍ଷେତ୍ରକୁ (ଶରୀରକୁ) ପ୍ରକାଶ କରନ୍ତି ।

ଯଥା ପ୍ରକାଶୟତ୍ୟେକଃ କୃତ୍ସ୍ନଂ ଲୋକଃ ମିମଂରବିଃ,
କ୍ଷେତ୍ରଂ କ୍ଷେତ୍ରୀ ତଥା କୃତ୍ସ୍ନଂ ପ୍ରକାଶୟତି ଭାରତଃ ।
ଗୀ—୧୩।୩୩

ଏକ ଭଗବାନହିଁ ସମସ୍ତ କ୍ଷେତ୍ରରେ କ୍ଷେତ୍ରୀ ବା କ୍ଷେତ୍ରଜ୍ଞ ରୂପରେ ବିରାଜିତ ଅଛନ୍ତି ।

"କ୍ଷେତ୍ରଜ୍ଞଂ ଚାପି ମାଂବିଦ୍ଧି ସର୍ବକ୍ଷେତ୍ରେଷୁଭାରତ"
ଗୀ—୧୩।୨୩

ଅନ୍ୟତ୍ର—"ଅହମାତ୍ମା ଗୁଡ଼ାକେଶ ସର୍ବଭୂତାଶୟସ୍ଥିତଃ"
ଗୀ—୧୦।୨୦

"ସର୍ବସ୍ୟ ଚାହଂ ହୃଦି ସନ୍ନିବିଷ୍ଟଃ" ଗୀ ୧୫।୧୫

ସାଂଖ୍ୟବାଦୀମାନେ କହନ୍ତି—ପୁରୁଷର ଭୋଗ ଓ ମୋକ୍ଷ ସାଧନ ନିମିତ୍ତହିଁ ପ୍ରକୃତିର ସାମ୍ୟାବସ୍ଥାର ବିଚ୍ୟୁତି ଘଟେ । ମାତ୍ର

Digitized by srujanika@gmail.com

ପ୍ରକୃତିର ପରିଣାମ ଯେ ସ୍ୱତଃ ସମ୍ପନ୍ନ ହୁଏ, ଗୀତା ଏହା ସ୍ୱୀକାର କରନ୍ତି ନାହିଁ ।

"ମୟାଧ୍ୟକ୍ଷେଣ ପ୍ରକୃତିଃ ସୂୟତେ ସଚରାଚରମ୍
ହେତୁ ନାନେନ କୌନ୍ତେୟ ଜଗତ୍ ବିପରିବର୍ତ୍ତତେ ।
ଗୀ—୯।୧୦

ଭଗବାନ୍‌ଙ୍କ ଅଧିଷ୍ଠାନ ହେତୁରୁ ପ୍ରକୃତି ଏହି ଚରାଚର ବିଶ୍ୱ ପ୍ରସବ କରେ ଏବଂ ସେହି କାରଣରୁ ଜଗତର ପରିଣାମ ସମ୍ପାଦିତ ହୁଏ । ଗୀତାରେ ଅନ୍ୟତ୍ର ଉକ୍ତ ହୋଇଅଛି ଯେ, ସୃଷ୍ଟି ଆରମ୍ଭରେ ଭଗବାନ୍ ପ୍ରକୃତିକୁ ଈକ୍ଷଣ କରନ୍ତି । ତାହାର ଫଳରେ ପ୍ରକୃତିର ସାମ୍ୟାବସ୍ଥାର ବିଚ୍ୟୁତି ଘଟେ ଏବଂ ପ୍ରକୃତିର ପରିଣାମ ଆରବ୍ଧ ହୁଏ ଏହାକୁ ଗୀତାରେ ପ୍ରକୃତିର ଗର୍ଭାଧାନ କୁହା ଯାଇପାରେ ।

"ମମ ଯୋନିର୍ମହଦ୍ ବ୍ରହ୍ମ ତସ୍ମିନ୍ ଗର୍ଭଂ ଦଧାମ୍ୟହଂ
ସମ୍ଭବଃ ସର୍ବଭୂତାନାଂ ତତୋ ଭବତି ଭାରତ ।
ସର୍ବଯୋନିଷୁ କୌନ୍ତେୟ ମୂର୍ତ୍ତୟଃ ସମ୍ଭବନ୍ତି ଯାଃ
ତାସାଂ ବ୍ରହ୍ମ ମହଦ୍‌ଯୋନି ରହଂ ବୀଜ ପ୍ରଦଃ ପିତା ।
ଗୀତା ୧୪।୩।୨୪

ସାଂଖ୍ୟ ମତରେ ପ୍ରକୃତି ଓ ପୁରୁଷ ବିଶ୍ୱର ଚରମ ଦ୍ୱୈତ । ପ୍ରକୃତି ଜଡ଼, ପୁରୁଷ ଚେତନ । ଏହି ଦ୍ୱୈତ ବସ୍ତୁରେ ସାଂଖ୍ୟ ଶାସ୍ତ୍ରର ପର୍ଯ୍ୟବସାନ, ମାତ୍ର ଗୀତା ମତରେ ଏହି ପ୍ରକୃତି ଓ ପୁରୁଷ ଭଗବାନଙ୍କର ଦୁଇଟି ବିଭାବ ମାତ୍ର ।

ଭୂମିରାପୋଽନଲୋ ବାୟୁଃ ଖଂ ମନୋ ବୁଦ୍ଧିରେବଚ
ଅହଂକାର ଇତୀୟଂ ମେ ଭିନ୍ନା ପ୍ରକୃତିରଷ୍ଟଧା ।

Digitized by srujanika@gmail.com

ଅପରେୟ ମିତସ୍ତ୍ୱନ୍ୟାଂ ପ୍ରକୃତିଂ ବିଦ୍ଧି ମେ ପରାମ୍
ଜୀବ ଭୂତାଂ ମହାବାହୋ ଯୟେଦଂ ଧାର୍ଯ୍ୟତେ ଜଗତ୍ ।
ଏତଦ୍ ଯୋନୀନି ଭୂତାନି ସର୍ବାଣୀତ୍ୟୁ ପଧାରୟ
ଅହଂ କୃତ୍ସ୍ନସ୍ୟ ଜଗତଃ ପ୍ରଭବଃ ପ୍ରଳୟ ସ୍ତଥା । ଗୀତା ୭।୬

ଭଗବାନଙ୍କର ପରା ଓ ଅପରା ଏହି ଦୁଇଗୋଟି ପ୍ରକୃତି, ଅପରା ପ୍ରକୃତି, କ୍ଷିତି, ଅପ୍, ତେଜଃ, ମରୁତ୍, ବ୍ୟୋମ, ମନଃ, ବୁଦ୍ଧି, ଅହଂକାର ଏହି ଆଠଭାଗରେ ବିଭକ୍ତ । ପରାପ୍ରକୃତି ଜୀବଙ୍କ ବା ଆତ୍ମା ଏହି ଉଭୟର ସଂଯୋଗରେ ଚରାଚର ବ୍ରହ୍ମାଣ୍ଡର ଉତ୍ପତ୍ତି । ଈଶ୍ୱର ଏ ସଂସାରର ଚରମ ତତ୍ତ୍ୱ ।

ଗୀତାର ୧୫ଶ ଅଧ୍ୟାୟରେ ଏହି ପରା ଓ ଅପରା ପ୍ରକୃତିକୁ ଭଗବାନ୍ କ୍ଷରପୁରୁଷ ଓ ଅକ୍ଷର ପୁରୁଷ ରୂପରେ ମଧ୍ୟ ବର୍ଣ୍ଣନା କରି ଅଛନ୍ତି ।

କିନ୍ତୁ ଭଗବାନ୍ ଏ ଉଭୟ ଉପରେ ସେତେବେଳେ ସେ ଆପଣାକୁ ପୁରୁଷୋତ୍ତମ ନାମରେ ଅଭିହିତ କରି ଅଛନ୍ତି—

ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷରଏବଚ
କ୍ଷରଃ ସର୍ବାଣି ଭୂତାନି କୁଟସ୍ଥୋଽକ୍ଷର ଉଚ୍ୟତେ
ଉତ୍ତମ ପୁରୁଷସ୍ତ୍ୱନ୍ୟଃ ପରମାତ୍ମେତ୍ୟୁଦାହୃତଃ
ଯୋ ଲୋକତ୍ରୟ ମାବିଶ୍ୟ ବିଭର୍ତ୍ତ୍ୟ ବ୍ୟୟ ଈଶ୍ୱର । ଗୀ ୧୫।୧୬।୧୭

ପ୍ରକୃତି ପୁରୁଷ ଗୀତାର ପରମ ତତ୍ତ୍ୱ ନୁହେଁ । ଈଶ୍ୱରହିଁ ଚରମ ତତ୍ତ୍ୱ । ପ୍ରକୃତି ଓ ପୁରୁଷ ଦୁହେଁ ଭଗବାନ୍‌ଙ୍କର ଦୁଇଟି ବିଭାଗ ବା ପ୍ରକାର ମାତ୍ର ।

ଶ୍ରୁତିରେ ମଧ୍ୟ ଏହିପରି ବର୍ଣ୍ଣିତ ହୋଇଅଛି ।

Digitized by srujanika@gmail.com

"କ୍ଷରଂ ପ୍ରଧାନମ୍‌ ଅମୃତାକ୍ଷରଂ ହରଃ
କ୍ଷରାତ୍ମନୌ ଈଶତେ ଦେବ ଏକଃ ।"
ଶ୍ୱେତାଶ୍ୱତର ୧।୧୦

କ୍ଷରହିଁ ପ୍ରଧାନ, ଅକ୍ଷର ଅମୃତ, ଯେଉଁ ଅଦ୍ୱିତୀୟ ଦେବ, କ୍ଷର ଓ ଆତ୍ମାର ପ୍ରଭୁ ସେ ଏକ ଭଗବାନ୍‌ ହର ।

## ୪—ପାତଞ୍ଜଳ ଦର୍ଶନ

ମହର୍ଷି ପତଞ୍ଜଳି ଯୋଗ ଦର୍ଶନର ପ୍ରଣେତା, ତେଣୁ ଏହାକୁ ପାତଞ୍ଜଳ ଦର୍ଶନ କୁହାଯାଏ । କେହି କେହି କହନ୍ତି ପାତଞ୍ଜଳ ଦର୍ଶନର ନାମାନ୍ତର ସାଂଖ୍ୟ ପ୍ରବଚନ । କାରଣ ମହର୍ଷି ପତଞ୍ଜଳି ସାଂଖ୍ୟ ଦର୍ଶନର ସିଦ୍ଧାନ୍ତ ସମୂହକୁ ସମ୍ପୂର୍ଣ୍ଣରୂପେ ଗ୍ରହଣ କରି ଅଛନ୍ତି । ପୁରୁଷ, ପ୍ରକୃତି, ମହତ୍ତ୍ୱ, ଅହଙ୍କାର ପଞ୍ଚତନ୍ମାତ୍ର ଏକାଦଶ ଇନ୍ଦ୍ରିୟ ଓ ପଞ୍ଚମହାଭୂତ ଏହି ପଞ୍ଚବିଂଶତି ତତ୍ତ୍ୱ ଏ ଦର୍ଶନରେ ସ୍ୱୀକୃତ ହୋଇଅଛି । ଏହି ପଞ୍ଚବିଂଶତି ତତ୍ତ୍ୱ ଛଡ଼ା ଯୋଗ ଦର୍ଶନରେ ଆଉ ଗୋଟିଏ ନୂତନତତ୍ତ୍ୱ ସ୍ୱୀକୃତ ହୋଇଅଛି । ତାହା ଈଶ୍ୱର, ତେଣୁ ଯୋଗଦର୍ଶନ ମତରେ ତତ୍ତ୍ୱ ୨୬ ଗୋଟି । କେହି କେହି ପାତଞ୍ଜଳ ଦର୍ଶନକୁ ସେଶ୍ୱର ସାଂଖ୍ୟ ମଧ୍ୟ କହନ୍ତି । ଈଶ୍ୱରଙ୍କ ତତ୍ତ୍ୱ ନିରୂପଣ ପ୍ରସଙ୍ଗରେ ପତଞ୍ଜଳି କହିଅଛନ୍ତି—

### ଈଶ୍ୱର

"କ୍ଲେଶ କର୍ମ ବିପାକାଶୟୈରପରାମୃଷ୍ଟଃ
ପୁରୁଷ ବିଶେଷଈଶ୍ୱରଃ ।" ପା ୧।୨୪

"ତତ୍ର ନିରତିଶୟଂ ସର୍ବଜ୍ଞବୀଜମ୍‌ ।" ପା ୧।୨୫

"ସ ପୂର୍ବେଷାମପିଗୁରୁଃ କାଲେନାନବଚ୍ଛେଦାତ୍‌ ।" ପା ୧।୨୬

ସାଧାରଣ ପୁରୁଷ ବା ଆତ୍ମା ଯେପରି କ୍ଲେଶ, (ଅଜ୍ଞାନାଦିପାଞ୍ଚ) କର୍ମ ( ନାନାପ୍ରକାର କାର୍ଯ୍ୟ ) ବିପାକ, ( କର୍ମଫଳ ) ଆଶୟ,

Digitized by srujanika@gmail.com

(ସଂସ୍କାର)ର ସଂପର୍କଯୁକ୍ତ ଈଶ୍ୱର ସେ ସବୁରୁ ମୁକ୍ତ, ତାହାଙ୍କଠାରେ ନିରତିଶୟ ଜ୍ଞାନ ଥିବାରୁ ସେ ସର୍ବଜ୍ଞ ଅର୍ଥାତ୍ ସର୍ବଜ୍ଞତାର ଅନୁମାପକ ପରିପୂର୍ଣ୍ଣ ଜ୍ଞାନଶକ୍ତି ବିଦ୍ୟମାନ ଅଛି । ଅନ୍ୟ ଆତ୍ମାଠାରେ ତାହା ନାହିଁ । ସେ ପୂର୍ବ ପୂର୍ବ ସୃଷ୍ଟିକର୍ତ୍ତାଙ୍କ ଗୁରୁ ଅର୍ଥାତ୍ ଉପଦେଷ୍ଟା । ସେ କାଳଦ୍ୱାରା ପରିଚ୍ଛିନ୍ନ ନୁହନ୍ତି । ବ୍ରହ୍ମାଦି ଦେବତାମାନଙ୍କୁ ସୃଷ୍ଟିକର୍ତ୍ତା କୁହାଯାଏ ସତ; କିନ୍ତୁ ଈଶ୍ୱର ସେମାନଙ୍କୁ ସୃଷ୍ଟି କରି ଅଛନ୍ତି ମଧ୍ୟ ଉପଦେଶ ଦେଇ ଅଛନ୍ତି । ବ୍ରହ୍ମାଦି ଦେବତାମାନଙ୍କର ଜନ୍ମ ଓ ମୃତ୍ୟୁ ଅଛି; କିନ୍ତୁ ତାହାଙ୍କର ଜନ୍ମ ନାହିଁ କି ମୃତ୍ୟୁ ନାହିଁ । ସେ ଅନାଦି, ଅନନ୍ତ, ଆଦିପିତା ପରମେଶ୍ୱର ବ୍ରହ୍ମାଙ୍କୁ ସୃଷ୍ଟି କରି ତାହାଙ୍କୁ ବେଦ ଅର୍ଥାତ୍ ସୃଷ୍ଟିଜ୍ଞାନ ଦେଇ ଅଛନ୍ତି । ଅତଏବ ସେ ସର୍ବସ୍ରଷ୍ଟା; ସର୍ବଜ୍ଞାନର ଖଣି ଓ କାଳରୁ ଅତୀତ ।

କିନ୍ତୁ ଏହି ୨୬ ତତ୍ତ୍ୱ ଯୋଗ ଦର୍ଶନର ମୁଖ୍ୟ ଆଲୋଚିତ ବିଷୟ ନୁହେଁ । ଯୋଗହିଁ ଏହାର ପ୍ରଧାନ ପ୍ରତିପାଦ୍ୟ ବିଷୟ । ସାଂଖ୍ୟବାଦୀମାନେ ଯେଉଁ ୨୫ ତତ୍ତ୍ୱର ସମ୍ୟକ୍ ଜ୍ଞାନଦ୍ୱାରା ମୋକ୍ଷ ଲାଭହୁଏ ବୋଲି କହନ୍ତି, ପତଞ୍ଜଳିଙ୍କ ମତରେ ମୋକ୍ଷଲାଭ ପକ୍ଷରେ ଏଜ୍ଞାନ ଯଥେଷ୍ଟ ନୁହେଁ । ପ୍ରକୃତି ପୁରୁଷର ଭେଦ ଜ୍ଞାନ, ଯୋଗଭିନ୍ନ ଅନ୍ୟ ଭାବରେ ଲାଭ ହୋଇ ପାରେନାହିଁ । ତେଣୁ ଯୋଗ ବିଷୟର ଅବତାରଣା କରାଗଲା ।

"ଯୋଗ ଶ୍ଚିତ୍ତବୃତ୍ତି ନିରୋଧଃ ।"

ଚିତ୍ତ ବୃତ୍ତି ନିରୋଧର ନାମ ଯୋଗ । ଚିତ୍ତ ଏକାଗ୍ର ନ ହେଲେ ସାଧକ ଯୋଗର ଅଧିକାରୀ ହୁଅନ୍ତି ନାହିଁ । କି ଉପାୟରେ ଚିତ୍ତ ଏକାଗ୍ର ହେବ, ସେଥିପାଇଁ ସଂଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧି ଏହି ଅଷ୍ଟାଙ୍ଗ ବ୍ୟବସ୍ଥାପିତ

Digitized by srujanika@gmail.com

ହୋଇଅଛି । ଧ୍ୟାନ ପରିପକ୍ୱ ହୋଇ ଯେତେବେଳେ ଧ୍ୟେୟାକାରରେ ପରିଣତ ହୁଏ ସେହି ଅବସ୍ଥାର ନାମ ସମାଧି । ସମାଧି ଲାଭରେ ସାଧକ ମୁକ୍ତିର ଅଧିକାରୀ ହୁଅନ୍ତି ।

ଚିତ୍ତ ବୃତ୍ତି ନିରୋଧ ସମ୍ବନ୍ଧରେ ପତଞ୍ଜଳି ପ୍ରଥମେ ଉପଦେଶ ଦେଇଅଛନ୍ତି ।

"ଅଭ୍ୟାସ ବୈରାଗ୍ୟାଭ୍ୟାଂ ତନ୍ନିରୋଧଃ ।" ପା—୧।୧୨।୫୭

ଅଭ୍ୟାସ ଓ ବୈରାଗ୍ୟ ଆୟତ୍ତ ହେଲେ ଯୋଗୀଙ୍କର ସମାଧି ଲାଭହୁଏ । ଅଭ୍ୟାସ ଓ ବୈରାଗ୍ୟ ଭିନ୍ନ ଈଶ୍ୱର ପ୍ରଣିଧାନ ଦ୍ୱାରା ମଧ୍ୟ ସମାଧି ସିଦ୍ଧି ହୁଏ ।

"ଈଶ୍ୱର ପ୍ରଣିଧାନାଦ୍ୱା ।" ପା—୧।୨୩

ଏଥିରୁ ଜଣାଯାଇ ଅଛି ଯେ, ଈଶ୍ୱର ପ୍ରଣିଧାନ ସମାଧି ସିଦ୍ଧିର ବୈକଳ୍ପିକ ଉପାୟ ମୁଖ୍ୟ ଉପାୟ ନୁହେଁ—ଏହି ଦୁଇ ଉପାୟ ଛଡ଼ା ଯୋଗ ଦର୍ଶନରେ ସମାଧି ସିଦ୍ଧି ନିମିତ୍ତ ଆଉ ୭ ଗୋଟି ଉପାୟ ନିର୍ଦ୍ଦିଷ୍ଟ ଅଛି, ଈଶ୍ୱରଙ୍କ ଦୟା ହେଲେ ସାଧକ ସମାଧିରେ ସିଦ୍ଧି ଲାଭ କରିପାରନ୍ତି—ଏହାହିଁ ଈଶ୍ୱର ପ୍ରଣିଧାନ ଉଦ୍ଦେଶ୍ୟ । ଈଶ୍ୱର ପ୍ରଣିଧାନ ବ୍ୟତୀତ ସମାଧିରେ ମଧ୍ୟ ସିଦ୍ଧି ଲାଭ କରାଯାଇ ଥାଏ । ସମାଧିରେ ସିଦ୍ଧିଲାଭ ହେଲେ ପ୍ରକୃତି ଓ ପୁରୁଷଙ୍କର ଭେଦ ଜ୍ଞାନ ନିଶ୍ଚିତ ରୂପେ ଅନୁଭୂତ ହୁଏ । ଏହାହିଁ ପାତଞ୍ଜଳୋକ୍ତ ମୋକ୍ଷ, ଏହି ମୋକ୍ଷ ସୁଖ ଦୁଃଖର ଅତୀତ କୈବଲ୍ୟ ଅବସ୍ଥା । ସୁଖ ସଙ୍ଗେ ଏହାର ସମ୍ବନ୍ଧ ନାହିଁ । ଗୀତାର ଷଷ୍ଠାଧ୍ୟାୟରେ ଧେୟବସ୍ତୁରେ ଚିତ୍ତର ଏକାଗ୍ରତା ବିଧାନ ପାଇଁ ଭଗବାନ୍ ଅଷ୍ଟାଙ୍ଗ ଯୁକ୍ତ ପାତଞ୍ଜଳ ଯୋଗ ଅଭ୍ୟାସ କରିବା ପାଇଁ ଉପଦେଶ ଦେଇଅଛନ୍ତି । ଷଷ୍ଠ "ଅଧ୍ୟାୟର

"ଯୋଗୀ ଯୁଞ୍ଜୀତସତତ ମାତ୍ମାନଂ ରହସିସ୍ଥିତଃ ।"

Digitized by srujanika@gmail.com

ଠୋରୁ ଅଧ୍ୟାୟର ଶେଷ ପର୍ଯ୍ୟନ୍ତ ସଂକ୍ଷେପରେ ଏହି ପାତଞ୍ଜଳ ଯୋଗହିଁ ବର୍ଣ୍ଣିତ ହୋଇଅଛି । ଗୀତା ମତରେ ଏହି ସମାଧି ସିଦ୍ଧି ହେଲେ ଆତ୍ମସ୍ୱରୂପ ପ୍ରତିଭାତ ହୁଏ ଏବଂ ଯୋଗସିଦ୍ଧ ସାଧକ ବ୍ରହ୍ମାନନ୍ଦରୂପ ପରମ ଶାନ୍ତି ଲାଭ କରନ୍ତି ଏବଂ ବ୍ରହ୍ମ ସଙ୍ଗ ସଙ୍ଗ ଅନୁଭବ କରି ଭକ୍ତୋତ୍ତମ ହୁଅନ୍ତି । ଅଭ୍ୟାସ ଓ ବୈରାଗ୍ୟ ଦ୍ୱାରା ଅସଂଯତ ମନକୁ ଦୃଢ଼କରିବା ପାଇଁ ପତଞ୍ଜଳି ଯେଉଁ ଉପଦେଶ ଦେଇ ଅଛନ୍ତି ଗୀତା ତାହା ଅନୁମୋଦନ କରିଅଛି । ଗୀତୋକ୍ତ ସମାଧିର ଫଳ ବ୍ରହ୍ମାନନ୍ଦର ଅନୁଭୂତି ଏବଂ ବ୍ରହ୍ମାନନ୍ଦ ଲାଭ ପାତଞ୍ଜଳ ମୋକ୍ଷ ଲାଭଠାରୁ ସମ୍ପୂର୍ଣ୍ଣ ପୃଥକ୍ ।

ଆଉ ଗୋଟିଏ କଥା ଗୀତା ମତରେ ପରମାତ୍ମାଙ୍କ ଠାରେ ଆତ୍ମାର ଯୋଗହିଁ ଯୋଗ । ଈଶ୍ୱରଙ୍କୁ ଛାଡ଼ିଦେଲେ ଏ ଯୋଗ ହୋଇପାରେ ନାହିଁ । ମାତ୍ର ପାତଞ୍ଜଳ ଯୋଗର ଉଦ୍ଦେଶ୍ୟ—ପ୍ରକୃତି ପୁରୁଷଙ୍କ ବିଭେଦ ଜ୍ଞାନ ଉପଲବ୍ଧି, ଅତଏବ ପାତଞ୍ଜଳ ଯୋଗ ପ୍ରକୃତି ପୁରୁଷର ବିୟୋଗ, କିନ୍ତୁ ଗୀତୋକ୍ତ ଯୋଗ ପରମାତ୍ମାଙ୍କଠାରେ ଆତ୍ମାର ସଂଯୋଗ ।

## ୬—ବେଦାନ୍ତ ଦର୍ଶନ

ଭାରତୀୟ ଦର୍ଶନ ମଧ୍ୟରେ ବେଦାନ୍ତ ଦର୍ଶନର ସ୍ଥାନ ସର୍ବୋଚ୍ଚ, କାରଣ ଏହି ଦର୍ଶନ ବ୍ରହ୍ମବାଦରେ ସମୁଜ୍ଜ୍ୱଳ । ମହର୍ଷି ବାଦରାୟଣ ଏହି ଦର୍ଶନର ପ୍ରଣେତା । ଏହି ଦର୍ଶନରେ ସୂତ୍ର ସଂଖ୍ୟା ୫୫୬ ଗୋଟି, ସୂତ୍ର ଗୁଡ଼ିକ ଅତି ସଂକ୍ଷେପରେ ଲିପିବଦ୍ଧ ହୋଇ ଥିବାରୁ ଭାଷ୍ୟ ବା ଟୀକାକାର ସାହାଯ୍ୟ ବ୍ୟତୀତ ସେ ସବୁ ସହଜରେ ହୃଦୟଙ୍ଗମ ହୁଏ ନାହିଁ । ପ୍ରବନ୍ଧର ପ୍ରଥମ ଅଂଶରେ କୁହାଯାଇଅଛି ଚରମ ସତ୍ୟ ନିର୍ଣ୍ଣୟରେ ଆପ୍ତବାକ୍ୟହିଁ ପରମ ପ୍ରମାଣ ଯୁକ୍ତି

Digitized by srujanika@gmail.com

ତର୍କଦ୍ୱାରା ସତ୍ୟ ନିର୍ଣ୍ଣୟକରି ହୁଏ ନାହିଁ। ଶ୍ରୁତି ବା ବେଦବାକ୍ୟକୁ ସେହି ହେତୁରୁ ଦାର୍ଶନିକମାନେ ସତ୍ୟ ନିର୍ଣ୍ଣୟର ଏକମାତ୍ର ମାର୍ଗରୂପେ ଗ୍ରହଣ କରିଅଛନ୍ତି। ମହର୍ଷି ବାଦରାୟଣ ତଥା ଗୀତା ଧର୍ମ ପ୍ରବର୍ତ୍ତକ କୃଷ୍ଣରୂପୀ ଭଗବାନ୍ ଉଭୟେ ଶ୍ରୁତି ବାକ୍ୟ ଉପରେ ଚରମ ସତ୍ୟ ନିର୍ଣ୍ଣୟ କରି ଅଛନ୍ତି—ଅନ୍ୟାନ୍ୟ ଧର୍ମଶାସ୍ତ୍ର ପ୍ରଣେତା-ମାନେ ମଧ୍ୟ ଏହି ମାର୍ଗର ପଥିକ ମାତ୍ର; ସେମାନେ ନିଜ ନିଜ ଶିକ୍ଷା ଏବଂ ଜ୍ଞାନାନୁସାରେ ଶ୍ରୁତି ବାକ୍ୟର ଅର୍ଥ ଭିନ୍ନ ରୂପରେ ଗ୍ରହଣ କରି ନିଜ ନିଜ ମତ ପ୍ରତିଷ୍ଠାପିତ କରିଅଛନ୍ତି।

ସେ ଯାହାହେଉ ଯେଉଁ ବ୍ୟାସଦେବ ମହାଭାରତର ପ୍ରଣେତା, ସେହି ବାଦରାୟଣ ବା ବ୍ୟାସଦେବ ବେଦାନ୍ତ ଦର୍ଶନର ପ୍ରଣେତା। ଏହା ଯେବେ ସତ୍ୟ ବୋଲି ଧରାଯାଏ, ତେବେ ବେଦାନ୍ତ ଦର୍ଶନ ଓ ଗୀତା ମଧ୍ୟରେ ମତାନୈକ୍ୟରହିବା ଉଚିତ ନୁହେଁ। କର୍ମକାଣ୍ଡାତ୍ମକ ବେଦାନ୍ତର ବିରୋଧ ଭଞ୍ଜନ ଓ ସାମଞ୍ଜସ୍ୟ ବିଧାନ କରିବା ଉଦ୍ଦେଶ୍ୟରେ ମହର୍ଷି ଜୈମିନି ପୂର୍ବମୀମାଂସା ଯେପରି ପ୍ରଣୟନ କରିଅଛନ୍ତି, ଜ୍ଞାନକାଣ୍ଡାତ୍ମକ ବେଦାନ୍ତ ବା ଉପନିଷଦ୍ ମାନଙ୍କ ମଧ୍ୟରେ ସାମଞ୍ଜସ୍ୟ ବିଧାନ ପାଇଁ ମହର୍ଷି ବାଦରାୟଣ ସେହିପରି ବେଦାନ୍ତ ଦର୍ଶନ ପ୍ରଣୟନ କରିଅଛନ୍ତି। ବେଦାନ୍ତ ଦର୍ଶନର ଅନ୍ୟ ନାମ ବ୍ରହ୍ମସୂତ୍ର।

ବେଦାନ୍ତ ଦର୍ଶନର ବହୁବିଧ ଭାଷ୍ୟ ଓ ଟୀକା ପ୍ରଚଳିତ ଅଛି। ତନ୍ମଧ୍ୟରେ ଶଙ୍କରାଚାର୍ଯ୍ୟଙ୍କର ଶାରୀରିକ ଭାଷ୍ୟ, ରାମାନୁଜା-ଚାର୍ଯ୍ୟଙ୍କର ଶ୍ରୀଭାଷ୍ୟ ଓ ଗୋବିନ୍ଦାଚାର୍ଯ୍ୟଙ୍କର ଭାଷ୍ୟ ପ୍ରଧାନ। ଏ ତିନି ଭାଷ୍ୟ ଉପରେ ଯଥାକ୍ରମେ ଅଦ୍ୱୈତବାଦ, ବିଶିଷ୍ଟାଦ୍ୱୈତବାଦ ଓ ଦ୍ୱୈତବାଦ ପ୍ରତିଷ୍ଠିତ, ଶଙ୍କରାଚାର୍ଯ୍ୟ ଖ୍ରୀଷ୍ଟ ଅଷ୍ଟମ ଶତାବ୍ଦୀର ଲୋକ,

Digitized by srujanika@gmail.com

ତାହାଙ୍କର ପ୍ରାୟ ୫୦୦ ବର୍ଷ ପରେ ରାମାନୁଜାଚାର୍ଯ୍ୟଙ୍କର ଜନ୍ମ । ଅଦ୍ବୈତ ମତ ଓ ବିଶିଷ୍ଟାଦ୍ବୈତ ମତର ଆଚାର୍ଯ୍ୟ ରୂପେ ଶଙ୍କର ଓ ରାମାନୁଜ ପରିଚିତ ହେଲେହେଁ ଏହି ଦୁଇ ମତ ଏମାନଙ୍କର ବହୁ ପୂର୍ବେ ଏ ଦେଶରେ ଯେ ପ୍ରଚଳିତ ଥିଲା ଏହାର ଅନେକ ପ୍ରମାଣ ଅଛି ।

ଅଦ୍ବୈତବାଦ ଓ ବିଶିଷ୍ଟାଦ୍ବୈତବାଦ ଉଭୟ ମତ ବେଦାନ୍ତ ଦର୍ଶନ ଉପରେ ପ୍ରତିଷ୍ଠିତ ହେଲେହେଁ—ସୂତ୍ରବ୍ୟାଖ୍ୟାରେ ଉଭୟ ଆଚାର୍ଯ୍ୟଙ୍କ ମଧ୍ୟରେ ମାରାତ୍ମକ ପ୍ରଭେଦ ଦେଖାଯାଏ । ଯେଉଁ ଶ୍ରୁତିବାକ୍ୟ ବା ଉପନିଷଦ୍ ମନ୍ତ୍ର ଉପରେ ମୂଳ ବେଦାନ୍ତ ଦର୍ଶନ ପ୍ରତିଷ୍ଠିତ—ତହିଁରେ ବ୍ରହ୍ମଙ୍କର ସଗୁଣତ୍ୱ ଓ ନିର୍ଗୁଣତ୍ୱ ଉଭୟ ବର୍ଣ୍ଣିତ ହୋଇଅଛି । ଶଙ୍କର ନିର୍ଗୁଣ ବ୍ରହ୍ମଙ୍କର, ରାମାନୁଜ ସଗୁଣ ବ୍ରହ୍ମଙ୍କର ପକ୍ଷପାତୀ । ଅଧିକନ୍ତୁ ବେଦାନ୍ତ ଦର୍ଶନର ସୂତ୍ରର ଭାଷା ଏପରି ସଂକ୍ଷିପ୍ତ ଯେ, ଦର୍ଶନଶାସ୍ତ୍ର ପ୍ରଣେତାଙ୍କର ପ୍ରକୃତ ଉଦ୍ଦେଶ୍ୟ ତହିଁରୁ ସହଜରେ ଧରି ହୁଏ ନାହିଁ । ଏହାହିଁ ଏପରି ମାରାତ୍ମକ ପ୍ରଭେଦର କାରଣ ।

ନିମ୍ନଲିଖିତ ଚାରିଗୋଟି ବିଷୟରେ ଆଚାର୍ଯ୍ୟ ଦ୍ୱୟଙ୍କ ମଧ୍ୟରେ ଗୁରୁତର ମତଦ୍ବୈଧ ଦେଖାଯାଏ ।

(କ) ଜଗତ ସତ୍ୟ ନା ମିଥ୍ୟା ?

(ଖ) ଜୀବ ଓ ବ୍ରହ୍ମ ଏକ ନା ପୃଥକ୍ ପୃଥକ୍ ?

(ଗ) ବ୍ରହ୍ମ ସଗୁଣ ନା ନିର୍ଗୁଣ ?

(ଘ) ଜ୍ଞାନ, କର୍ମ, ଧ୍ୟାନ ଓ ଭକ୍ତି ଏହି ଚାରିଗୋଟି ଉପାୟ ମଧ୍ୟରୁ କେଉଁ ଉପାୟରେ ବ୍ରହ୍ମ ପ୍ରାପ୍ତି ହୁଏ ?

Digitized by srujanika@gmail.com

(କ) ଆଚାର୍ଯ୍ୟ ଶଙ୍କରଙ୍କ ମତରେ ବା ଅଦ୍ୱୈତ ମତରେ ଜଗତ୍ ସତ୍ୟ ନୁହେଁ, କାଳ୍ପନିକ, ମାୟାର ବିଜୃମ୍ଭଣ ମାତ୍ର । ରାମାନୁଜାଚାର୍ଯ୍ୟଙ୍କ ମତରେ ଜଗତ୍ ସତ୍ୟ, ଗୀତା ଅଲୋଚନାରୁ ଜଣାଯାଏ ଯେ, ଭଗବାନ୍ ଜଗତକୁ ଅନିତ୍ୟ ବା ପରିବର୍ତ୍ତନଶୀଳ କହିଥିଲେହେଁ ଜଗତ୍ ଯେ ଅସତ୍ୟ ଏହା କୌଣସିଠାରେ କହି ନାହାନ୍ତି ।

(ଖ) ଅଦ୍ୱୈତବାଦୀମାନେ କହନ୍ତି ଜୀବ ବ୍ରହ୍ମ ଏକ । ବିଶିଷ୍ଟାଦ୍ୱୈତବାଦୀମାନେ ଏହାର ଠିକ୍ ବିପରୀତ କଥା କହନ୍ତି ଅର୍ଥାତ୍ ଜୀବ ବ୍ରହ୍ମଙ୍କ ଠାରୁ ସମ୍ପୂର୍ଣ୍ଣ ପୃଥକ୍ ଏ ବିଷୟରେ ଗୀତାର ମତ ଅଦ୍ୱୈତ ମତର ଅନୁକୂଳ, ଭଗବାନ୍ ଗୀତାର ନାନା ପ୍ରସଙ୍ଗରେ ଜୀବ ଓ ବ୍ରହ୍ମ ଯେ ଏକ ଏହା ପ୍ରତିପାଦନ କରିଅଛନ୍ତି ।

(ଗ) ଶଙ୍କରଙ୍କ ମତରେ ବ୍ରହ୍ମ ନିର୍ଗୁଣ, ନିରୁପାଧି ଓ ସମସ୍ତ ବିଶେଷ ରହିତ । ବିଶିଷ୍ଟାଦ୍ୱୈତମତରେ ବ୍ରହ୍ମ ସଗୁଣ । ସେ ଅଜ୍ଞେୟ ଓ ଅଚିନ୍ତ୍ୟ ନୁହନ୍ତି । ଅଦ୍ୱୈତମତରେ ନିରୁପାଧିକ ନିର୍ଗୁଣବ୍ରହ୍ମ ଯେତେବେଳେ ମାୟା ଶକ୍ତିଦ୍ୱାରା ବିଜୃମ୍ଭିତ ହୁଅନ୍ତି ସେତେବେଳେ ସେ ସୋପାଧିକ ମହେଶ୍ୱର ବା ଈଶ୍ୱର ନାମରେ ଅଭିହିତ ହୁଅନ୍ତି । ଆଚାର୍ଯ୍ୟ ରାମାନୁଜ କହନ୍ତି—ବ୍ରହ୍ମ ସର୍ବଦା ମାୟା ଶବଳ । ଏହି ମାୟା ଅନାଦି ଭାବ ରୂପ ଅଜ୍ଞାନ ନୁହେଁ, ବିଚିତ୍ରାର୍ଥ ସୃଷ୍ଟିକର୍ତ୍ତ୍ରୀ ଗୁଣାତ୍ମିକା ପ୍ରକୃତି ଶ୍ରୁତି ବା ଉପନିଷଦ୍‌ରେ ବ୍ରହ୍ମଙ୍କ ସଗୁଣ ଓ ନିର୍ଗୁଣ ଏହି ଦୁଇ ଭାବରେ ବର୍ଣ୍ଣନା କରି ଯାଇଅଛି । ଗୀତାରେ ବ୍ରହ୍ମଙ୍କର ନିର୍ଗୁଣତ୍ୱ ଓ ସଗୁଣତ୍ୱ ଉଭୟ ଭାବରେ ବର୍ଣ୍ଣନା ଥିଲେହେଁ ଗୀତା ସଗୁଣ ବ୍ରହ୍ମବାଦର ପକ୍ଷପାତୀ । ଗୀତୋକ୍ତ ଧର୍ମର ପ୍ରବର୍ତ୍ତକ ଭଗବାନ୍ ଶ୍ରୀକୃଷ୍ଣ ସ୍ୱୟଂ ସଗୁଣ । ଆମ୍ଭେମାନେ ଗୀତାର ଦ୍ୱାଦଶ ଅଧ୍ୟାୟରେ ଦେଖୁଁ ସଗୁଣ ଉପାସନା ଓ ନିର୍ଗୁଣ ଉପାସନାର ପାର୍ଥକ୍ୟ ଜାଣିବା ପାଇଁ ଅର୍ଜ୍ଜୁନ ଯେଉଁ ପ୍ରଶ୍ନ କରିଅଛନ୍ତି ତାହାର ଉତ୍ତରରେ ଭଗବାନ୍ କହି ଅଛନ୍ତି—

Digitized by srujanika@gmail.com

"କ୍ଳେଶୋଽଧିକତରସ୍ତେଷାମବ୍ୟକ୍ତାସକ୍ତଚେତସାଂ ।
ଅବ୍ୟକ୍ତାହି ଗତିର୍ଦୁଃଖଂ ଦେହବଦ୍ଭିରବାପ୍ୟତେ ॥"
ଗୀତା—୧୨-୫

ଏହାର ସାର ମର୍ମ ଏହି ଯେ, ଅବ୍ୟକ୍ତ ବା ନିର୍ଗୁଣ ଉପାସକମାନେ ବହୁ ଦୁଃଖରେ ବ୍ରହ୍ମପଦ ଲାଭ କରନ୍ତି; କିନ୍ତୁ ସଗୁଣ ବ୍ୟକ୍ତ ଉପାସକମାନଙ୍କ ପକ୍ଷରେ ବ୍ରହ୍ମପ୍ରାପ୍ତି ସୁଲଭ ।

ଅଦ୍ୱୈତବାଦୀମାନେ କହନ୍ତି—"ସଗୁଣ ସାଧକମାନେ ଉତ୍କ୍ରାନ୍ତି ପରେ ଉତ୍ତର ମାର୍ଗରେ ଯାଇ ସୂର୍ଯ୍ୟମଣ୍ଡଳରେ ଉପସ୍ଥିତ ହୁଅନ୍ତି । ତତ୍ପରେ ବ୍ରହ୍ମଲୋକରେ ଉପସ୍ଥିତ ହୋଇ ସେଠାରେ ତତ୍ତ୍ୱଜ୍ଞାନ ଲାଭକରି ମହାପ୍ରଳୟରେ ବ୍ରହ୍ମାଙ୍କ ସଙ୍ଗେ ପରେ ବ୍ରହ୍ମରେ ଲୀନ ହୁଅନ୍ତି, ଏହାର ନାମ କ୍ରମମୁକ୍ତି ।" କିନ୍ତୁ ଯେଉଁମାନେ ନିର୍ଗୁଣ ବ୍ରହ୍ମର ଉପାସକ ସେମାନେ ଏ ଦେହ ତ୍ୟାଗପରେ ପରମ ଜ୍ୟୋତିଃ ଲାଭକରି ସ୍ୱକୀୟରୂପରେ ଅବସ୍ଥିତ ହୁଅନ୍ତି, ଏହାର ନାମ ବିଦେହ ମୁକ୍ତି ।

(ଘ) ଗୀତା ଆଲୋଚନାରୁ ଜଣାଯାଏ ମୋକ୍ଷଲାଭ ପାଇଁ ଅତି ପ୍ରାଚୀନ କାଳରୁ ଏ ଦେଶରେ ଚାରିଗୋଟି ମାର୍ଗ ନିର୍ଦ୍ଦିଷ୍ଟ ଅଛି, ଯଥା :—କର୍ମମାର୍ଗ, ଜ୍ଞାନମାର୍ଗ, ଧ୍ୟାନମାର୍ଗ ଓ ଭକ୍ତିମାର୍ଗ । ୧୩ଶ ଅଧ୍ୟାୟରେ ଭଗବାନ୍ କହିଅଛନ୍ତି—

ଧ୍ୟାନେନାତ୍ମନି ପଶ୍ୟନ୍ତି କେଚିଦାତ୍ମାନମାତ୍ମନା
ଅନ୍ୟେ ସାଂଖ୍ୟେନ ଯୋଗେନ କର୍ମଯୋଗେନ ଚାପରେ ।
ଅନ୍ୟେତ୍ୱେବ ମଜାନନ୍ତଃ ଶ୍ରୁତ୍ୱା ନ୍ୟେଭ୍ୟ ଉପାସତେ
ତେଽପି ଚାତିତରନ୍ତ୍ୟେବ ମୃତ୍ୟୁଂ ଶ୍ରୁତି ପରାୟଣାଃ ।
ଗୀ, ୧୩—୨୫, ୨୬

Digitized by srujanika@gmail.com

କର୍ମମାର୍ଗ କହିଲେ, ସାଧାରଣତଃ ବୈଦିକ ଯାଗ ଯଜ୍ଞ ବୁଝାଯାଏ । ଗୀତାରେ ଭଗବାନ୍ ମାର୍ଗ ସମର୍ଥନ କରି କହିଅଛନ୍ତି, ଯାଗ ଯଜ୍ଞ କରିବ, ମାତ୍ର ତାହା ସକାମ ଭାବରେ କରିବ ନାହିଁ । ନିଷ୍କାମ ଭାବରେ କର୍ମ କଲେ, ସାଧକ ଇହଲୋକରେ ଓ ପରଲୋକରେ ଉଭୟତ୍ର ଅମୃତତ୍ତ୍ୱ ଲାଭ କରି ପାରିବ । ସକାମ କର୍ମ କଲେ, ଯେଉଁ ସ୍ୱର୍ଗାଦି ସୁଖ ମିଳେ, ତାହା ଅସ୍ଥାୟୀ ।

ସାଂଖ୍ୟଯୋଗୌ ପୃଥକ୍ ବାଲାଃ ପ୍ରବଦନ୍ତି ନ ପଣ୍ଡିତାଃ
ଏକମପ୍ୟାସ୍ଥିତଃ ସମ୍ୟଗ୍ ଉଭୟୋର୍ବିନ୍ଦତେ ଫଳମ୍ ।

ଗୀ ୫—୪

ମାତ୍ର ଏ ଜ୍ଞାନ ପ୍ରକୃତି ପୁରୁଷର ବିବେକ ଜ୍ଞାନ ନୁହେଁ, ଏହା ତତ୍ତ୍ୱଜ୍ଞାନ ଅର୍ଥାତ୍ ପରମେଶ୍ୱରଙ୍କ ସ୍ୱରୂପ ଜ୍ଞାନ ।

ଧ୍ୟାନଯୋଗ ସମ୍ବନ୍ଧରେ ପାତଞ୍ଜଳ ଦର୍ଶନ ମତକୁ ସମର୍ଥନ କରି ଭଗବାନ୍ କହିଅଛନ୍ତି, ଯୋଗୀ ଆତ୍ମାକୁ ପରମାତ୍ମାରେ ମିଳନ କରି ପାରିଲେ, ସେ ମଧ୍ୟ ଅମୃତତ୍ତ୍ୱର ଅଧିକାରୀ ।

ଯୋଗୀନାମପି ସର୍ବେଷାଂ ମଦ୍‌ଗତେନାନ୍ତରାତ୍ମନା
ଶ୍ରଦ୍ଧାବାନ୍ ଭଜତେ ଯୋ ମାଂ ସ ମେ ଯୁକ୍ତତମୋମତଃ ।

ଗୀ ୬—୪୭

ଗୀତା ରଚନା ପୂର୍ବରୁ ଭକ୍ତିଯୋଗ ଦ୍ୱାରା ଅମୃତତ୍ତ୍ୱପ୍ରାପ୍ତି, ବୋଧ ହୁଏ ପ୍ରଚଳିତ ହୋଇ ନ ଥିଲା, ଏହା ଭାଗବତ ଧର୍ମ ବା ଭକ୍ତିବାଦ ନାମରେ ପରିଚିତ । ମହାଭାରତର ନାରାୟଣୀୟ ପର୍ବାଧ୍ୟାୟରେ ମଧ୍ୟ ଏହାର ବର୍ଣ୍ଣନା ଅଛି । ଅଳ୍ପବୁଦ୍ଧି ମନୁଷ୍ୟ ପକ୍ଷରେ ନିର୍ଗୁଣ ବ୍ରହ୍ମସ୍ୱରୂପର ଦୁର୍ବୋଧତା ଦେଖି ଭଗବାନ୍ ଶ୍ରଦ୍ଧା ଓ ବିଶ୍ୱାସ ସହକାରେ ନିରନ୍ତର ଓ ନିର୍ହେତୁକ ପ୍ରେମରେ ପରମେଶ୍ୱରଙ୍କ ଚିନ୍ତା କରିବାକୁ ଗୀତାର ନାନା ପ୍ରସଙ୍ଗରେ

Digitized by srujanika@gmail.com

ଉପଦେଶ ଦେଇ ଅଛନ୍ତି । ଏହାହିଁ ଭକ୍ତିମାର୍ଗ । ପରବର୍ତ୍ତୀ କାଳରେ ଭକ୍ତି ସମ୍ବନ୍ଧରେ ନାନାଗ୍ରନ୍ଥ ପ୍ରଣୀତ ହୋଇଥିଲେହେଁ ଶ୍ରୀମଦ୍ ଭଗବତ୍ ଗୀତା ଯେ ଏହାର ଆଦମ ଉତ୍ସ ଏଥିରେ ସନ୍ଦେହ ହୁଏ ନାହିଁ । ଗୀତା ଶାସ୍ତ୍ରର ଶେଷ ପର୍ଯ୍ୟାୟରେ ଭଗବାନ ଅର୍ଜ୍ଜୁନଙ୍କୁ କହୁ ଅଛନ୍ତି—

ସର୍ବ ଗୁହ୍ୟତମଂ ଭୂୟଃ ଶୃଣୁ ମେ ପରମଂ ବଚଃ
ଇଷ୍ଟୋଽସି ମେ ଦୃଢ଼ମିତି ତତୋ ବକ୍ଷ୍ୟାମିତେ ହିତମ୍ ।
ମନ୍ମନା ଭବ ମଦ୍ଭକ୍ତୋ ମଦ୍‌ଯାଜୀ ମାଂ ନମସ୍କୁରୁ
ମାମେବୈଷ୍ୟସି ସତ୍ୟଂ ତେ ପ୍ରତିଜାନେ ପ୍ରିୟୋଽସି ମେ ।
ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ
ଅହଂ ତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ ।

ଗୀ ୧୮।୬୪।୬୫।୬୬

ଏହାହିଁ ଗୀତାର ଉପସଂହାର ।

---

## ୧—ନ୍ୟାୟ ଦର୍ଶନ

ବିକ୍ରମାଦିତ୍ୟଙ୍କ ଜନ୍ମ ପୂର୍ବରୁ ନ୍ୟାୟଦର୍ଶନର ଚର୍ଚ୍ଚା ନିରବଚ୍ଛିନ୍ନଭାବେ ଏ ପର୍ଯ୍ୟନ୍ତ ଚାଲି ଆସୁଅଛି । ଯେଉଁ ମନୀଷୀମାନେ ଏ ଦର୍ଶନ ପ୍ରକାଶ କରିଥିଲେ, ସେମାନଙ୍କର ତାର୍କିକ ବୁଦ୍ଧି ଅତି ପ୍ରଖର ଥିଲା ।

ଏହି ଦର୍ଶନର ଧାରା ଦୁଇଗୋଟି । ପ୍ରଥମ ଧାରାର ପ୍ରକାଶକ ସୂତ୍ରକାର ଗୌତମ ।

"ପ୍ରମାଣ, ପ୍ରମେୟ, ସଂଶୟ, ପ୍ରୟୋଜନ, ଦୃଷ୍ଟାନ୍ତ, ସିଦ୍ଧାନ୍ତ, ଅବୟବ, ତର୍କ, ନିର୍ଣ୍ଣୟ, ବାଦ, ଜଳ୍ପ, ବିତଣ୍ଡା, ହେତ୍ୱାଭାସ, ଛଳ, ଜାତି ନିଗ୍ରହସ୍ଥାନାନାଂ ତତ୍ତ୍ୱଜ୍ଞାନାତ୍ ନିଃଶ୍ରେୟସାଧିଗମଃ ।"

ଏଥିରେ ପ୍ରମାଣ, ପ୍ରମେୟ, ସଂଶୟ, ପ୍ରୟୋଜନ, ଦୃଷ୍ଟାନ୍ତ, ସିଦ୍ଧାନ୍ତ, ଅବୟବ, ତର୍କ, ନିର୍ଣ୍ଣୟ, ବାଦ, ଜଳ୍ପ, ବିତଣ୍ଡା, ହେତ୍ୱାଭାସ, ଛଳ, ଜାତି ଏବଂ ନିଗ୍ରହସ୍ଥାନ ଏହି ଷୋଳ ପଦାର୍ଥର ଆଲୋଚନା କରାଯାଇ ଅଛି; ମଧ୍ୟ ଏହି ଷୋଳ ପଦାର୍ଥର ଯଥାର୍ଥ ଜ୍ଞାନଦ୍ୱାରା ମାନବ ନିଃଶ୍ରେୟସର ଅଧିକାରୀ ହୁଏ ବୋଲି କୁହାଯାଇ ଅଛି । ପ୍ରଥମ ଧାରାର ଏହି ଚର୍ଚ୍ଚା ପଦାର୍ଥ ବିଜ୍ଞାନାତ୍ମକ ନାମରେ ଅଭିହିତ ।

ଦ୍ୱିତୀୟ ଧାରାରେ ପ୍ରତ୍ୟକ୍ଷ, ଅନୁମାନ, ଉପମାନ, ଏବଂ ଶବ୍ଦ-ପ୍ରମାଣର ବିଶେଷ ସୂକ୍ଷ୍ମଚର୍ଚ୍ଚା କରାଯାଇ ଅଛି, ତେଣୁ ଦ୍ୱିତୀୟଧାରାର ଏହି ଚର୍ଚ୍ଚା ପ୍ରମାଣ ମୀମାଂସାତ୍ମକ ନାମରେ ଅଭିହିତ ।

ଏହି ଦର୍ଶନର ପ୍ରଥମ ଧାରାକୁ ପ୍ରାଚୀନ ନ୍ୟାୟ ଓ ଦ୍ୱିତୀୟ ଧାରାକୁ ନବ୍ୟନ୍ୟାୟ ବୋଲି କହନ୍ତି । ସୁଖମଧ୍ୟ ଦୁଃଖ ଜଡ଼ିତ, ସୁତରାଂ ସୁଖକୁ ଦୁଃଖ ବୋଲି ଧରାଯାଏ । ନ୍ୟାୟ ଦର୍ଶନର ପ୍ରଧାନ



Digitized by srujanika@gmail.com

ଲକ୍ଷ୍ୟ ଅନ୍ତର୍ଜଗତ୍ ଓ ଜ୍ଞାନର ମୀମାଂସା ନ୍ୟାୟଦର୍ଶନ ମତରେ ସଂସାର ଦୁଃଖମୟ ।

"ଋତେ ଜ୍ଞାନାନ୍ନମୁକ୍ତିଃ"

ବିନା ଜ୍ଞାନରେ ମୁକ୍ତି ଅସମ୍ଭବ, ଏହା ସର୍ବସମ୍ମାନ୍ୟ ସିଦ୍ଧାନ୍ତ ଅଟେ । ଶୁଦ୍ଧଜ୍ଞାନ ପ୍ରାପ୍ତିର ସାଧନାମାର୍ଗ ଉପରେ ନ୍ୟାୟଦର୍ଶନର ଏହି ସାଧନାମାର୍ଗର ଯଥାର୍ଥ ମୀମାଂସା ଅନ୍ୟାନ୍ୟ ଦାର୍ଶନିକ ଜଗତକୁ ମହତ୍ ମାର୍ଗ ଦେଖାଇ ଅଛି ।

ନ୍ୟାୟ ଶାସ୍ତ୍ର ପ୍ରମାଣ ଏବଂ ହେତ୍ୱାଭାସର ବଡ଼ ପ୍ରାମାଣିକ ବିବରଣ ପ୍ରସ୍ତୁତ କରିଅଛି । ଏହାକୁ ବ୍ୟବହାର କରି ଅନ୍ୟାନ୍ୟ ଦର୍ଶନ ତତ୍ତ୍ୱସମୂହ ଆଲୋଚନା କରାଯାଇ ପାରେ ।

ଏ ବିଶ୍ୱର ମୂଳରେ ପରମାଣୁ, ଆତ୍ମା, ଈଶ୍ୱର, ନିତ୍ୟ ପଦାର୍ଥମାନ ବିଦ୍ୟମାନ ଅଛନ୍ତି । ସେହି ହେତୁରୁ ଏହି ଜଗତର ସତ୍ତା ଅଛି । ଆମ୍ଭମାନଙ୍କର ଇନ୍ଦ୍ରିୟମାନଙ୍କ ଦ୍ୱାରା ଯେଉଁ ଜଗତ୍ ଦୃଷ୍ଟି ଗୋଚର ହୁଏ, ତାହା ବସ୍ତୁତଃ ସତ୍ ଅଟେ । ପରମାଣୁ ଏହାର ସମବାୟ କାରଣ, ଈଶ୍ୱର ନିମିତ୍ତ କାରଣ ଅଟନ୍ତି ।

ଈଶ୍ୱର ଅନୁମାନ ଦ୍ୱାରା ଗମ୍ୟମାନ ଅଟନ୍ତି, ତାହାଙ୍କର ଇଚ୍ଛା ହେଲେ ଗୋଟିଏ ପରମାଣୁ ଅନ୍ୟ ପରମାଣୁ ସହିତ ମିଳିତ ହୋଇ ଦ୍ୱ୍ୟଣୁକରେ ପରିଣତ ହୁଏ, ଏପରି ଆକାଶାଦି ଅଣୁକ୍ରମରୁ ପଞ୍ଚତତ୍ତ୍ୱର ଉତ୍ପତ୍ତି ।

ନ୍ୟାୟ ମତରେ ମୁକ୍ତିରେ ସୁଖ ଓ ଦୁଃଖ ଉଭୟ ମନୋବୃତ୍ତିର ବିନାଶ ହେଲେ ମନ ସାମ୍ୟାବସ୍ଥା ପ୍ରାପ୍ତ ହୁଏ । ସୁଖ ସହିତ ରାଗର ସମ୍ବନ୍ଧ ରହିଅଛି । ଏହି ରାଗ ବନ୍ଧନର କାରଣ ଅଟେ, ଅତଏବ ମୋକ୍ଷରେ ଦୁଃଖ ନାହିଁ କି ସୁଖ ନାହିଁ । ଜୀବନ୍ ମୁକ୍ତିକୁ ଅପର ନିଃଶ୍ରେୟସ ଏବଂ ବିଦେହ ମୁକ୍ତିକୁ ନିଃଶ୍ରେୟସ କୁହାଯାଏ ।

Digitized by srujanika@gmail.com

ମିଥ୍ୟା ଜ୍ଞାନହେତୁ ଦୋଷ ପ୍ରବୃତ୍ତି ଜନ୍ମ ଏବଂ ଦୁଃଖର ଉତ୍ପତ୍ତି ହୋଇଥାଏ । ଏହି ମିଥ୍ୟା ଜ୍ଞାନର ନାଶଦ୍ୱାରା ତତ୍ତ୍ୱଜ୍ଞାନ ଉତ୍ପତ୍ତି ହୁଏ ।

ଆତ୍ମାର ସାକ୍ଷାତ୍‌କାର ଅତି ଆବଶ୍ୟକ ଏବଂ ସେଥି ନିମିତ୍ତ ଯମ ନିୟମାଦି ଯୋଗ ପ୍ରସିଦ୍ଧ ନିୟମମାନ ଅବଲମ୍ବନ କରିବା ଉଚିତ । ଧ୍ୟାନ ଧାରଣାଦି ଉପାୟଦ୍ୱାରା ଆତ୍ମାର ସାକ୍ଷାତ୍‌କାର ଏବଂ ତାହା ଉପରେ ସୁଖ ଦୁଃଖ ଇତ୍ୟାଦିରୁ ବିରହିତ ହୋଇ ସାମ୍ୟାବସ୍ଥା ପ୍ରାପ୍ତ ହେବ ଏହି ଚେଷ୍ଟା ନ୍ୟାୟର ଚରମ ଲକ୍ଷ୍ୟ ।

ପ୍ରଥମତଃ ଏହାର ଚର୍ଚ୍ଚା ବିକ୍ରମାଙ୍କ ଦ୍ୱାଦଶ ଶତାବ୍ଦୀରେ ମିଥିଳା ନିବାସୀ ଗଙ୍ଗେଶ ଉପାଧ୍ୟାୟଙ୍କ କୃତ ଯୁଗ ପ୍ରବର୍ତ୍ତକ ଗ୍ରନ୍ଥ ତତ୍ତ୍ୱ ଚିନ୍ତାମଣିରେ ଆଲୋଚିତ ହୋଇଥିଲା । ଏହାଙ୍କର ତତ୍ତ୍ୱ ଚିନ୍ତାମଣି ନାମକ ଗ୍ରନ୍ଥ ନ୍ୟାୟତତ୍ତ୍ୱର ପ୍ରକୃତ ଚିନ୍ତାମଣି ଅଟେ । ଇତ ପୂର୍ବରୁ ନ୍ୟାୟସୂତ୍ର ଆଲୋଚନା ବିକ୍ରମ ପୂର୍ବରୁ ଚତୁର୍ଥ ଶତକରେ ହୋଇଥିଲା । ବାତ୍ସ୍ୟାୟନ ବିକ୍ରମୀୟ ଦ୍ୱିତୀୟ ଶତାବ୍ଦୀରେ ନ୍ୟାୟସୂତ୍ରର ଭାଷ୍ୟକର ନ୍ୟାୟର କଠିନ ଅର୍ଥମାନ ପ୍ରକାଶ କରିଥିଲେ । ନବମ ଶତାବ୍ଦୀରେ ମିଥିଳା ନିବାସୀ ବାଚସ୍ପତି ମିଶ୍ର ତାତ୍ପର୍ଯ୍ୟ ଟୀକା କରିଥିଲେ ଓ ଦଶମ ଶତାବ୍ଦୀରେ ଉଦୟନାଚାର୍ଯ୍ୟ ତାତ୍ପର୍ଯ୍ୟ ପରିଶୁଦ୍ଧି ଟୀକା ପ୍ରଣୟନ କରି ନ୍ୟାୟ ଶାସ୍ତ୍ରକୁ ବିଭୂଷିତ କରିଥିଲେ ।

ଜୟନ୍ତଭଟ୍ଟ ନ୍ୟାୟମଞ୍ଜରୀ ନାମକ ପ୍ରମେୟ ବହୁଳା ବୃତ୍ତି ଲେଖି ତହିଁରେ ଚାର୍ବାକ ବୌଦ୍ଧ ମୀମାଂସା ଓ ବେଦାନ୍ତ ମତ ଖଣ୍ଡନ କରିଥିଲେ । ଏହାପରେ ନ୍ୟାୟ ଶାସ୍ତ୍ରର ଅସୀମ ଟୀକା ଦେଖାଯାଏ । ମହର୍ଷି ଗୌତମଙ୍କ ପ୍ରଣୀତ 'ନ୍ୟାୟସୂତ୍ର' ନ୍ୟାୟ ଦର୍ଶନର ମୂଳଭିତ୍ତି ।

Digitized by srujanika@gmail.com

## ୨—ବୈଶେଷିକ ଦର୍ଶନ

ନ୍ୟାୟ ଦର୍ଶନ ପର ବୈଶେଷିକ ଦର୍ଶନ ଅନେକ ସିଦ୍ଧାନ୍ତରେ ସମତା ଲାଭ କରିଥିବା ହେତୁ ସମାନ ତନ୍ତ୍ର ବୋଲି ବିବେଚିତ ଅଟେ । ଏଥିରେ ସତ୍ୟର ଯେଉଁ ମୀମାଂସା ନିର୍ଦ୍ଧାରିତ ହୋଇ ଅଛି, ତାହା ଭୌତିକ ବିଜ୍ଞାନର ନିର୍ଦ୍ଧାରଣ ଗୁଡ଼ିକ ସମକ୍ଷରେ ରଖି କରିଯାଇ ଅଛି । ନ୍ୟାୟ ଦର୍ଶନର ପ୍ରଧାନ ଲକ୍ଷ୍ୟ, ଅନ୍ତର୍ଜଗତ୍ ଓ ଜ୍ଞାନର ମୀମାଂସା । ନ୍ୟାୟଦର୍ଶନ ମତରେ 'ସଂସାର ଦୁଃଖମୟ, ସୁଖ ମଧ୍ୟ ଦୁଃଖ ଜଡ଼ିତ, ସୁତାରଂ ସୁଖକୁ ଦୁଃଖ ବୋଲିଯାଇ ପାରେ । ବୈଶେଷିକ ଦର୍ଶନର ପ୍ରଧାନ ଲକ୍ଷ୍ୟ ବାହ୍ୟ ଜଗତର ବସ୍ତୁତ ଚର୍ଚ୍ଚା । ବୈଶେଷିକ ମତରେ ଦ୍ରବ୍ୟ, ଗୁଣ, କର୍ମ, ସାମାନ୍ୟ, ବିଶେଷ, ସମବାୟ ଏବଂ ଅଭାବ ଏହି ସାତ ପଦାର୍ଥ ଅଟେ ।

ଦ୍ରବ୍ୟଂ ଗୁଣାସ୍ତଥା କର୍ମ ସାମାନ୍ୟଂ ସବିଶେଷକମ୍ ।
ସମବାୟସ୍ତଥାଽଭାବଃ ପଦାର୍ଥାଃ ସପ୍ତ କୀର୍ତ୍ତିତାଃ ।

ଆତ୍ମାର ଯଥାର୍ଥ ଜ୍ଞାନ, ଇତର ପଦାର୍ଥ ମାନଙ୍କର ଜ୍ଞାନ ଉତ୍ପନ୍ନ ପରେ ସମ୍ଭବ ଅଟେ । ତତ୍ତ୍ୱଜ୍ଞାନର ଉତ୍ପତ୍ତି, ଆତ୍ମା ଏବଂ ଆତ୍ମେତର ପଦାର୍ଥ ମାନଙ୍କର ପରସ୍ପର ସାଧର୍ମ୍ୟ ଏବଂ ବୈଧର୍ମ୍ୟ ଉଭୟର ଜ୍ଞାନଲାଭ ପରେ ସମ୍ଭବପର ଅଟେ ।

ଦ୍ରବ୍ୟ ନଅଗୋଟି—କ୍ଷିତି, ଅପ୍, ତେଜ, ମରୁତ୍, (ବାୟୁ), ବ୍ୟୋମ (ଆକାଶ), କାଳ, ଦିକ୍, ଆତ୍ମା ଓ ମନ । ଏହି ନଅଗୋଟି ଦ୍ରବ୍ୟର ଆଶ୍ରିତ ଧର୍ମ ଅଟେ ଗୁଣ ଏବଂ କର୍ମ । ଦ୍ରବ୍ୟ, ଗୁଣ ଓ କର୍ମ ଏମାନଙ୍କର ସମାନ ଧର୍ମର ମିଶ୍ରଣ, ସାମାନ୍ୟ । ପଦାର୍ଥମାନଙ୍କର ପାରସ୍ପରିକ ବୈଧର୍ମ୍ୟ ଜ୍ଞାନ, ବିଶେଷ । ସାମାନ୍ୟ ଏବଂ ବିଶେଷ ଏହି ନିତ୍ୟ ପଦାର୍ଥମାନଙ୍କ ସହିତ ନିତ୍ୟ ସମ୍ପର୍କ ଦେଖାଇବା

Digitized by srujanika@gmail.com

ଥାଇଁ ଯେ ସମ୍ବନ୍ଧ, ତାହା ସମବାୟ । ଏହି ଷଡ଼୍‌ଭାବ ପଦାର୍ଥମାନଙ୍କ ପର ଏମାନଙ୍କର ଅଭାବ ମଧ୍ୟ ସପ୍ତମ ପଦାର୍ଥ, ଯାହାକି ଅଭାବ ନାମରେ ଖ୍ୟାତ ।

ଗୁଣ ଚବିଶ ପ୍ରକାର—ରୂପ, ରସ, ଗନ୍ଧ, ଶବ୍ଦ, ସ୍ପର୍ଶ, ସଂଖ୍ୟା, ପରିମାଣ, ପୃଥକତ୍ୱ, ସଂଯୋଗ, ବିଯୋଗ, ପରତ୍ୱ, ଅପରତ୍ୱ, ବୁଦ୍ଧି, ସୁଖ, ଦୁଃଖ, ଇଚ୍ଛା, ଦ୍ୱେଷ, ଯତ୍ନ, ଗୁରୁତ୍ୱ, ଦ୍ରବତ୍ୱ, ସ୍ନେହ, ସଂସ୍କାର, ଅଦୃଷ୍ଟ ଓ ଶବ୍ଦ ।

ବୈଶେଷିକ ଦର୍ଶନ ପ୍ରଧାନତଃ ପରମାଣୁବାଦ ପ୍ରତିପାଦନ କରେ । ଏହି ଦର୍ଶନରେ 'ପରମାଣୁହିଁ ନିତ୍ୟବସ୍ତୁ' । ଏହିଠାରେ ସାଂଖ୍ୟ ଦର୍ଶନ ସହିତ ନ୍ୟାୟଦର୍ଶନର ମତଭେଦ । କାରଣ ସାଂଖ୍ୟ ଦର୍ଶନ 'ପରମାଣୁକୁ ଅନିତ୍ୟ ପ୍ରତିପାଦନ କରେ ।

ବୈଶେଷିକ ଦର୍ଶନ ଈଶ୍ୱରଙ୍କ ଅସ୍ତିତ୍ୱ ସ୍ୱୀକାର କରେ । କେହି କେହି ବୈଶେଷିକ ଈଶ୍ୱରଙ୍କ ଠାରେ ଜ୍ଞାନ, ଇଚ୍ଛା, ଯତ୍ନ ଓ ସଂଖ୍ୟା ପ୍ରଭୃତି ଗୁଣମାନ ଅଛି ବୋଲି କହନ୍ତି ।

ସର୍ବ ଭୁବନାଧିପତି ମହେଶ୍ୱର ଯେତେବେଳେ ସଂହାର ଇଚ୍ଛାରେ ପ୍ରଣୋଦିତ ହୁଅନ୍ତି, ସେତେବେଳେ ପରମାଣୁ ସମୂହର ଘାତ ପ୍ରତିଘାତ ଜନିତ ଶରୀର, ଇନ୍ଦ୍ରିୟ ଓ ବିଷୟ କ୍ରମେ କ୍ରମେ ବିଶ୍ଳିଷ୍ଟ ଓ ବିନଷ୍ଟ ହୋଇଯାଏ । ସେତେବେଳେ କେବଳ ଚତୁର୍ବିଧ ପରମାଣୁ ଅବଶିଷ୍ଟ ରହେ । ପ୍ରଳୟ କାଳର ଅବସାନରେ ପ୍ରାଣୀମାନଙ୍କର ଭୋଗ ସମ୍ପାଦନ ନିମିତ୍ତ ମହେଶ୍ୱରଙ୍କର ସୃଷ୍ଟି ଇଚ୍ଛା ହୁଏ । ସେତେବେଳେ ଅଦୃଷ୍ଟର ପ୍ରେରଣାରେ ପ୍ରଥମତଃ ବାୟୁ ପରମାଣୁରେ ସମ୍ବନ୍ଧ ଉତ୍ପାଦନ କରେ । କ୍ରମେ ବାୟୁ ଓ ପରମାଣୁ ସମୂହର ପରସ୍ପର ସଂଯୋଗରେ ମହାନ୍ ବାୟୁ ଉତ୍ପନ୍ନ ହୁଏ ଏବଂ ତାହା ଆକାଶରେ ପ୍ରବାହିତ ହୁଏ । ତୈଜସ

Digitized by srujanika@gmail.com

ପରମାଣୁରୁ ତେଜ, ଜଳୀୟ ପରମାଣୁରୁ ଜଳ, ପାର୍ଥିବ ପରମାଣୁରୁ ପୃଥିବୀ ଉତ୍ପନ୍ନ ହୁଏ । ଏହିପରି ଚାରି ପ୍ରକାର ମହାଭୂତ ଉତ୍ପନ୍ନ ହୋଇ ମହେଶ୍ୱରଙ୍କ ଇଚ୍ଛାନୁସାରେ ବ୍ରହ୍ମାଣ୍ଡ ଜାତ ହୁଏ । ତହିଁରେ ବ୍ରହ୍ମାଙ୍କର ଉତ୍ପତ୍ତି; ବ୍ରହ୍ମା ସୃଷ୍ଟି କାର୍ଯ୍ୟ ସମ୍ପାଦନ କରନ୍ତି । ବୈଶେଷିକଦର୍ଶନବତ୍ ପ୍ରଶସ୍ତ ପାଦାଚାର୍ଯ୍ୟ ଉଲ୍ଲିଖିତ ରୂପେ ସୃଷ୍ଟି ତତ୍ତ୍ୱର ଆଲୋଚନା କରିଅଛନ୍ତି ।

ବୈଶେଷିକ ଦର୍ଶନ ମତରେ ସଂସାର ଦୁଃଖମୟ । ସେହି ଦୁଃଖର ଐକାନ୍ତିକ ବା ଅତ୍ୟନ୍ତିକ ନିବୃତ୍ତିକୁ ନିଃଶ୍ରେୟସ ବୋଲିଯାଏ । ନିଃଶ୍ରେୟସ ଲାଭର ଉପାୟ ତତ୍ତ୍ୱଜ୍ଞାନ ଲାଭ । 'ନିଃଶ୍ରେୟସ' ଶବ୍ଦର ଅର୍ଥ ଅତ୍ୟନ୍ତ ଭାବରେ ଦୁଃଖ ନିବୃତ୍ତି, ତତ୍ତ୍ୱଜ୍ଞାନ ଲାଭଦ୍ୱାରା ଯଥାର୍ଥରେ ନିଃଶ୍ରେୟସ ଲାଭ ହୁଏ । ବୈଶେଷିକ ଦାର୍ଶନିକଙ୍କ ମତରେ ଦ୍ରବ୍ୟ, ଗୁଣ, କର୍ମ, ସାମାନ୍ୟ, ବିଶେଷ ଓ ସମବାୟ ଏହି ଛଅଗୋଟି ପଦାର୍ଥର ସାଧର୍ମ୍ୟ ଓ ବୈଧର୍ମ୍ୟ ଜ୍ଞାନ ଜନିତ ତତ୍ତ୍ୱଜ୍ଞାନ ଲାଭଦ୍ୱାରା ନିଃଶ୍ରେୟସ ଲାଭହୁଏ ।

ଏହି ବୈଶେଷିକ ଦର୍ଶନ ନିଷ୍କାମ କର୍ମ ସମ୍ପାଦନର ପକ୍ଷପାତୀ । ନିଷ୍କାମ କର୍ମ ଅନୁଷ୍ଠାନରେ ତତ୍ତ୍ୱଜ୍ଞାନ ଲାଭ । ତତ୍ତ୍ୱଜ୍ଞାନରୁ ମୋକ୍ଷଲାଭ, ମୋକ୍ଷଲାଭରୁ ପରମାତ୍ମାଙ୍କ ଦର୍ଶନ ।

ବୈଶେଷିକ ଦର୍ଶନ ଅତି ପ୍ରାଚୀନ ଅର୍ଥାତ୍ ଗୌତମ ସୂତ୍ର ଠାରୁ କାଣାଦ ସୂତ୍ର ପ୍ରାଚୀନତର, ବୈଶେଷିକ ଦର୍ଶନରେ ବୌଦ୍ଧମାନଙ୍କର ବିଶେଷ ବିଶ୍ୱାସ ଥିଲା । ପ୍ରାଚୀନ ବୈଶେଷିକମାନେ ପ୍ରତ୍ୟକ୍ଷ ଏବଂ ଅନୁମାନ ଉଭୟକୁ ଗ୍ରହଣ କରୁଥିଲେ । ଏହି କାରଣରୁ ଏମାନଙ୍କୁ ଅର୍ଦ୍ଧ ବୌଦ୍ଧ (ଅର୍ଦ୍ଧ ବୈନାଶିକ) କୁହାଯାଏ । ଏହି ଦର୍ଶନର ସାହିତ୍ୟ ସମ୍ପତ୍ତି କମ୍ ନୁହେଁ । କାଣାଦ ସୂତ୍ର ବିକ୍ରମଙ୍କଠାରୁ ପ୍ରାଚୀନତର । ପ୍ରାୟ ବିକ୍ରମଙ୍କ ତିନିଶତ ବର୍ଷ ପୂର୍ବରୁ

Digitized by srujanika@gmail.com

ଏହାର ରଚନା ହୋଇଥିଲା । କିନ୍ତୁ ଏହାର ବିକାଶ ବିକ୍ରମଙ୍କ ପରେ ସମ୍ପନ୍ନ ହେଲା । ମହର୍ଷି କଣାଦଙ୍କ ପ୍ରଣୀତ 'ବୈଶେଷିକ ସୂତ୍ର' ବୈଶେଷିକ ଦର୍ଶନର ପ୍ରଥମ ଗ୍ରନ୍ଥ । ପରେ ଉଦୟନାଚାର୍ଯ୍ୟ 'କିରଣାବଳୀ' ନାମକ ଟୀକା, ଶ୍ରୀଧରାଚାର୍ଯ୍ୟ ନ୍ୟାୟକନ୍ଦଳୀ ଟୀକା, ଶ୍ରୀଶଙ୍କର ମିଶ୍ର 'ସୂତ୍ରୋପସ୍କାର' ଟୀକା ରଚନା କରି (୯୧୩ ଶତକ ୯୯୧ ଇଂ) ଥିଲେ । ଏଗୁଡ଼ିକ ପ୍ରାମାଣିକ ଗ୍ରନ୍ଥ । ଏହାପରେ ଅନେକ ଗ୍ରନ୍ଥ ବୈଶେଷିକ ଦର୍ଶନ ଉପରେ ଲେଖା ହୋଇଅଛି । ପରବର୍ତ୍ତୀରେ (୧୭ ଶ०) ବିଶ୍ୱନାଥ ନ୍ୟାୟପଞ୍ଚାନନ ମୁକ୍ତାବଳୀ ବିଭୂଷିତ ଭାଷା ପରିଚ୍ଛେଦ ନାମକ ଗ୍ରନ୍ଥ ଏବଂ ଅନ୍ନଭଟ୍ଟଙ୍କ ତର୍କ ସଂଗ୍ରହ ରଚିତ ହୋଇ ଅତ୍ୟନ୍ତ ଲୋକପ୍ରିୟ ହୋଇଥିଲା । ଆରମ୍ଭରେ ନ୍ୟାୟ ଓ ବୈଶେଷିକ ସ୍ୱତନ୍ତ୍ର ଦର୍ଶନ ଥିଲା । ଦଶମ ଶତକ ପରେ ଦୁଇଟି ଦର୍ଶନର ସିଦ୍ଧାନ୍ତ ବିସ୍ତୃତ କରି ଏକତ୍ର ମିଶାଇ ଦିଆଯାଇଥିଲା ।

## ୩—ସାଂଖ୍ୟ ଦର୍ଶନ

ନ୍ୟାୟ ଓ ବୈଶେଷିକ ଦର୍ଶନ ଅପେକ୍ଷା ସାଂଖ୍ୟଦର୍ଶନ ପ୍ରାଚୀନତମ ଅଟେ । କଠ, ଛାନ୍ଦୋଗ୍ୟ, ଶ୍ୱେତାଶ୍ୱତର ତଥା ମୈତ୍ରୀ ଉପନିଷଦରେ ସାଂଖ୍ୟର ସିଦ୍ଧାନ୍ତ ପରିଲକ୍ଷିତ ହୁଏ । ଏହି ଦର୍ଶନ ଦ୍ୱୈତ ମତର ପ୍ରତିପାଦକ । ଏହି ଦର୍ଶନରେ ପ୍ରକୃତି ଓ ପୁରୁଷ ଦୁଇଟି ମୂଳତତ୍ତ୍ୱ । ଯେଉଁ ଦୁଇଟିଙ୍କ ପରସ୍ପର ସମ୍ବନ୍ଧରୁ ଜଗତର ଆବିର୍ଭାବ ହୋଇଅଛି । ପ୍ରକୃତି ଜଡ଼ ଓ ଏକ, କିନ୍ତୁ ଏହାର ବିରୁଦ୍ଧ ପୁରୁଷ ଚେତନ ଏବଂ ଅନେକ । ସାଂଖ୍ୟ ସତ୍‌କାର୍ଯ୍ୟବାଦର ସମର୍ଥକ । ଏହି ଦର୍ଶନରେ କାର୍ଯ୍ୟ କାରଣ ଦ୍ୱାରା ଅବ୍ୟକ୍ତ ରୂପରୁ ବ୍ୟକ୍ତ ରୂପ ପ୍ରକାଶ ପାଏ ।

Digitized by srujanika@gmail.com

ସତ୍ତ୍ୱ, ରଜଃ, ତମଃ ଏହି ତିନିଗୁଣର ସାମ୍ୟାବସ୍ଥା ପ୍ରକୃତି । ଏହି ତିନିଗୁଣରେ ଯେବେ ବୈଷମ୍ୟ ଉତ୍ପନ୍ନ ହୁଏ ତେବେ ସୃଷ୍ଟିର ଉଦୟ ହୁଏ । ପ୍ରକୃତି ପୁରୁଷର ପରସ୍ପର ଯୋଗରୁ ବୁଦ୍ଧି । ବୁଦ୍ଧିରୁ ଅହଙ୍କାର । ସତ୍ତ୍ୱ ପ୍ରଧାନ ଅହଙ୍କାରରୁ ଏକାଦଶ ଇନ୍ଦ୍ରିୟ । ତାମସ ପ୍ରଧାନ ଅହଙ୍କାରରୁ ପଞ୍ଚତନ୍ମାତ୍ର । ପଞ୍ଚତନ୍ମାତ୍ରରୁ ସ୍ଥୂଳ ପଞ୍ଚ ମହାଭୂତ ଉତ୍ପନ୍ନ ହୁଏ । ତାପରେ ପୁରୁଷ । ସାଂଖ୍ୟ ଦର୍ଶନରେ ଏହା ପଞ୍ଚବିଂଶତି ତତ୍ତ୍ୱବୋଲି କଥିତ । ଅର୍ଥାତ୍ ଅଷ୍ଟ ପ୍ରକୃତି ଷୋଡ଼ଶ ବିକାର ଓ ପୁରୁଷ । ପୁରୁଷ ପ୍ରକୃତି ବିକୃତିରୁ ଅତୀତ ।

"ସତ୍ତ୍ୱ ରଜଃ ତମସାଂ ସାମ୍ୟାବସ୍ଥା ପ୍ରକୃତିଃ ।" ପ୍ରକୃତେଃ ମହାନ୍ ମହତୋଽହଂକାରଃ, ଅହଙ୍କାରାତ୍ ପଞ୍ଚତନ୍ମାତ୍ରାଣ୍ୟୁଭୟମିନ୍ଦ୍ରିୟଂ, ତନ୍ମାତ୍ରେଭ୍ୟଃ ସ୍ଥୂଳଭୂତାନି ପୁରୁଷ ଇତି ପଞ୍ଚବିଂଶତି ସର୍ଗଃ ।" ଯେଉଁ ଉପାଦାନ ଦ୍ୱାରା ଜଗତ୍ ସୃଷ୍ଟ ହୋଇଅଛି, ତାହା ପ୍ରକୃତି, ପ୍ରକୃତି ଅବ୍ୟୟ, ପ୍ରକୃତି ପଞ୍ଚଇନ୍ଦ୍ରିୟର ଅଗ୍ରାହ୍ୟ । ପ୍ରକୃତି ଆଦି, ମଧ୍ୟ, ହୀନ ଏବଂ ମହତ୍ ତତ୍ତ୍ୱର ଊର୍ଦ୍ଧ୍ୱରେ ଧ୍ରୁବ ଭାବରେ ଅବସ୍ଥିତ । ପ୍ରଳୟର ଅବସାନରେ ଅବ୍ୟକ୍ତ ପ୍ରକୃତିରୁ ବ୍ୟକ୍ତ ଜଗତ୍ ଆବିର୍ଭୂତ ହୁଏ । ସୃଷ୍ଟିର ଅବସାନରେ ବ୍ୟକ୍ତ ଜଗତ୍ ଅବ୍ୟକ୍ତ ପ୍ରକୃତିରେ ଲୀନ ହୁଏ । ପ୍ରକୃତି ସ୍ୱତଃ ଜଗତ୍ ସୃଷ୍ଟି କରେ; କିନ୍ତୁ ତାହା ନିଜ ପାଇଁ ନୁହେଁ, ଅନ୍ୟ ପାଇଁ । ଉଷ୍ଟ୍ର କୁଙ୍କୁମ ଭାର ବହନ କରେ ସତ, କିନ୍ତୁ କୁଙ୍କୁମର ସୌରଭର ଉପଲବ୍ଧି କରେ ନାହିଁ । ପ୍ରକୃତି ସେହିପରି ।

ପ୍ରକୃତି ପୁରୁଷ ଉଭୟ ନିତ୍ୟ, ଅନାଦି ଅପରିଚ୍ଛିନ୍ନ ଏବଂ ନିଷ୍କ୍ରିୟ, ଉଭୟ ସ୍ୱତନ୍ତ୍ର, ଅଲିଙ୍ଗ ଏବଂ ନିରବୟବ । ପ୍ରକୃତି ଜଡ଼ ମାତ୍ର ପୁରୁଷ ଚେତନ; ପ୍ରକୃତି ଗୁଣମୟୀ, ପୁରୁଷ ନିର୍ଗୁଣ ବା ଗୁଣାତୀତ; ପ୍ରକୃତି ଦୃଶ୍ୟ, ପୁରୁଷ ଦ୍ରଷ୍ଟା; ପ୍ରକୃତି ଭୋଗ୍ୟ, ପୁରୁଷ ଭୋକ୍ତା;

Digitized by srujanika@gmail.com

ପ୍ରକୃତି ବିଷୟ, ପୁରୁଷ ବିଷୟୀ, ପୁରୁଷ କୂଟସ୍ଥ ଅର୍ଥାତ୍ ସୁଖ ଦୁଃଖର ଅତୀତ, ନିତ୍ୟମୁକ୍ତ ଏବଂ ଅସଙ୍ଗ ।

ସାଂଖ୍ୟର ଦାର୍ଶନିକ ଦୃଷ୍ଟି ଯଥାର୍ଥ ବାଦାତ୍ମକ ଅଟେ । ମନଃ ତତ୍ତ୍ୱର ସୂକ୍ଷ୍ମ ବିବେଚନା ଦ୍ୱାରା ଏବଂ ତ୍ରିଗୁଣର ବ୍ୟାପ୍ତି ଦେଖାଇବା ଦ୍ୱାରା ସାଂଖ୍ୟ ବଡ଼ କାମ କରିଅଛି । ସାଂଖ୍ୟରେ ଅନେକ ଧାରା ଅଛି । ପ୍ରାଚୀନ ସାଂଖ୍ୟ ଈଶ୍ୱରବାଦୀ । ବେଦାନ୍ତରୁ ସାଂଖ୍ୟର ବିଶେଷ ପାର୍ଥକ୍ୟ ଦେଖାଯାଏ ନାହିଁ । ପରବର୍ତ୍ତୀ ସାଂଖ୍ୟ ନିତାନ୍ତ ନିରୀଶ୍ୱରବାଦୀ । ସେମାନେ କହନ୍ତି "ଈଶ୍ୱରାସିଦ୍ଧେଃ" । ପ୍ରକୃତି ପୁରୁଷ ମିଳନରୁ ଜଗତ୍ ଉତ୍ପନ୍ନ ହୁଏ । ଈଶ୍ୱରଙ୍କ ସତ୍ତା ଜଗତ ଉତ୍ପନ୍ନରେ ଅନାବଶ୍ୟକ, ତେଣୁ ସାଂଖ୍ୟ ଦର୍ଶନ ଈଶ୍ୱର ମାନେ ନାହିଁ । ବୌଦ୍ଧ ଦର୍ଶନରେ ସାଂଖ୍ୟ ଦର୍ଶନର ବିଶେଷ ପ୍ରଭାବ । ଗୌତମ ବୁଦ୍ଧ ସ୍ୱୀୟ ମୌଳିକ ସିଦ୍ଧାନ୍ତ ଗୁଡ଼ିକ ସାଂଖ୍ୟ ଦର୍ଶନରୁ ଗ୍ରହଣ କରି ଅଛନ୍ତି । ଏ କଥା ନିର୍ବିବାଦ ସିଦ୍ଧାନ୍ତ ଅଟେ । ଦୁଃଖର ସତ୍ତା, ବୈଦିକ କର୍ମକାଣ୍ଡର ଗୌଣତା, ଈଶ୍ୱରଙ୍କ ସତ୍ତାରେ ଅନାସ୍ଥା ଏବଂ ଜଗତର ପରିଣାମଶୀଳତା ଇତ୍ୟାଦିର ସିଦ୍ଧାନ୍ତମାନ ବୁଦ୍ଧଦେବ ସାଂଖ୍ୟ ଦର୍ଶନରୁ ଗ୍ରହଣ କରି ଅଛନ୍ତି । ସାଂଖ୍ୟବାଦୀମାନଙ୍କର ସ୍ପଷ୍ଟ ଅଭିମତ ଯେ, ସେମାନେ ସର୍ବାଦୌ ଅହିଂସାବାଦୀ ଅଟନ୍ତି । ଜୈନ ଏବଂ ବୌଦ୍ଧମାନେ ଏହି ଅହିଂସାବାଦ ତତ୍ତ୍ୱ ଗୁଡ଼ିକ ସାଂଖ୍ୟରୁ ଗ୍ରହଣ କରିଅଛନ୍ତି ।

ଅନ୍ୟାନ୍ୟ ଦର୍ଶନ ପରି ସାଂଖ୍ୟ ଦର୍ଶନ ପ୍ରଥମେ ଦୁଃଖବାଦର ଅବତାରଣା କରିଅଛି । ଏ ଜଗତରେ ଜୀବ ଚିରକାଳ ଦୁଃଖର ଆଘାତ ପ୍ରତିଘାତ ସହ୍ୟ କରେ । ଦୁଃଖ ତିନି ପ୍ରକାର—ଆଧ୍ୟାତ୍ମିକ, ଆଧିଭୌତିକ, ଏବଂ ଆଧିଦୈବିକ । ଆଧ୍ୟାତ୍ମିକ ଦୁଃଖ ପୁଣି ଦୁଇ ପ୍ରକାର, ଯଥା—ରୋଗାଦି ହେତୁ ଶାରୀରିକ ଦୁଃଖ, କାମ

Digitized by srujanika@gmail.com

କ୍ରୋଧାଦି ହେତୁ ମାନସିକ ଦୁଃଖ । ମନୁଷ୍ୟ ପଶୁପକ୍ଷୀ ନା ସ୍ଥାବରାଦିମାନଙ୍କ ହେତୁରୁ ଯେଉଁ ଦୁଃଖ ଜାତ ହୁଏ, ତାହା ଆଧିଭୌତିକ । ଶୀତ, ଗ୍ରୀଷ୍ମ, ବାତ, ବର୍ଷାଦି ଜନିତ ଦୁଃଖକୁ ଆଧିଦୈବିକ କହନ୍ତି ।

ଦୁଃଖ ଭୋଗ ଜୀବ ପକ୍ଷରେ ସ୍ୱାଭାବିକ କାରଣ, ଯେ ପର୍ଯ୍ୟନ୍ତ ଜୀବ ପ୍ରାଣଧାରଣ କରିବ ସେ ପର୍ଯ୍ୟନ୍ତ ଜୀବକୁ ଜରା ମରଣ ବ୍ୟାଧି ଜନିତ ଦୁଃଖ ସହିବାକୁ ହେଉଥିବ । ଜଗତରେ ସୁଖ ବିରଳ ଯଦି କାହାର ଭାଗ୍ୟରେ କେତେବେଳେ ସୁଖ ଘଟେ, ତାହା ମଧ୍ୟ ଦୁଃଖ ଜଡ଼ିତ । ସେ ସୁଖ ଏପରି ସାମାନ୍ୟ ଓ କ୍ଷଣସ୍ଥାୟୀ ଯେ ତାକୁ ମଧ୍ୟ ଦୁଃଖ କହିଲେ ଚଳେ । ଉପରୋକ୍ତ ତ୍ରିବିଧ ଦୁଃଖ ନିବୃତ୍ତି ମନୁଷ୍ୟର ସର୍ବଦା ବାଞ୍ଛନୀୟ । କ୍ଷଣିକ ଦୁଃଖ ନିବୃତ୍ତି ଐକାନ୍ତିକ ବା ଆତ୍ୟନ୍ତିକ ହେବା ଆବଶ୍ୟକ । ଲୌକିକ ଉପାୟ ଦ୍ୱାରା ଏ ଦୁଃଖର ଚିର ନିବୃତ୍ତି ହୋଇ ନ ପାରେ; ଯଥା ଔଷଧ ସେବନରେ ଶାରୀରିକ ଦୁଃଖ ନିବୃତ୍ତି ହୁଏ । ଇଷ୍ଟ ସାଧନ ଦ୍ୱାରା ମାନସିକ ଦୁଃଖ ଉପଶମ ହୁଏ; ମାତ୍ର ତାହା କ୍ଷଣସ୍ଥାୟୀ । ଏ ଉପାୟ ଚିରସ୍ଥାୟୀ ନୁହେଁ । ଦୁଃଖ ନିବାରଣର ଅନ୍ୟତମ ଉପାୟ ବୈଦିକ ଉପାୟ; ଯଥା—ଯଜ୍ଞାଦି ଅନୁଷ୍ଠାନ ଫଳରେ ଜୀବ ସୁଖମୟ ସ୍ୱର୍ଗଧାମ ପ୍ରାପ୍ତ ହୁଏ । କିନ୍ତୁ ସେ ଉପାୟ ତିନି ପ୍ରକାର ଦୋଷ-ଦୁଷ୍ଟ । କାର୍ଯ୍ୟର ତାରତମ୍ୟ ଅନୁସାରେ କେହି ଉଚ୍ଚତମ, କେହି ନିମ୍ନତମ ସ୍ୱର୍ଗଲୋକ ପ୍ରାପ୍ତ ହୁଏ । ଦ୍ୱିତୀୟତଃ ଯଜ୍ଞାନୁଷ୍ଠାନରେ ଜୀବ ହିଂସା ମଧ୍ୟ କରିବାକୁ ହୁଏ । ତେଣୁ ଜୀବହିଂସା ବଶତଃ ପାପ ମଧ୍ୟ ସ୍ପର୍ଶ କରେ । ସେହି ପାପ ଫଳରେ ଦୁଃଖ ଭୋଗ ଅନିବାର୍ଯ୍ୟ । ଏ ସ୍ୱର୍ଗଲାଭ ମଧ୍ୟ କ୍ଷଣସ୍ଥାୟୀ ଏଥିରେ ପତନ ମଧ୍ୟ ଅବଶ୍ୟମ୍ଭାବୀ । ଲୋକକୁ ପୁନର୍ବାର ଦୁଃଖମୟ ସଂସାରକୁ ଫେରି

Digitized by srujanika@gmail.com

ଅସିବାକୁ ହୁଏ ସୁତରାଂ ବୈଦିକ ଉପାୟ ଅବଲମ୍ବନ ଦୁଃଖ ନିବାରଣର ପ୍ରକୃଷ୍ଟ ମାର୍ଗ ନୁହେଁ । କାରଣ "କ୍ଷୀଣେ ପୁଣ୍ୟେ ମର୍ତ୍ତ୍ୟଲୋକଂ ବିଶନ୍ତି ।"

ସାଂଖ୍ୟ ମତରେ 'ଜ୍ଞାନାନ୍ମୁକ୍ତିଃ' ଅର୍ଥାତ୍ ମନୁଷ୍ୟର ମୁକ୍ତିଲାଭ କେବଳ ଜ୍ଞାନରୁ ଘଟେ । ଏହି ଜ୍ଞାନ ପ୍ରକୃତି ପୁରୁଷ ବିଷୟକ ଜ୍ଞାନ, ଅର୍ଥାତ୍ ପ୍ରକୃତି ଓ ପୁରୁଷ ମଧ୍ୟରେ ପାର୍ଥକ୍ୟ ହୃଦୟଙ୍ଗମ କରିବାର ଜ୍ଞାନକୁ ଯଥାର୍ଥ ଜ୍ଞାନ କହନ୍ତି, ଏହି ଜ୍ଞାନର ଅଧିକାରୀ ବ୍ୟକ୍ତି, ପ୍ରାରବ୍ଧ କର୍ମ କ୍ଷୟ ହେବା ପର୍ଯ୍ୟନ୍ତ ଦେହ ଧାରଣ କରେ । ଜୀବ ଯେତେବେଳେ ବୁଝେ ଯେ, ସେ କର୍ତ୍ତା ନୁହେ, ସେ ଭୋକ୍ତା ନୁହେଁ, ସେତେବେଳେ ସେ ଯଥାର୍ଥ ଜ୍ଞାନ ଲାଭ କରେ । ନିର୍ମମ ନିରହଙ୍କାର ବ୍ୟକ୍ତିର ଧର୍ମାଧର୍ମ ବୀଜଭାବ ନଷ୍ଟ ହୋଇଯାଏ । ଯେପରି ଜଳାଦ୍ର ଭୂମିରେ ବୀଜ ବୁଣିଲେ ଅଙ୍କୁରୋଦ୍‌ଗମ ହୁଏ; ପ୍ରଖର ସୂର୍ଯ୍ୟ କିରଣରେ ଉତ୍ତପ୍ତ ହୋଇ ଭୂମି ଶୁଷ୍କ ହୋଇଗଲେ ଅଙ୍କୁରୋଦ୍‌ଗମ ହୋଇ ନ ପାରେ । ସେହିପରି ତତ୍ତ୍ୱଜ୍ଞାନ ଦ୍ୱାରା ଅବିବେକତା ଦୂର ହେଲେ କର୍ମ ବୀଜ ଅଙ୍କୁରିତ ହୁଏ ନାହିଁ, ତତ୍ତ୍ୱ ସାକ୍ଷାତ୍ ଲାଭ ହେଲେ ସୁଖ ଦୁଃଖ ଉଭୟ ଅବସ୍ଥା ସମାନ ହୋଇଯାଏ । ତତ୍ତ୍ୱ ସାକ୍ଷାତ୍ ଲାଭ କିପରି ହୁଏ ? ଯାହାର ପଞ୍ଚବିଂଶତି ତତ୍ତ୍ୱଜ୍ଞାନ ହୁଏ, ସେ ବ୍ରହ୍ମଚର୍ଯ୍ୟାଶ୍ରମ ଗୃହସ୍ଥାଶ୍ରମ ଯେ କୌଣସି ଅବସ୍ଥାରେ ମୁଦ୍ଧା ମୁକ୍ତି ଲାଭ କରେ ।

ମହର୍ଷି କପିଳ ସାଂଖ୍ୟ ଦର୍ଶନର ଉଦ୍ଭାବକ । ଏହାଙ୍କ ନାମରେ ପ୍ରଚଳିତ ସାଂଖ୍ୟସୂତ୍ର ବିକ୍ରମଙ୍କ ପରେ ପଞ୍ଚମ ଶତକରେ ରଚିତ ହୋଇଥିଲା । କପିଳଙ୍କ ଶିଷ୍ୟ ଅସୁରୀ, ଅସୁରୀଙ୍କ ଶିଷ୍ୟ ପଞ୍ଚଶିଖାଚାର୍ଯ୍ୟ ଏହି ଆଚାର୍ଯ୍ୟ ସାଂଖ୍ୟ ଦର୍ଶନର ମୂଳ ସୂତ୍ର ଅବଲମ୍ବନ କରି ଓ ତହିଁର ବିସ୍ତାରିତ ବ୍ୟାଖ୍ୟା କରି ସାଂଖ୍ୟଦର୍ଶନ ବିଷୟରେ

Digitized by srujanika@gmail.com

ବହୁ ଶାସ୍ତ୍ର ପ୍ରଣୟନ କରି ଅଛନ୍ତି । ଆଜିକାଲି ସାଂଖ୍ୟ ସିଦ୍ଧାନ୍ତ ପ୍ରତିପାଦକ ଗ୍ରନ୍ଥ ସାଂଖ୍ୟ କାରିକା ଅଟେ । ଯାହାକୁ କି ଈଶ୍ୱରକୃଷ୍ଣ ଖ୍ରୀଷ୍ଟମଙ୍କ ପ୍ରଥମ ଶତାବ୍ଦୀରେ ଲେଖିଥିଲେ । ଏହି ଗ୍ରନ୍ଥ ଏତେଦୂର ପ୍ରସିଦ୍ଧ ଯେ, ଏହାର ଆଦର ଚିନ୍ ଦେଶରେ ଏ ପର୍ଯ୍ୟନ୍ତ ଚାଲିଛି । ଏହି କାରିକାକୁ ସେମାନେ ସୁବର୍ଣ୍ଣ ସପ୍ତତି ବା ହିରଣ୍ୟ ସପ୍ତତି କହୁ ଅଛନ୍ତି । ମହାମନୀଷୀ ଶଙ୍କରାଚାର୍ଯ୍ୟ ମଧ୍ୟ ଏହି କାରିକାରୁ କେତେକ ପ୍ରମାଣ ସ୍ୱରୂପ ତାଙ୍କ ଭାଷ୍ୟରେ ଦେଇ ଅଛନ୍ତି । ଶଙ୍କରାଚାର୍ଯ୍ୟଙ୍କ ପରମ ଗୁରୁ ଗୌଡ଼ପାଦାଚାର୍ଯ୍ୟ ଏହି କାରିକାର ଭାଷ୍ୟ ପ୍ରଣୟନ କରିଥିଲେ, ବାଚସ୍ପତି ମିଶ୍ର ମଧ୍ୟ ଏହି କାରିକାର ଟୀକା କରିଥିଲେ, ଯେ କି ସାଂଖ୍ୟତତ୍ତ୍ୱ କୌମୁଦୀ ନାମରେ ଖ୍ୟାତ । ବିଜ୍ଞାନ ଭିକ୍ଷୁ ନାମରେ ଜଣେ ବିଖ୍ୟାତ ଜ୍ଞାନୀ ସନ୍ନ୍ୟାସୀ କାଶୀରେ ଥିଲେ । ସେ ମଧ୍ୟ ସାଂଖ୍ୟ ସୂତ୍ରର ପ୍ରବଚନ ଭାଷ୍ୟ ନାମକ ଭାଷ୍ୟ ଲେଖି ବେଦାନ୍ତ ସହିତ ସାଂଖ୍ୟର ସାମଞ୍ଜସ୍ୟ ଦେଖାଇ ଅଛନ୍ତି ।

## ୪—ଯୋଗ ଦର୍ଶନ

ଯୋଗ ହିନ୍ଦୁ ଜାତିର ସର୍ବ ପ୍ରାଚୀନ ଓ ସର୍ବ ସମୀଚୀନ ସମ୍ପତ୍ତି ଅଟେ । ଏଥିରେ ବାଦ ବିବାଦ କରିବାର କୌଣସି କାରଣ ନାହିଁ । ଯୋଗାଭ୍ୟାସ ଦ୍ୱାରା ଲୋକ ନାନାପ୍ରକାର ସିଦ୍ଧିପ୍ରାପ୍ତ ହୋଇପାରେ । ଋଷିମାନଙ୍କ ଜ୍ଞାନ ଓ ଅନ୍ତର ଦୃଷ୍ଟିରେ ସେମାନେ ଅସାଧ୍ୟ ସାଧନ କରିପାରିଛନ୍ତି । ଯୋଗ ଭାରତର ପ୍ରଧାନ ସମ୍ପତ୍ତି । ଯୋଗ ଦ୍ୱାରା ଋଷିମାନେ ବୈଜ୍ଞାନିକ ଦୃଷ୍ଟି ଅନୁଶୀଳନ କରି ଭୌତିକ ଜଗତର ଚରମ ସୀମା ପର୍ଯ୍ୟନ୍ତ ପହଞ୍ଚି ପାରିଛନ୍ତି । ଆଜିକାଲି ପାଶ୍ଚାତ୍ୟ ଯୁଗରେ ବିଜ୍ଞାନ ଦ୍ୱାରା ପଣ୍ଡିତମାନେ ଯାହା ଯାହା ଆବିଷ୍କାର କରୁଅଛନ୍ତି ବା କରିଅଛନ୍ତି,

Digitized by srujanika@gmail.com

ଅନୁମାନଙ୍କର ଭାରତୀୟ ଋଷିଗଣ ସେ ସମସ୍ତ କରିପାରୁଥିଲେ । ମାତ୍ର ଭୌତିକ ପଦାର୍ଥର ଅନିତ୍ୟତା ହେତୁ ସେ ସବୁର ଚର୍ଚ୍ଚା ନ କରି ସେମାନେ ଦର୍ଶନ ଶାସ୍ତ୍ର ଆଲୋଚନାରେ ଲାଗି ରହିଥିଲେ ।

ଯୋଗ ଅନେକ ପ୍ରକାର ଅଛି, ତନ୍ତ୍ରଯୋଗ, ହଠଯୋଗ ଓ ରାଜଯୋଗ । ରାଜଯୋଗ ମହର୍ଷି ପତଞ୍ଜଳିଙ୍କ ଦ୍ୱାରା ଲିଖିତ ଓ ଉପଦିଷ୍ଟ । ଏହା ଚାରିପାଦରେ ବିଭକ୍ତ । ଏହି ଚାରିପାଦର ନାମ ସମାଧି, ସାଧନ, ବିଭୂତି ଓ କୈବଲ୍ୟ । ମହାମୁନି କପିଳଙ୍କ ପ୍ରଦର୍ଶିତ ପଞ୍ଚବିଂଶତି ତତ୍ତ୍ୱ ପତଞ୍ଜଳି ଗ୍ରହଣ କରିଅଛନ୍ତି । ତା ଛଡ଼ା ଆଉ ଗୋଟିଏ ତତ୍ତ୍ୱ ଅଧିକ ଭାବେ ପ୍ରକାଶ କରି ଅଛନ୍ତି । ତାହା ହେଉଛି "ଈଶ୍ୱରତତ୍ତ୍ୱ" ପତଞ୍ଜଳିଙ୍କ ମତରେ 'ଈଶ୍ୱର' ସାଂଖ୍ୟ ଦର୍ଶନ ବର୍ଣ୍ଣିତ ପୁରୁଷ ଠାରୁ ପୃଥକ୍ ।

ନିରୀଶ୍ୱର ସାଂଖ୍ୟଠାରୁ ସେଶ୍ୱର ସାଂଖ୍ୟକୁ ପୃଥକ୍ କରିବା ପାଇଁ ପତଞ୍ଜଳିଙ୍କ ଦର୍ଶନକୁ ସେଶ୍ୱର ସାଂଖ୍ୟ ଏବଂ କପିଳଙ୍କ ସାଂଖ୍ୟକୁ ନିରୀଶ୍ୱର ସାଂଖ୍ୟ କହନ୍ତି । ପତଞ୍ଜଳି ନିମ୍ନୋକ୍ତ ଭାବରେ ଈଶ୍ୱର ତତ୍ତ୍ୱ ନିରୂପଣ କରି ଅଛନ୍ତି ।

"କ୍ଲେଶ କର୍ମ ବିପାକାଶୟୈରପରାମୃଷ୍ଟଃ ପୁରୁଷ ବିଶେଷଃ ଈଶ୍ୱରଃ ।" "ତତ୍ର ନିରତିଶୟଂ ସର୍ବଜ୍ଞ ବୀଜମ୍ ।" "ସ ଏଷ ପୂର୍ବେଷାମପି ଗୁରୁଃ କାଲେନ ଅନବଚ୍ଛେଦାତ୍ ।" ଅର୍ଥାତ୍ ଯେଉଁ ପୁରୁଷ କ୍ଲେଶ, କର୍ମ, ବିପାକ, ଓ ଆଶୟର ସମ୍ପର୍କ ଶୂନ୍ୟ । ସେହି ଈଶ୍ୱର । ତାଙ୍କଠାରେ ଜ୍ଞାନର ଚରମ ଉତ୍କର୍ଷ ବିଦ୍ୟମାନ, ସେ ସର୍ବଜ୍ଞ, ସେ ବ୍ରହ୍ମାଦି ପୂର୍ବାଚାର୍ଯ୍ୟ ମାନଙ୍କର ଗୁରୁ; ସେ କାଳର ଅତୀତ ।

Digitized by srujanika@gmail.com

ସାଧାରଣ ପୁରୁଷ କ୍ଳେଶ କର୍ମବିପାକ ଓ ଅଶୟ ଯୁକ୍ତ । କ୍ଳେଶ ପାଞ୍ଚପ୍ରକାର—ଅବିଦ୍ୟା, ଅସ୍ମିତା, ରାଗ, ଦ୍ୱେଷ ଓ ଅଭିନିବେଶ । ଅବିଦ୍ୟା—ମିଥ୍ୟାଜ୍ଞାନ । ଅସ୍ମିତା—ଅହଙ୍କାର । ରାଗ—ଅନୁରାଗ । ଦ୍ୱେଷ—ବିରାଗ । ଅଭିନିବେଶ—ମରଣଭୟ । କର୍ମ ମଧ୍ୟ ଦୁଇ ପ୍ରକାର, ସୁକୃତ ଦୁଷ୍କୃତ ବା ପାପ ପୁଣ୍ୟ । ବିପାକ କର୍ମଫଳ । କର୍ମଫଳ ତ୍ରିବିଧ, ଜନ୍ମ ଆୟୁ ଓ ଭୋଗ । ଅଶୟ ବିପାକର ଅନୁରୂପ ସଂସ୍କାର । ସାଧାରଣ ପୁରୁଷ ଏହି କ୍ଳେଶ କର୍ମ ବିପାକ ଓ ଅଶୟର ସମ୍ପର୍କ ଛାଡ଼ି ନ ପାରେ । ମୁକ୍ତ ପୁରୁଷର କ୍ଳେଶାଦି ସହିତ ସମ୍ପର୍କ ନ ଥାଏ । କିନ୍ତୁ ମୁକ୍ତ ପୂର୍ବେ ସେ ମଧ୍ୟ କ୍ଳେଶାଦିର ଅଧୀନ । ପୁରୁଷ ବା ଜୀବ ଯେପରି ବହୁ ପୁରୁଷ, ବିଶେଷ ଈଶ୍ୱର ସେପରି ବହୁ ନୁହନ୍ତି; ସେ ଏକ ଏବଂ ଅଦ୍ୱିତୀୟ । ସେ ଭୂତ ଭବିଷ୍ୟତ୍ ବର୍ତ୍ତମାନ ଏହି ତ୍ରିକାଳର ଅତୀତ । କଳ୍ପ ମନ୍ୱନ୍ତର ପ୍ରାରମ୍ଭରେ ବ୍ରହ୍ମା, ମନୁ, ସପ୍ତର୍ଷିଗଣ ଯେଉଁ ଶାସ୍ତ୍ର ଉପଦେଶ ପ୍ରଚାର କରନ୍ତି, ସେମାନେ ତାହା ସେହି ଈଶ୍ୱରଙ୍କ ଠାରୁ ପ୍ରାପ୍ତ ହୁଅନ୍ତି, ତେଣୁ ସେ ପୂର୍ବାଚାର୍ଯ୍ୟ ବା ଗୁରୁମାନଙ୍କର ଗୁରୁ । ପ୍ରକୃତି ଓ ପୁରୁଷର ଭେଦ ଜ୍ଞାନ ପତଞ୍ଜଳିଙ୍କ ମତରେ ମୋକ୍ଷ ଜ୍ଞାନର ଅଦ୍ୱିତୀୟ ପନ୍ଥା—ସେହି ଜ୍ଞାନ ଅର୍ଜ୍ଜନ କରିବାର ଉପାୟ ପଞ୍ଚବିଂଶତି ତତ୍ତ୍ୱସହିତ ପରିଚିତ ହେଲେ ସମ୍ୟକ୍ ଜ୍ଞାନ ଲାଭ କରାଯାଏ । ସେହି ପରିଚୟ ଯଥେଷ୍ଟ ନୁହେଁ । ଯୋଗ ସାଧନ ଆବଶ୍ୟକ । ପତଞ୍ଜଳିଙ୍କ ମତରେ ପ୍ରକୃତି ଓ ପୁରୁଷର ଭେଦଜ୍ଞାନ ଏକମାତ୍ର ଉପାୟ—ଯୋଗ । ପତଞ୍ଜଳି ଚିତ୍ତବୃତ୍ତି ବା ନିରୋଧକୁ ଯୋଗ ଆଖ୍ୟା ଦେଇଅଛନ୍ତି । ଚିତ୍ତର ପାଞ୍ଚଟି ଅବସ୍ଥା ଯଥା—କ୍ଷିପ୍ତ ବା ରଜୋଗୁଣାଧିକ୍ୟ, ମୂଢ଼ ବା ତମୋଗୁଣାଧିକ୍ୟ, ବିକ୍ଷିପ୍ତ ଅର୍ଥାତ୍ ଯେତେବେଳେ ସତ୍ତ୍ୱଗୁଣ ଉଦ୍ରେକ ହୋଇ ଚିତ୍ତ କେତେବେଳେ ସ୍ଥିର କେତେବେଳେ ଅସ୍ଥିର ହେଉଥାଏ, ଏକାଗ୍ର ଅର୍ଥାତ୍ ଯେତେବେଳେ ଧ୍ୟେୟ

Digitized by srujanika@gmail.com

ବସ୍ଥାରେ ଚିତ୍ତ ନିବଦ୍ଧ ହୁଏ, ନିରୁଦ୍ଧ ଅର୍ଥାତ୍ ଯେତେବେଳେ ଚିତ୍ତବୃତ୍ତି ନିରୋଧ ହୋଇ ବୃତ୍ତିଜନିତ ସଂସ୍କାର ମାତ୍ର ଅବଶିଷ୍ଟ ରହେ । କ୍ଷିପ୍ତ ଓ ମୂଢ଼ ଚିତ୍ତରେ ଯୋଗ ଅସମ୍ଭବ । ବିକ୍ଷିପ୍ତ ଚିତ୍ତରେ ଯୋଗର ଆରମ୍ଭ । ବିକ୍ଷିପ୍ତ ଚିତ୍ତକୁ କିନ୍ତୁ ଯୋଗଦ୍ୱାରା ଏକାଗ୍ର କରିବାକୁ ହୁଏ । ବିକ୍ଷିପ୍ତ ଚିତ୍ତ ଏକାଗ୍ର ହେଲେ ସାଧକ ପ୍ରକୃତ ଯୋଗର ଅଧିକାରୀ ହୁଏ । ଏକାଗ୍ର ଓ ନିରୁଦ୍ଧ ଅବସ୍ଥା ଯୋଗ ଉପଯୋଗୀ । ଚିତ୍ତବୃତ୍ତି ପାଞ୍ଚ ପ୍ରକାର—ପ୍ରମାଣ, ବିପର୍ଯ୍ୟୟ, ବିକଳ୍ପ, ନିଦ୍ରା, ସ୍ମୃତି । ପ୍ରମାଣ ତ୍ରିବିଧ—ପ୍ରତ୍ୟକ୍ଷ ଅନୁମାନ ଓ ଆଗମ । ବିପର୍ଯ୍ୟୟ—ମିଥ୍ୟାଜ୍ଞାନ । ବିକଳ୍ପ—ବିଷୟ ନ ଥାଇ ଶବ୍ଦଜ୍ଞାନ ପ୍ରଭାବରେ ଯେଉଁ ବୃତ୍ତି ଉତ୍ପନ୍ନ ହୁଏ । ଯଥା—ଆକାଶ, କୁସୁମ, ନିଦ୍ରାସୁଷୁପ୍ତି । ସ୍ମୃତି—ବିଷୟର ସ୍ମରଣ ବା ଅନୁଭୂତ । ଏହି ସମସ୍ତ ଚିତ୍ତବୃତ୍ତିକୁ ନିରୋଧ କରିବାକୁ ହୁଏ । କାରଣ ଚିତ୍ତ ସହିତ ପୁରୁଷର ସଂଯୋଗ ହେତୁ ଚିତ୍ତର ସମସ୍ତ ବୃତ୍ତି ପୁରୁଷଙ୍କ ଠାରେ ଉପଚରିତ ହୁଏ । ପୁରୁଷ ସ୍ୱଚ୍ଛ ଓ ନିର୍ଗୁଣ । ସ୍ୱଚ୍ଛ ସ୍ଫଟିକ ନିକଟରେ ରକ୍ତବର୍ଣ୍ଣ ବସ୍ତୁ ଧାରଣ କଲେ ତାହା ରକ୍ତବର୍ଣ୍ଣ ଦିଶେ, କିନ୍ତୁ ଯଥାର୍ଥରେ ସ୍ଫଟିକର କୌଣସି ବର୍ଣ୍ଣ ନାହିଁ । ଉପାଧିର ବର୍ଣ୍ଣ ତହିଁରେ ପ୍ରତିଫଳିତ ହୁଏ । ସେହିପରି ନିର୍ମଳ ପୁରୁଷଠାରେ ସୁଖ ଦୁଃଖ ଓ ମୋହ ପ୍ରଭୃତି ଚିତ୍ତବୃତ୍ତି ପ୍ରତିବିମ୍ବିତ ହେଲେ ପୁରୁଷ ସେମାନଙ୍କ ସହିତ ସାରୂପ୍ୟ ଲଭ କରି ନିଜକୁ ସୁଖୀ ଦୁଃଖୀ ମନେକରେ, କିନ୍ତୁ ଯଥାର୍ଥରେ ପୁରୁଷର ସୁଖ ଦୁଃଖ ନାହିଁ । ଯୋଗର ଅଷ୍ଟାଙ୍ଗ ଦ୍ୱାରା ଚିତ୍ତ ବୃତ୍ତି ନିରୋଧ ହେଲେ ପୁରୁଷଠାରେ ବୃତ୍ତିର ଛାୟା ନିପତିତ ହୁଏ ନାହିଁ, ସେତେବେଳେ ପୁରୁଷ ନିଜର ସ୍ୱରୂପରେ ଅବସ୍ଥାନ କରେ ।

Digitized by srujanika@gmail.com

ପତଞ୍ଜଳି ଚିତ୍ତବୃତ୍ତି ନିରୋଧର ବିଭିନ୍ନ ଉପାୟ ନିର୍ଦ୍ଦେଶ କରିଅଛନ୍ତି । ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧି । ଅଭ୍ୟାସ ଓ ବୈରାଗ୍ୟ ଦ୍ୱାରା ଚିତ୍ତବୃତ୍ତି ନିରୋଧ ହୋଇପାରେ । ଅଭ୍ୟାସ ଓ ବୈରାଗ୍ୟ ଦ୍ୱାରା ଯୋଗୀ ଶ୍ରଦ୍ଧା, ଉତ୍ସାହ, ସ୍ମୃତି, ଏକାଗ୍ରତା ଏବଂ ପ୍ରଜ୍ଞା ବା ବିବେକ ସାହାଯ୍ୟରେ ପ୍ରଥମତଃ ସମ୍ପ୍ରଜ୍ଞାତ ସମାଧି ଲାଭ କରେ । ପରେ ଅଭ୍ୟାସ ଦୃଢ଼ତର ଏବଂ ବୈରାଗ୍ୟର ପରାକାଷ୍ଠା ଲାଭ କଲେ ଅସଂପ୍ରଜ୍ଞାତ ସମାଧି ତାହାର ଆୟତ୍ତ ହୁଏ । ସମାଧି ଭିନ୍ନ ଈଶ୍ୱରଙ୍କଠାରେ ପ୍ରଣିଧାନ ହେଲେ ସମାଧି ସିଦ୍ଧି ଲାଭ ହୁଏ ଅର୍ଥାତ୍ ଯୋଗୀର ଅଭିଷ୍ଟ ସିଦ୍ଧି ନିମିତ୍ତ ଈଶ୍ୱର ତାହାଠାରେ ପ୍ରସନ୍ନ ହୋଇ ତାହାପ୍ରତି ଅନୁଗ୍ରହ ପ୍ରକାଶ କରନ୍ତି, ଏହାପରି ପତଞ୍ଜଳି ନିଜର ଅଭିମତ ଷଡ଼୍‌ବିଂଶତି ତତ୍ତ୍ୱ ପ୍ରତିପାଦନ କରିଅଛନ୍ତି ।

"ହିରଣ୍ୟ ଗର୍ଭୋ ଯୋଗସ୍ୟ ବକ୍ତା
ନାନ୍ୟଃ ପୁରାତନଃ ।"

ଏଥିରୁ ସ୍ପଷ୍ଟ ଜଣାଯାଉଅଛି ଯେ, ହିରଣ୍ୟ ଗର୍ଭ ଯୋଗଶାସ୍ତ୍ରର ପ୍ରକାଶକ, ମହର୍ଷି ପତଞ୍ଜଳି ଯୋଗଶାସ୍ତ୍ରର ଉପଦେଷ୍ଟା, ଏହି ଶାସ୍ତ୍ର ଖ୍ରୀଷ୍ଟଙ୍କ ଆଗରୁ ଦୁଇଶହ ବର୍ଷ ପୂର୍ବେ ପ୍ରକାଶ ପାଇଥିଲା । ଖ୍ରୀଷ୍ଟଙ୍କ ପରେ ତୃତୀୟ ଶତକରେ ବ୍ୟାସ ଏହି ଯୋଗ ଶାସ୍ତ୍ରର ଭାଷ୍ୟ କରିଥିଲେ, ଏହି ଭାଷ୍ୟ ଉପରେ ବାଚସ୍ପତି ମିଶ୍ର ନବମ ଶତକରେ ତତ୍ତ୍ୱବୈଶାରଦୀ ନାମକ ଟୀକା କରିଥିଲେ । ପରଶେଷରେ ଭୋଜକୃତ ରାଜମାର୍ତ୍ତଣ୍ଡ, ରାମାନନ୍ଦ ଯତିଙ୍କ ମଣିପ୍ରଭା ଟୀକା, ସଦାଶିବେନ୍ଦ୍ର ସରସ୍ୱତୀଙ୍କ ଯୋଗ ସୁଧାକର ଏହିପରି ବହୁ ଟୀକା ଦେଖାଯାଏ ।

Digitized by srujanika@gmail.com

## ୫—ମୀମାଂସା ଦର୍ଶନ

ଜୈମିନିଙ୍କ କର୍ମକାଣ୍ଡ ନୟମାବଳୀ ଗୁଡ଼ିକରେ ଥିବା ପରସ୍ପର ବିରୋଧାତ୍ମକ ନିୟମଗୁଡ଼ିକୁ ପରିହାର କରିବା ମୀମାଂସା ଦର୍ଶନର ଉଦ୍ଦେଶ୍ୟ । ଶ୍ରୁତିରେ ମଧ୍ୟ ଈଦୃଶ ବିରୋଧମାନଙ୍କୁ ପରିହାର କରିବାକୁ ଋଷିମାନେ ଚେଷ୍ଟା କରିଥିଲେ । "ମୀମାଂସତେ" କ୍ରିୟାପଦ ଏବଂ ମୀମାଂସା ସଂଜ୍ଞାପଦର ବ୍ୟବହାର ବୈଦିକ ସଂହିତାରେ ଦେଖିବାକୁ ମିଳେ । ତୈତ୍ତିରୀୟ ସଂହିତା (୭-୫।୭।୧) ତାଣ୍ଡ୍ୟ ବ୍ରାହ୍ମଣ ( ୬-୫।୯ ) ଏବଂ ଛାନ୍ଦୋଗ୍ୟ ଉପନିଷଦ ( ୫।୧୧।୧ ) 'ମୀମାଂସା ଧାତୁର' ବିଗ୍ରହ କାଳରେ ପ୍ରୟୋଗ କରାଯାଇଛି । କୌଷୀକ ବ୍ରାହ୍ମଣ (୨।୯) ସୂର୍ଯ୍ୟ ଉଦୟରେ ଉଦିତ ହୋମ ଏବଂ ଅନୁଦିତ ହୋମ ବିଷୟରେ ସମୀକ୍ଷାର ଉଲ୍ଲେଖ କରିଛନ୍ତି "ଉଦିତେ ହୋତବ୍ୟଂ ଅନୁଦିତେ ହୋତବ୍ୟଂ ଇତି ମୀମାଂସତେ" ଏହି ସମୀକ୍ଷଣର କାରଣ ମୀମାଂସର ପ୍ରାଚୀନ ନାମ ନ୍ୟାୟ ଥିଲା । ମୀମାଂସକମାନେ ପ୍ରଥମେ ନୈୟାୟିକ ଥିଲେ । ମୀମାଂସାର ବିଷୟ ବସ୍ତୁ ଧର୍ମର ବିବେଚନା (ଶ୍ଳୋକ)

ଧର୍ମାଖ୍ୟଂ ବିଷୟଂ ବସ୍ତୁ ମୀମାଂସାୟାଃ ପ୍ରୟୋଜନମ୍ ଶ୍ଳୋକ ବାର୍ତ୍ତିକ ଶ୍ଳୋକ ୧୧ । ବେଦଦ୍ୱାରା ବିହିତ ଇଷ୍ଟ ସାଧନକୁ ଧର୍ମ ଏବଂ ଅନିଷ୍ଟ ସାଧନକୁ ଅଧର୍ମ କହନ୍ତି । ବେଦ ନିତ୍ୟ ଅଟେ । କେହି ଏହାକୁ ରଚନା କରିନାହିଁ । ସୁତରାଂ ଏହା ଅପୌରୁଷେୟ ଅଟେ । ଏ ବିଶ୍ୱରେ କର୍ମହିଁ ପ୍ରଧାନ ବସ୍ତୁ । ବାଦରାୟଣ ଈଶ୍ୱରଙ୍କୁ କର୍ମ ଫଳର ଦାତା ବୋଲି କହି ଅଛନ୍ତି; କିନ୍ତୁ ଜୈମିନିଙ୍କ ମତରେ ସେଇହିଁ ଏତାଦୃଶ ଫଳମାନଙ୍କର ଦାତା । ଅନୁଷ୍ଠାନ ଓ ଫଳ ପ୍ରାପ୍ତି ମଧ୍ୟରେ ସମୟର ବ୍ୟବଧାନ ଦେଖାଯାଏ । କର୍ମର ଅନୁଷ୍ଠାନ ଆଜି କରାଗଲା; କିନ୍ତୁ ତାର ସ୍ୱର୍ଗାଦି ଫଳ କାଳାନ୍ତରେ ମିଳିଥାଏ

Digitized by srujanika@gmail.com

ବା ମିଳେ । ଏହି ବୈଷମ୍ୟ ଦୂର କରିବା ପାଇଁ ମୀମାଂସକମାନେ ଅପୂର୍ବ ସିଦ୍ଧାନ୍ତ ସ୍ଥିର କରି ଅଛନ୍ତି । କର୍ମରୁ ଉତ୍ପନ୍ନ ହୁଏ ଅପୂର୍ବ (ପୁଣ୍ୟାପୁଣ୍ୟ) । ତଥା ଅପୂର୍ବରୁ ଉତ୍ପନ୍ନ ହୁଏ ଫଳ । ମୀମାଂସକମାନେ ଶବ୍ଦର ନିତ୍ୟତା ଉପରେ ବିଶେଷ ମୌଳିକ ବିଚାର କରିଅଛନ୍ତି । କୁମାରିଲ୍‌ଙ୍କର ଅଭିହିତାନ୍ୱୟ ବାଦ, ଏବଂ ପ୍ରଭାକରଙ୍କର "ଅନ୍ୱିତାଭିଧାନ ବାଦର ବିଶିଷ୍ଟ ଉପାଦାନମାନ ମୀମାଂସାରୁ ନିଆଯାଇଅଛି । ବିରୋଧି ବାକ୍ୟମାନଙ୍କର ଏକବାକ୍ୟତା ଦେଖାଇବା ନିମନ୍ତେ ମୀମାଂସା ଯେଉଁ ପଥ ଦେଖାଇ ଅଛି, ତାହା ଅତି ଉପାଦେୟ । ଯେପରି ବ୍ୟାକରଣରୁ ପଦର ଜ୍ଞାନ ହୁଏ ଏବଂ ନ୍ୟାୟରୁ ପ୍ରମାଣର ଜ୍ଞାନହୁଏ, ସେହିପରି ବାକ୍ୟର ଜ୍ଞାନ ମୀମାଂସା ଦ୍ୱାରା ହୋଇଥାଏ, ମୀମାଂସାର ତାତ୍ପର୍ଯ୍ୟ ବିଷୟକ ସିଦ୍ଧାନ୍ତ ଗୁଡ଼ିକର ବ୍ୟବହାର, ଧର୍ମ ଶାସ୍ତ୍ରରେ ଅର୍ଥ ନିର୍ଣ୍ଣୟ ନିମିତ୍ତ ଏବେ ମଧ୍ୟ କରାଯାଏ । ବୌଦ୍ଧ ଧର୍ମର ଦାର୍ଶନିକମାନେ ବୈଦିକ କର୍ମକାଣ୍ଡ ବିଷୟରେ କରିଥିବା ଆକ୍ଷେପକୁ ଧ୍ୱସ୍ତକରି, ସାରାସାର ଶ୍ରେୟଃ ମୀମାଂସକମାନେ କରିଥିଲେ । ଯଦି ବିଶୁଦ୍ଧ ତର୍କ ସାହାଯ୍ୟରେ ସେମାନେ କର୍ମକାଣ୍ଡର ଏପରି ମାର୍ମିକ ସମୀକ୍ଷା କରି ନ ଥାନ୍ତେ ତାହାହେଲେ ବୈଦିକ କର୍ମକାଣ୍ଡ ପ୍ରତି ଆଜି ଯେଉଁ ଶ୍ରଦ୍ଧା ଓ ଆସ୍ଥା ଅଛି ତାହା ବହୁଦିନୁ ଲୋପ ପାଇ ଥାନ୍ତା ।

ମୀମାଂସା ଦର୍ଶନର ସାହିତ୍ୟ ଅତି ବିଶାଳ । ବିକ୍ରମଙ୍କ ୨ ଶହ ବର୍ଷ ପୂର୍ବେ ମହର୍ଷି ଜୈମିନି ମୀମାଂସା ସୂତ୍ରଗୁଡ଼ିକ ରଚନା କରିଥିଲେ । ଏହି ଦର୍ଶନର ସୂତ୍ରଗୁଡ଼ିକର ସଂଖ୍ୟା ଅନ୍ୟ ଦର୍ଶନ ମାନଙ୍କର ସୂତ୍ର ସଂଖ୍ୟା ଅପେକ୍ଷା ବେଶୀ । ମହାଭାଷ୍ୟରେ କାଶ କୃତ୍ସ୍ନ ଆଗ୍ନେୟଙ୍କର ମୀମାଂସାବିଷୟକ ଲେଖା ଦେଖିବାକୁ ମିଳେ । ବିକ୍ରମଙ୍କ ତିନିଶହ ବର୍ଷ ପରେ ଶବର ସ୍ୱାମୀ ଦ୍ୱାଦଶଲକ୍ଷଣୀ ମୀମାଂସା

Digitized by srujanika@gmail.com

ଉପରେ ବିସ୍ତୃତ ଏବଂ ପ୍ରାମାଣିକ ଭାଷ୍ୟ ଲେଖିଛନ୍ତି । ଶବର ଭାଷ୍ୟର ତିନୋଟି ଟୀକାକାର ତିନୋଟି ବିଭିନ୍ନ ସଂପ୍ରଦାୟ ସୃଷ୍ଟି କରିଛନ୍ତି । ଭାଟ୍ଟମତ, ଗୁରୁମତ ଓ ମୁରାରିମତ, ଭାଟ୍ଟମତର ଉଦ୍ଭାବକ ଅଗ୍ରଣୀ କୁମାରିଲ ଭଟ୍ଟ । ତାଙ୍କପରି ମତମାନ ତାର୍କିକ ବିରଳ । ବୌଦ୍ଧମାନଙ୍କର କର୍କଶ ତର୍କ ପ୍ରଭାବରୁ ସେ ମୀମାଂସାକୁ ରକ୍ଷାକରି ଅଛନ୍ତି । "ଶ୍ଳୋକ ବାର୍ତ୍ତିକ" ଏବଂ "ତନ୍ତ୍ର ବାର୍ତ୍ତିକ" ଏହି ଦୁଇଟି ଗ୍ରନ୍ଥ ତାଙ୍କର ଅଲୌକିକ ପାଣ୍ଡିତ୍ୟ ଓ ତର୍କ କୁଶଳତାର ଜ୍ୱଳନ୍ତ ଉଦାହରଣ । ତାଙ୍କର ଶିଷ୍ୟ ମଣ୍ଡନ ମିଶ୍ର "ବିଧିବିବେକ" "ଭାବନା ବିବେକ" "ବିଭ୍ରମ ବିବେକ" ଆଦି ଗ୍ରନ୍ଥମାନ ଲେଖି ଭାଟ୍ଟ ମତକୁ ପରିପୁଷ୍ଟ କରିଅଛନ୍ତି । ବାଚସ୍ପତି ମିଶ୍ର "ବିଧିବିବେକ" ବିଷୟରେ "ନ୍ୟାୟ କଣିକା" ନାମକ ଟୀକା ଲେଖି ଏବଂ ଶବ୍ଦାର୍ଥ ବିଷୟରେ "ତତ୍ତ୍ୱବିନ୍ଦୁ" ଲେଖିଛନ୍ତି । କୁମାରିଲ ଭଟ୍ଟଙ୍କ ଦ୍ୱିତୀୟ ଶିଷ୍ୟ ଉମ୍ବେକ "ଭାବନା ବିବେକ" ଏବଂ "ଶ୍ଳୋକ ବାର୍ତ୍ତିକ"ର ତାତ୍ପର୍ଯ୍ୟ ଟୀକା ଲେଖିଛନ୍ତି ।

କେହି କେହି ଉମ୍ବେକଙ୍କୁ ଉତ୍ତରରାମଚରିତର ରଚୟିତା ଭବଭୂତି ବୋଲି କହନ୍ତି । ଭଟ୍ଟକୁମାରିଲ ସ୍ୱକୀୟ ଶିଷ୍ୟମାନଙ୍କ ସହିତ ବୈଦିକ ଧର୍ମର ପୁନରୁତ୍‌ଥାନ ଏବଂ ପ୍ରତିଷ୍ଠା ସକାଶେ ଯେଉଁ ଅକ୍ଳାନ୍ତ ପରିଶ୍ରମକରି ବିପୁଳ ସଫଳତା ଲାଭ କରି ଅଛନ୍ତି ତାହା ସ୍ୱର୍ଣ୍ଣାକ୍ଷରେ ଲିପିବଦ୍ଧ ଯୋଗ୍ୟ ।

ଭାଟ୍ଟମତର ଅଗ୍ରଣୀ ତିନିପ୍ରଧାନ ଧର୍ମମତ ମାନି ଅଛନ୍ତି ।

(କ) ପାର୍ଥ ସାରଥି ମିଶ୍ର (୧୨ ଶତାବ୍ଦୀ) କୁ ମିଥିଳା ନିବାସୀ ବୋଲି କୁହାଯାଏ । ସେ ସ୍ୱୀୟ "ତର୍କରତ୍ନ"ର ଦୁପଟ୍ଟୀର ବ୍ୟାଖ୍ୟା କରି ଅଛନ୍ତି ଏବଂ ତର୍କରତ୍ନ ତଥା ଶ୍ଳୋକ ବାର୍ତ୍ତିକର ଟୀକା ଲେଖିଛନ୍ତି । ଏହାଙ୍କର ମୌଳିକ ପ୍ରକରଣ ଗ୍ରନ୍ଥ ଶାସ୍ତ୍ର ଦୀପିକା

Digitized by srujanika@gmail.com

ଭାଟ୍ଟମତର ବିଶେଷ ପ୍ରାମାଣିକ ଏବଂ ଉପାଦେୟ ଗ୍ରନ୍ଥ ବୋଲି ବିବେଚିତ ।

(ଖ) ମାଧବାଚାର୍ଯ୍ୟ ବିଜୟ ନଗର ସାମ୍ରାଜ୍ୟର ସଂସ୍ଥାପକ । ବେଦଭାଷ୍ୟକାର ଶ୍ରୀ ସାୟଣାଚାର୍ଯ୍ୟଙ୍କର ଜ୍ୟେଷ୍ଠଭ୍ରାତା ଥିଲେ । ତାଙ୍କ ପ୍ରଣୀତ "ନ୍ୟାୟମାଳା ବିସ୍ତର" ମୀମାଂସା ସୂତ୍ର ଗୁଡ଼ିକର ବିଶଦ୍ ବ୍ୟାଖ୍ୟା ଅଟେ ।

(ଗ) ଖଣ୍ଡଦେବ ମିଶ୍ର ବିକ୍ରମାଙ୍କ ୧୮ରେ କାଶୀ ପଣ୍ଡିତମାନଙ୍କମଧ୍ୟରେ ଗୋଟିଏ ରତ୍ନ ଥିଲେ । ସେ ଅଧିକରଣ ପ୍ରସ୍ଥାନ ଅବଲମ୍ବନରେ "ଭାଟ୍ଟଦୀପିକା" ପ୍ରଣୟନ କରି ସେ ଭଟ୍ଟ ସୂତ୍ର ଗୁଡ଼ିକର ସ୍ପଷ୍ଟ ବ୍ୟାଖ୍ୟା କରିଅଛନ୍ତି । ତାହାଙ୍କର ଗୁରୁ ବିଶ୍ୱେଶ୍ୱର ଭଟ୍ଟ ଗାଗା ଭଟ୍ଟ ନାମରେ ପରିଚିତ, ଯେ କି ଛତ୍ରପତି ଶିବାଜୀଙ୍କର ରାଜ୍ୟାଭିଷେକ କରାଇ ଥିଲେ । ତାହାଙ୍କ "ଭାଟ୍ଟଚିନ୍ତାମଣି" ମୀମାଂସାମାନଙ୍କର ସରଳବ୍ୟାଖ୍ୟା ଅଟେ । ଏହାଙ୍କ ସମସାମୟିକ ଅପ୍ପୟଦୀକ୍ଷିତ "ବିଧିରସାୟନ" ଏବଂ "ଉପକ୍ରମ ପରାକ୍ରମ" ଗ୍ରନ୍ଥ ରଚନା କରି ମୀମାଂସା ସାହିତ୍ୟର ଶ୍ରୀବୃଦ୍ଧି କରିଛନ୍ତି ।

ଏହା ଛଡ଼ା ଆପଦେବଙ୍କ କୃତ "ମୀମାଂସାନ୍ୟାୟ ପ୍ରକାଶ" ଅତଲୋକପ୍ରିୟ ମୀମାଂସାଗ୍ରନ୍ଥ ଅଟେ । ତାହାଙ୍କ ସୁପ୍ରସିଦ୍ଧ ପୁତ୍ର ଅନନ୍ତଦେବ; ସ୍ୱୀୟ ପିତାଙ୍କ "ମୀମାଂସାନ୍ୟାୟ ପ୍ରକାଶ" ଭାଟ୍ଟାଲଙ୍କାର ନାମକ ପୁସ୍ତକର ବିଶଦ ବ୍ୟାଖ୍ୟା କରି ଅଛନ୍ତି । ସେ ଖଣ୍ଡଦେବଙ୍କ ସମସାମୟିକ ଥିଲେ ।

ପ୍ରଭାକର ମିଶ୍ର ଗୁରୁମତର ସଂସ୍ଥାପକ । ସେ କୁମାରିଲ୍ ଭଟ୍ଟଙ୍କ ଶିଷ୍ୟ ଥିଲେ ଏବଂ ତାହାଙ୍କ ଅଲୌକିକ ପ୍ରତିଭା ନିରୀକ୍ଷଣ କରି ତାହାଙ୍କୁ ଗୁରୁ ଉପାଧି ପ୍ରଦାନ କରିଥିଲେ । ବୃହତୀ ନାମକ ଟୀକାରେ ସେ ଶାବର ଭାଷ୍ୟର ସିଦ୍ଧାନ୍ତ ଗୁଡ଼ିକୁ ସରଳ ଭାଷାରେ ବୁଝାଇଛନ୍ତି । ସେ ବିକ୍ରମଙ୍କ ସମସାମୟିକ ଥିଲେ ।

Digitized by srujanika@gmail.com

ଅଗ୍ରୁଣୀ ଶାଳିକନାଥ ଗୁରୁଙ୍କ ଗ୍ରନ୍ଥ ଉପରେ ପ୍ରାମାଣିକ ବ୍ୟାଖ୍ୟା ଲେଖି ଏହି ମତକୁ ଖୁବ୍ ଗୌରବମୟ କରିଅଛନ୍ତି । ସେ ବୃହତୀ ଉପରେ "ଋଜୁବିମଳା ଟୀକା" ଏବଂ ଲଘ୍ୱୀ ଉପରେ ଦୀପଶିଖା ଟୀକା ଲେଖିଛନ୍ତି, ମାତ୍ର ତାଙ୍କର ସର୍ବଶ୍ରେଷ୍ଠ ଗ୍ରନ୍ଥ ହେଉଛି 'ପ୍ରକରଣ ପଞ୍ଚିକା । ସେ ଉଦୟନ ଅଗ୍ରୁଣୀଙ୍କ ପୂର୍ବବର୍ତ୍ତୀ ଥିବାରୁ ତାଙ୍କୁ ଦଶମ ଶତକର ମଧ୍ୟବର୍ତ୍ତୀ ଲୋକ କୁହାଯାଏ ।

ତୃତୀୟ ସଂପ୍ରଦାୟର ପ୍ରବର୍ତ୍ତକ ମୁରାରି ମିଶ୍ରଙ୍କ ସମ୍ବନ୍ଧରେ ଆମ୍ଭମାନଙ୍କର ଜ୍ଞାନ କମ । ସେ ମଧ୍ୟ ସେ ଯୁଗର ଜଣେ ବିଶିଷ୍ଟ ମୀମାଂସକ ଥିଲେ । ମୀମାଂସାର ପ୍ରଧାନ ସୂତ୍ର ଗୁଡ଼ିକର ସିଦ୍ଧାନ୍ତ ବିଷୟରେ ଭଟ୍ଟ ଏବଂ ଗୁରୁଙ୍କ ମତ ଠାରୁ ଏହାଙ୍କ ମତ ପୃଥକ୍ । ସେହି ହେତୁରୁ ପ୍ରଚଳିତ ଲୋକୋକ୍ତି ଅଛି ଯେ,"ମୁରାରେଃ ତୃତୀୟଃ ପନ୍ଥାଃ" ଗଙ୍ଗେଶ ଉପାଧ୍ୟାୟ 'ତତ୍ତ୍ୱ ଚିନ୍ତାମଣି'ରେ ଏହାଙ୍କ ମତକୁ ଉଲ୍ଲେଖ କରି ଅଛନ୍ତି, ସୁତରାଂ ସେ ୧୨ଶ ଶତାବ୍ଦୀର ଲୋକ ବୋଲି ବିବେଚିତ, ଏହି ଅଗ୍ରୁଣୀ ମାନଙ୍କ ଅକ୍ଲାନ୍ତ ପରିଶ୍ରମ ହେତୁ ମୀମାଂସା ସାହିତ୍ୟ ଏପରି ସମୃଦ୍ଧଶାଳୀ ହୋଇ ପାରିଥିଲା ।

ଅଧିକାଂଶ ମୀମାଂସକ ମଧ୍ୟଯୁଗର ମଣ୍ଡନ ଥିଲେ ।

## ୭—ବେଦାନ୍ତ ଦର୍ଶନ

ବେଦାନ୍ତ ଶାସ୍ତ୍ର ଭାରତୀୟ ଅଧ୍ୟାତ୍ମ୍ୟ ଶାସ୍ତ୍ରର ମୁକୁଟମଣି କହିଲେ ଅତ୍ୟୁକ୍ତି ହେବନାହିଁ । ବେଦର ଅନ୍ତ ସିଦ୍ଧାନ୍ତ ଅଥବା ବେଦାନ୍ତର ଅର୍ଥ ଉପନିଷଦ । ଏହି ଉପନିଷଦ ଗୁଡ଼ିକ ବୈଦିକ ସିଦ୍ଧାନ୍ତରୁ ପ୍ରତିପାଦିତ ହୋଇ ଥିବାରୁ ଏହା ବେଦାନ୍ତ ଶବ୍ଦରୁ ଅଭିହିତ ବୋଲି କହିବା ଯୁକ୍ତିଯୁକ୍ତ; କିନ୍ତୁ ଉପନିଷଦ୍ ଅନେକ । ସେମାନଙ୍କର ସିଦ୍ଧାନ୍ତ ଗୁଡ଼ିକରେ ମଧ୍ୟ ଆପାତତଃ ବିରୋଧ ଭାବ

Digitized by srujanika@gmail.com

ପ୍ରତୀତ ହୋଇଥାଏ । ଏହି ବିରୋଧର ନିବାରଣ ସକାଶେ ମହର୍ଷି ବାଦରାୟଣ ବ୍ୟାସ ସୂତ୍ରମାନ ରଚନା କରିଥିଲେ । ସେହି ସୂତ୍ର ଗୁଚ୍ଛକ ବ୍ରହ୍ମସୂତ୍ର ନାମରେ ଖ୍ୟାତ ।

ଏହି ବ୍ରହ୍ମସୂତ୍ର ଗୁଚ୍ଛକ ପାଣିନିଙ୍କ ଅପେକ୍ଷା ପ୍ରାଚୀନତର, କାରଣ "ପାରାଶର୍ଯ୍ୟ ଶିଳାଲଭ୍ୟାଂ ଭିକ୍ଷୁନଟ ସୂତ୍ରୟୋଃ (୪।୩।୧୧୦) । ଅର୍ଥାତ୍ ବ୍ରହ୍ମସୂତ୍ର ଓ ଭିକ୍ଷୁ ସୂତ୍ର ମଧ୍ୟରେ କୌଣସି ପ୍ରଭେଦ ଥିଲପରି ଜଣାଯାଏ ନାହିଁ ।

ଶ୍ରୀଧର ସ୍ୱାମୀଙ୍କ ସ୍ୱୀକୃତରେ "ବ୍ରହ୍ମସୂତ୍ର ପଦୈଶ୍ଚୈବ ହେତୁ ମଦ୍ଭିର୍ବିନିଶ୍ଚିତୈଃ (୧୩।୪) । ଏହି ପଦ୍ୟାଂଶରେ ଗୀତା ବ୍ରହ୍ମସୂତ୍ରଆବିର୍ଭାବକାଳର ପରିଚୟ ଦେଉଅଛି । ଅତଏବ ଏହି ସୂତ୍ର ଗୁଚ୍ଛକର ଆବିର୍ଭାବ କାଳ ବିକ୍ରମପୂର୍ବ ଷଷ୍ଠ ଶତକ ବୋଲି କୁହାଯାଏ । ବେଦର ଅନ୍ତ=ସିଦ୍ଧାନ୍ତ ଅଥବା ଏହାର ବିକାଶ ସପ୍ତମ ଶତକ ।

କାଳକ୍ରମେ ଏହି ବ୍ରହ୍ମସୂତ୍ର ଗୁଚ୍ଛକର ବ୍ୟାଖ୍ୟା କରୁ କରୁ ବେଦାନ୍ତର ନୂଆ ନୂଆ ସମ୍ପ୍ରଦାୟମାନ ଉତ୍ପତ୍ତି ହେଲା । ଏହି ସମ୍ପ୍ରଦାୟରେ କେତେକ ବିଦ୍ୱାନ୍ ମାନଙ୍କ ଭାଷ୍ୟର ସିଦ୍ଧାନ୍ତ ମାନ ଦିଆଯାଉ ଅଛି ।

ଶଙ୍କରାଚାର୍ଯ୍ୟ ୭୦୦ ଈ, ଶାରୀରକଭାଷ୍ୟ ଅଦ୍ୱୈତ ।
ଭାସ୍କରାଚାର୍ଯ୍ୟ ୧୦୦୦ ଈ, ଭାସ୍କର ଭାଷ୍ୟ ଭେଦାଭେଦ ।
ରାମାନୁଜାଚାର୍ଯ୍ୟ ୧୧୪୦ ଈ, ଶ୍ରୀ ଭାଷ୍ୟ ବିଶିଷ୍ଟାଦ୍ୱୈତ ।

ମୂଳବ୍ରହ୍ମସୂତ୍ରରେ ପ୍ରାୟ ୫୫୦ ସୂତ୍ର ଅଛି । ସୂତ୍ର ଗୁଚ୍ଛକ ଏତେଦୂର ଛୋଟ ଯେ, କୌଣସି ଭାଷ୍ୟର ବିନା ସହାଯ୍ୟରେ ବୁଝିବା ବଡ଼ କଷ୍ଟକର । ତହୁଁ ଭିନ୍ନ ଭିନ୍ନ ଆଚାର୍ଯ୍ୟମାନେ ନିଜ

Digitized by srujanika@gmail.com

ମାନଙ୍କର ଦାର୍ଶନିକ ଦୃଷ୍ଟିରେ ବ୍ୟାଖ୍ୟାମାନ ଲେଖିଯାଇଅଛନ୍ତି । ଏହି ଭାଷ୍ୟକାର ମାନଙ୍କ ମଧ୍ୟରେ ସର୍ବାଧିକ ଭେଦ ହେଉଅଛି ।

## ଜୀବ ଓ ବ୍ରହ୍ମଙ୍କର ସମ୍ବନ୍ଧ

ଶଙ୍କରାଚାର୍ଯ୍ୟଙ୍କ ମତରେ ଜୀବ ଓ ବ୍ରହ୍ମ ମଧ୍ୟରେ କୌଣସି ଭେଦ ନାହିଁ । ଏହି କାରଣରୁ ଶଙ୍କରାଚାର୍ଯ୍ୟଙ୍କ ମତକୁ ଅଦ୍ୱୈତ-ବାଦ ବୋଲି କୁହାଯାଏ ।

ବ୍ରହ୍ମ ସତ୍ୟଂ ଜଗନ୍ମିଥ୍ୟା
ଜୀବୋ ବ୍ରହ୍ମୈବନାପରଃ ।

ଅର୍ଥାତ୍ ଶଙ୍କରଙ୍କ ମତରେ ଜଗତର ସୃଷ୍ଟି ମାୟାରୁ ହୋଇଅଛି । ବ୍ରହ୍ମହିଁ ସତ୍ୟ, ଜଗତର ସତ୍ତା ବ୍ୟାବହାରିକ ଅଟେ ।

ମାୟାଦ୍ୱାରା ବିରଚିତ ହୋଇଥିବାରୁ ଜଗତର ସ୍ୱରୂପ ଅନିର୍ବଚନୀୟ । ଏହି ସିଦ୍ଧାନ୍ତ ପରେ, ବୈଷ୍ଣବାଚାର୍ଯ୍ୟଙ୍କୁ ଯୁକ୍ତି ସଙ୍ଗତ ବୋଲି ଜଣାଯାଇ ନ ଥିଲା, ତେଣୁ ତାଙ୍କ ମତରେ କେବଳ ଭକ୍ତି ଦ୍ୱାରା ଜୀବ ଦୁଃଖମୟ ସଂସାରରୁ ଉଦ୍ଧାର ହୋଇ ପାରିବ, ତେଣୁ ଭକ୍ତିବାଦର ରକ୍ଷଣ ନିମନ୍ତେ ଅତି ସତର୍କତାର ସହିତ ସେ ମାୟା-ବାଦକୁ ଖଣ୍ଡନ କରିଅଛନ୍ତି । ସର୍ବପ୍ରଥମେ ଭାସ୍କରାଚାର୍ଯ୍ୟ ଅଦ୍ୱୈତବାଦର ଖଣ୍ଡନ କରିବାକୁ ଯାଇ ଅଛନ୍ତି । ତାଙ୍କ ମତରେ ଜୀବ ଓ ଈଶ୍ୱର ସାଂସାରିକ ଅବସ୍ଥାରେ ଭିନ୍ନ ଅଟନ୍ତି । କିନ୍ତୁ ପରମାର୍ଥ ଅବସ୍ଥାରେ ସମ୍ପୂର୍ଣ୍ଣ ଅଭିନ୍ନ । ଏହି କାରଣରୁ ଏହି ମତକୁ ଭେଦାଭେଦ ବୋଲି କୁହାଯାଏ । ଭାସ୍କର କୌଣସି ଧର୍ମ ମତ ପ୍ରକାଶ କରି ନାହାନ୍ତି । ତେଣୁ ତାଙ୍କ ମତାବଲମ୍ବୀ ପଣ୍ଡିତ ଅତି କମ୍ ।

Digitized by srujanika@gmail.com

ସ୍ୱାମୀ ରାମାନୁଜାଚାର୍ଯ୍ୟ—ଏହି ସୂତ୍ରର ବ୍ୟାଖ୍ୟା କରିବାକୁ ଯାଇ ୧ ବିଶିଷ୍ଟାଦ୍ୱୈତବାଦ ପ୍ରକାଶ କଲେ । ୨ ନିମ୍ବାର୍କ—ଦ୍ୱୈତା-ଦ୍ୱୈତବାଦ । ୩ ମାଧ୍ୱ ଦ୍ୱୈତବାଦ । ୪ ବଲ୍ଲଭ ଶୁଦ୍ଧା ଦ୍ୱୈତବାଦ ଏବଂ ୫ ଚୈତନ୍ୟ ମତାବଲମ୍ବୀ ବଳଦେବ ବିଦ୍ୟାଭୂଷଣ ଅଚିନ୍ତ୍ୟ ଭେଦାଭେଦ ବାଦ ପ୍ରକାଶ କଲେ, ବେଦାନ୍ତର ଏହି ପାଞ୍ଚଟି ମତ ଅଛି ।

ଏହିମତରେ ଜୀବ ଏବଂ ଈଶ୍ୱରଙ୍କର ସମ୍ବନ୍ଧ ଖୁବ୍ ଭିନ୍ନ । କିନ୍ତୁ ଅନ୍ୟ ସିଦ୍ଧାନ୍ତରେ ଜୀବ ଏବଂ ଈଶ୍ୱର ଅଭେଦ । ବେଦାନ୍ତ ସଂପ୍ରଦାୟମାନେ ଏହି ସିଦ୍ଧାନ୍ତ ଗୁଡ଼ିକୁ ସମଭାବରେ ମାନନ୍ତି ।

୧ । ବ୍ରହ୍ମହିଁ ଏହି ଜଗତର ମୂଳକାରଣ । ଅର୍ଥାତ୍ ଏହି ଜଗତର ଉତ୍ପତ୍ତି, ସ୍ଥିତି, ଏବଂ ଲୟ ଏକ ଚେତନ ତତ୍ତ୍ୱରୁ ସୃଷ୍ଟି । କୌଣସି ଅଚେତନ ଜଡ଼ ପଦାର୍ଥରୁ ଜଗତର ସୃଷ୍ଟି ହୋଇ ନ ପାରେ, ଯେପରି ସାଂଖ୍ୟଦର୍ଶନରେ ଅଚେତନ ପ୍ରକୃତିରୁ ଜଗତର ସୃଷ୍ଟି ହୋଇଅଛି ।

୨ । ବ୍ରହ୍ମ ସର୍ବଜ୍ଞ ବ୍ୟାପକ ଓ ନିତ୍ୟ ।

୩ । ମୁଖ୍ୟତଃ ଉପନିଷଦ୍ ସିଦ୍ଧାନ୍ତ ଗ୍ରନ୍ଥ ଅଟେ ଏବଂ ଉପନିଷଦରୁ ଉଦ୍ଧୃତ ହୋଇଥିବାରୁ ଭଗବତ୍‌ଗୀତା ଏବଂ ବ୍ରହ୍ମସୂତ୍ର ସିଦ୍ଧାନ୍ତର ପ୍ରତିପାଦକ ଅଟେ ।

୪ । ବ୍ରହ୍ମ ଇନ୍ଦ୍ରିୟାତୀତ ଅଟେ । ଆଧ୍ୟାତ୍ମିକ ବିଷୟ ଗୁଡ଼ିକ ବେଦରୁ ବହୁପରିମାଣରେ ମିଳେ । ତର୍କର ପ୍ରାମାଣିକତା ଶ୍ରୁତିର ଅନୁକୂଳ ହେଉଥିବା ପର୍ଯ୍ୟନ୍ତ ତାହା ଆଦର ପାଉଥାଏ । ତେଣୁ ଏହି ସୂକ୍ଷ୍ମବିଷୟ ଗୁଡ଼ିକର ଆଲୋଚନା କଲାବେଳେ ଆମ୍ଭମାନଙ୍କୁ ଶ୍ରୁତିର ଅନୁକରଣ କରିବାକୁ ପଡ଼ିବ ।

Digitized by srujanika@gmail.com

୫ । କର୍ମ, ଜ୍ଞାନ ଅପେକ୍ଷା ଗୌଣ । କର୍ମର ଉପଯୋଗିତା ଏହି ଯେ, ସେ ଚିତ୍ତ ଶୁଦ୍ଧି କରେ ଏବଂ ମୁକ୍ତିମାର୍ଗ ନିର୍ମାଣକରିବାରେ ପ୍ରଧାନ ସହାୟକ ଅଟେ । ବ୍ୟାବହାରିକ ଜଗତରେ କର୍ମର ଅପେକ୍ଷା ଅଟେ । ପରନ୍ତୁ ମୁକ୍ତି ନିମିତ୍ତ କର୍ମର ସଂନ୍ୟାସ ଶ୍ରେୟସ୍କର ।

୬ । ଏହି ଅନାଦି ସଂସାରରେ ମୁକ୍ତି ପାଇବା ଆମ୍ଭମାନଙ୍କର ଅତ୍ୟନ୍ତ ଉଦ୍ଦେଶ୍ୟ ।

### ଶଙ୍କରଙ୍କମତର ବୈଶିଷ୍ଟ୍ୟ

ଅନ୍ୟମତ ଅପେକ୍ଷା ଶଙ୍କରଙ୍କମତରେ ଅନେକସିଦ୍ଧାନ୍ତରେ ବିଶିଷ୍ଟତା ଦେଖାଯାଏ ।

୧ । ଶଙ୍କର ମାୟାବାଦକୁ ମାନନ୍ତି କିନ୍ତୁ ଅନ୍ୟ ଆଚାର୍ଯ୍ୟମାନେ 'ମାୟାବାଦ' ଭକ୍ତିର ବିରୋଧୀ ହେତୁ ଅଗ୍ରାହ୍ୟ କରନ୍ତି । ଆଚାର୍ଯ୍ୟ ଶଙ୍କର ମାୟାବାଦର ଉଦ୍ଭାବକ, ଏହା କହିବା ଅସଙ୍ଗତ ନୁହେଁ କାରଣ ମାୟାର ବର୍ଣ୍ଣନା ସଂହିତାରେ ଅଛି । ଶଙ୍କର କେବଳ ନିଜର ପରମଗୁରୁ ଗୌଡ଼ପାଦାଚାର୍ଯ୍ୟଙ୍କ ବିରଚିତ ମାଣ୍ଡୁକ୍ୟ କାରିକାରେ ନିର୍ଦ୍ଧାରିତ ଏହି ସିଦ୍ଧାନ୍ତକୁ ପରିପୁଷ୍ଟ କରିଛନ୍ତି । ବ୍ରହ୍ମସତ୍ୟ ଏବଂ ଜଗତ୍ ମାୟା ପୂର୍ଣ୍ଣ ଅର୍ଥାତ୍ ମାୟାଜନ୍ୟ ଅଟେ । ଆଚାର୍ଯ୍ୟଙ୍କ ମତରେ ମାୟାର ସତ୍ତା ତିନି ପ୍ରକାର ଯଥା—ପାରମାର୍ଥିକ ସତ୍ତା (ବ୍ରହ୍ମହିଁ ଏକମାତ୍ର ସତ୍ୟପଦାର୍ଥ ଅଟେ); ବ୍ୟାବହାରିକ ସତ୍ତା, ଜଗତ୍ ସମ୍ପୂର୍ଣ୍ଣ ସତ୍ୟ ଅଟେ । ବିଜ୍ଞାନ ବାଦୀ ବୌଦ୍ଧମାନେ ଜଗତ୍ ଅସତ୍ୟ ବୋଲି କହିଅଛନ୍ତି; କିନ୍ତୁ ଶଙ୍କର ବ୍ରହ୍ମସୂତ୍ର ଭାଷ୍ୟରେ ଏହାର ଯୁକ୍ତିଯୁକ୍ତ ଖଣ୍ଡନକରି ଜଗତର ସତ୍ୟତା ପ୍ରତିପାଦନ କରିଅଛନ୍ତି କିନ୍ତୁ ଏହିସତ୍ୟତା କେବଳ ବ୍ୟବହାର ନିମିତ୍ତ କରା ଯାଇଅଛି । ପ୍ରାତିଭାସିକ ସତ୍ତା ଶୁକ୍ତିରେ ରଜତର ସତ୍ତା ଅଟେ,

Digitized by srujanika@gmail.com

ମାୟାଜନ୍ୟ ହେଲେହେଁ ଏହି ଜଗତ୍ ଆକାଶ କୁସୁମପରି ଅଳୀକ ନୁହେଁ ।

୨ । ବ୍ରହ୍ମଙ୍କର ଦୁଇଟି ସ୍ୱରୂପ, ସଗୁଣ ଓ ନିର୍ଗୁଣ । ମାୟାବଶିଷ୍ଟ ବ୍ରହ୍ମକୁ ସଗୁଣ କୁହାଯାଏ । ଏହାହିଁ ଈଶ୍ୱର ଅଟେ । ଏହି ଈଶ୍ୱରହିଁ ଏହି ଜଗତର କର୍ତ୍ତା ଓ ହର୍ତ୍ତା ପାତା ଅଟନ୍ତି କିନ୍ତୁ ନିର୍ଗୁଣ ବ୍ରହ୍ମର ମାୟା ସହିତ କିଛି ମାତ୍ର ସମ୍ବନ୍ଧ ନାହିଁ । ଏହା ଅଖଣ୍ଡ, ସର୍ବବ୍ୟାପୀ, ସଚ୍ଚିଦାନନ୍ଦ ସ୍ୱରୂପ ଅଟେ । ନିର୍ଗୁଣବ୍ରହ୍ମ ସର୍ବଶ୍ରେଷ୍ଠ ସତ୍ୟରୂପ ଅଟେ ଈଶ୍ୱର ତାହା ଅପେକ୍ଷା ନ୍ୟୁନ, ଓ ମାୟିକ ଅଟନ୍ତି । ଅନ୍ୟାନ୍ୟ ଦାର୍ଶନିକମାନେ ବ୍ରହ୍ମ ଏବଂ ଈଶ୍ୱର ମଧ୍ୟରେ ଏହିପ୍ରକାର ପାର୍ଥକ୍ୟ ମାନନ୍ତି ନାହିଁ ।

୩ । ଜ୍ଞାନଦ୍ୱାରା ମୁକ୍ତିମିଳେ, କର୍ମର ସନ୍ନ୍ୟାସ କରାଯାଏ । କର୍ମର ଉପଯୋଗ କେବଳ ଚିତ୍ତ ଶୁଦ୍ଧି ନିମିତ୍ତ ଆବଶ୍ୟକ ହୁଏ । ପ୍ରକୃତ କ୍ଳେଶ ନାଶ, ବ୍ରହ୍ମର ସାକ୍ଷାତ୍କାର କରିବା ଦ୍ୱାରାହିଁ ହୋଇଥାଏ, ବୈଷ୍ଣବାଚାର୍ଯ୍ୟଙ୍କ ସିଦ୍ଧାନ୍ତ ଏହାର ବିରୋଧ ଅଟେ । ତହିଁରେ ସର୍ବ-ପ୍ରାଚୀନ ଆଚାର୍ଯ୍ୟ ରାମାନୁଜଙ୍କ ମତକୁ ବିଶିଷ୍ଟା ଦ୍ୱୈତ କୁହାଯାଏ ।

ରାମାନୁଜଙ୍କ ମତରେ ଈଶ୍ୱର ଅଖିଳସଦ୍‌ଗୁଣର ନିକେତନ ଅଟନ୍ତି । ଅତଏବ ବ୍ରହ୍ମ ସଗୁଣ କିନ୍ତୁ ନିର୍ଗୁଣ ନୁହେଁ । ଜୀବ ଓ ଜଗତ୍ ବ୍ରହ୍ମର ପୃଥକ୍ ଦୁଇଟି ଆକାର । ଏହି ଜୀବ ଜଗତ୍ ଅପେକ୍ଷା ବିଶିଷ୍ଟ ଈଶ୍ୱର ଏକ ଅଟନ୍ତି । ସେଥିନିମିତ୍ତ ଏହି ସିଦ୍ଧାନ୍ତକୁ ଅଦ୍ୱୈତ ନ କହି ବିଶିଷ୍ଟାଦ୍ୱୈତ କୁହାଯାଏ । ଆଚାର୍ଯ୍ୟ ନିମ୍ବାର୍କଙ୍କ ମତରେ ଜୀବ ଏବଂ ଈଶ୍ୱର ବ୍ୟବହାର କାଳରେ ଭିନ୍ନ ଭିନ୍ନ ଅଟନ୍ତି । ଏହି କାରଣରୁ ଏହି ମତ ଦ୍ୱୈତାଦ୍ୱୈତ କୁହାଯାଏ ।

ମାଧ୍ୱଙ୍କ ମତରେ ୧ ଜୀବ ଏବଂ ଈଶ୍ୱରଙ୍କ ଭିତରେ କୌଣସି ଏକତା ନାହିଁ, ସେ ଦୁଇଟି ସର୍ବଦା ଭିନ୍ନ । ଅନ୍ୟ ସିଦ୍ଧାନ୍ତକମାନେ

Digitized by srujanika@gmail.com

ଅନେକତା ଏବଂ ଏକତାର କଥମପି ସମନ୍ୱୟ କରିବାକୁ ଚେଷ୍ଟା କରିଛନ୍ତି କିନ୍ତୁ ମାଧ୍ୱଙ୍କ ମତରେ ଏହି ସମନ୍ୱୟ ଅସମ୍ଭବ ଅର୍ଥାତ୍ ସଦା ଅବିଚ୍ଛିନ୍ନ ଦ୍ୱୈତ ରହିଥାଏ । ୨ ଈଶ୍ୱର ଏହି ଜଗତର ନିମିତ୍ତ କାରଣ ଅଟନ୍ତି ; ଉପାଦାନ କାରଣ ନୁହନ୍ତି । କିନ୍ତୁ ଅନ୍ୟାନ୍ୟ ଆଚାର୍ଯ୍ୟଙ୍କ ମତରେ ସେ ଉଭୟ ଅଟନ୍ତି । ଅର୍ଥାତ୍ ନିମିତ୍ତ କାରଣ ଓ ଉପାଦାନ କାରଣ, ସେଥି ନିମିତ୍ତ ଏହି ମତକୁ ଦ୍ୱୈତ ମତ କୁହାଯାଏ । ବଲ୍ଲଭାଚାର୍ଯ୍ୟ ମାୟାବାଦକୁ ନ ମାନି କେବଳ ଅଦ୍ୱୈତବାଦକୁ ମାନନ୍ତି । ଅତଏବ ତାଙ୍କର ମତକୁ ଶୁଦ୍ଧ ଅଦ୍ୱୈତମତ କୁହାଯାଏ । ଅର୍ଥାତ୍ ମାୟାମିଶ୍ରିତ ଅଦ୍ୱୈତ ନୁହେଁ । ଐତିହାସିକ ଦୃଷ୍ଟିରୁ ଚୈତନ୍ୟ ସମ୍ପ୍ରଦାୟ ମାଧ୍ୱମତର ଏକ ଶାଖା ଅଟେ; କିନ୍ତୁ ଦାର୍ଶନିକ ମତରେ ସମ୍ପୂର୍ଣ୍ଣ ଭିନ୍ନ । ଏହି ମତରେ ଈଶ୍ୱର ଏବଂ ଜୀବ ମଧ୍ୟରେ ଭେଦ ଏବଂ ଅଭେଦ ରହିଅଛି । କିନ୍ତୁ ଈଶ୍ୱର ଅଚିନ୍ତ୍ୟ ଅଲୌକିକ ଶକ୍ତି ସମ୍ପନ୍ନ । ଈଶ୍ୱରଙ୍କର ଏହା ଅଚିନ୍ତ୍ୟମୟ ଲୀଳା ଅଟେ ।

ବୈଷ୍ଣବମତମାନଙ୍କର ଐକ୍ୟ ନିମ୍ନଲିଖିତ ବାକ୍ୟରୁ ଜଣାଯିବ ।

୧ । ଭକ୍ତିହିଁ ମୋକ୍ଷର ସାଧିକା ।

୨ । ବ୍ରହ୍ମହିଁ ଈଶ୍ୱର, ଯେ କି ଅନନ୍ତ ଶୁଭ୍ର ଗୁଣମାନଙ୍କର ନିକେତନ ଅଟନ୍ତି ।

୩ । ଚେତନ ଜୀବ ଏବଂ ଜଡ଼ଜଗତ ଈଶ୍ୱରଙ୍କ ସଦୃଶ ସତ୍ୟ ଅଟନ୍ତି । ଏମାନଙ୍କ ସତ୍ୟତାରେ କିଛିମାତ୍ର ଭେଦ ନାହିଁ ।

୪ । ଜୀବ ଏବଂ ଈଶ୍ୱର ଭିତରେ ପରସ୍ପର ଭେଦ । ପରସ୍ପର ଭେଦ କେବେହେଁ ସମ୍ପୂର୍ଣ୍ଣ ନଷ୍ଟ ହୁଏ ନାହିଁ । ପୃଥକ୍ ବ୍ୟକ୍ତିତ୍ୱ ଆକାର ଧାରଣ କରି ସେମାନେହିଁ ଥାନ୍ତି ।

Digitized by srujanika@gmail.com

୫ । ଜୀବ ସ୍ୱରୂପତଃ ଅଣୁ ଅଟେ ବିଭୁ ନୁହେଁ ଏବଂ ସଂଖ୍ୟାରେ ଅନନ୍ତ ଅଟେ ଜ୍ଞାନ ଏବଂ କ୍ରିୟା ନିଜ ନିଜର ଶକ୍ତି ଅନୁସାରେ ସର୍ବଥା ସମ୍ପନ୍ନ ଅଟନ୍ତି ।

୬ । ବିଷ୍ଣୁ ହିଁ ଈଶ୍ୱର, ଅତଏବ ବିଷ୍ଣୁଙ୍କର ଭିନ୍ନ ଭିନ୍ନ ଅବତାର ଅର୍ଥାତ୍ ମୂର୍ତ୍ତିପୂଜା ଏହି ମତରେ ବିଶେଷ ଅଙ୍ଗ । ରାମାନୁଜ ଏବଂ ମାଧ୍ୱ, ଲକ୍ଷ୍ମୀ ନାରାୟଣ ପୂଜକ । ନିମ୍ବାର୍କ ବଲ୍ଲଭ ଓ ଚୈତନ୍ୟ ରାଧାକୃଷ୍ଣଙ୍କ ପୂଜକ ।

---

୧ । ଆତ୍ମାନାତ୍ମ ପରୀକ୍ଷାୟାଂ କ୍ରିୟମାଣାୟାମାବଶ୍ୟକାନାଂ ପଦାର୍ଥୋଦ୍ଦେଶ୍ୟ ଲକ୍ଷଣ ପରୀକ୍ଷାଣଃ ପ୍ରତିପାଦନେନାନାତ୍ମବାଦ ନିରାକରଣକର୍ତ୍ତା ମହର୍ଷିର୍ଗୌତମଃ ।

ଆତ୍ମଅନାତ୍ମ ପରୀକ୍ଷା କଲା ସମୟରେ ଅନାତ୍ମବାଦ ନିରାକରଣ କର୍ତ୍ତା ମହର୍ଷି ଗୌତମ ।

୨ । ମହର୍ଷି ଗୌତମାଦ୍ୟୁକ୍ତାର୍ଥେ ବିଶେଷତଃ ପଦାର୍ଥ ବିଭାଗାଦି ପ୍ରତିପାଦୟିତା ମହର୍ଷି କଣାଦଃ ।

ମହର୍ଷି ଗୌତମଙ୍କ କଥାରେ ପଦାର୍ଥ ବିଭାଗର ପ୍ରତିପାଦୟିତା କଣାଦ ।

୩ । ପ୍ରଧାନାଧୀନଂ ସୁଖ ଦୁଃଖାଦିକଂ ତତୋଽନ୍ୟଃ ପୁରୁଷ ଏବାତ୍ମା ଇତ୍ୟାଦି ବକ୍ତା ମହର୍ଷିଃ କପିଳଃ ।

ସମସ୍ତ ସୁଖ ଦୁଃଖ ପ୍ରଭୃତି ପ୍ରକୃତିର ଅଧୀନ, ତାହାଠାରୁ ଅନ୍ୟ ଅଟେ ଯେ, ସେ ପୁରୁଷ, ସେହି ହେଉଛି ଆତ୍ମା, ଏହି କଥାର ପ୍ରତିପାଦକ ମହର୍ଷି କପିଳ ।

Digitized by srujanika@gmail.com

୪ । ଅସ୍ମାନାସ୍ମ ଶରୀରୋପଯୋଗିମାର୍ଗପ୍ରଦର୍ଶକ ଉପାସନା କାଣ୍ଡ ପ୍ରଧାନ ବାଦୀ ପତଞ୍ଜଳିଃ ।

ଅସ୍ମଅନାସ୍ମ ଶରୀରୋପଯୋଗିମାର୍ଗପ୍ରଦର୍ଶକ ପୁଣି ଉପାସନା ମାର୍ଗର ପ୍ରଧାନ ପ୍ରବର୍ତ୍ତକ ମହର୍ଷି ପତଞ୍ଜଳି ।

୫ । ସ୍ୱର୍ଗ ନରକାଦିକଂ କର୍ମାୟୁତମିତ କର୍ମ ପ୍ରାଧାନ୍ୟବାଦୀ ମହର୍ଷି ଜୈମିନିଃ ।

ସ୍ୱର୍ଗ ନରକ ପ୍ରଭୃତି ସମସ୍ତ କର୍ମାଧୀନ, ଏହି କଥାର ପ୍ରତିପାଦକ କର୍ମପ୍ରାଧାନ୍ୟବାଦୀ ମହର୍ଷି ଜୈମିନି ।

୬ । ଅସ୍ମଜ୍ଞାନମେବ ସୁଖଂ ତତୋଽନ୍ୟତ୍ ଅବିଦ୍ୟା କଳ୍ପିତଂ ମିଥ୍ୟା ଇତ୍ୟେବ ପ୍ରୟୋଜକାନ ଇତରାଣି ସର୍ବାଣି ଆସ୍ତିକ ଦର୍ଶନାନ ଇତିବାଦୀ ପରମ କୃପାଳୁଃ ମହର୍ଷି ବ୍ୟାସଃ ।

ଏହି ଜଗତରେ, ଅସ୍ମଜ୍ଞାନ କେବଳ ସୁଖ, ତହିଁରୁ ଅନ୍ୟ ଯେତେ, ସବୁ ଅବିଦ୍ୟାକଳ୍ପିତ ଓ ମିଥ୍ୟା, ଏହି ମତର ପ୍ରଚାରକ ପରମକାରୁଣିକ ମହର୍ଷି ବ୍ୟାସ ।

---

# ବେଦ ରହସ୍ୟ

ବେଦ ହିନ୍ଦୁଧର୍ମର ସର୍ବସ୍ୱ । ଏହା ଅସ୍ମମାନଙ୍କର ପ୍ରାଚୀନ ଗ୍ରନ୍ଥ । ଭାରତୀୟ ଧର୍ମଜଗତରେ ଯେଉଁ ନିଷ୍ଠା ପରିଲକ୍ଷିତ ହୁଏ, ତାହାର ମୂଳତତ୍ତ୍ୱ ବେଦରୁ ମିଳେ । ମହର୍ଷି ମାନଙ୍କର ଅନୁଭୂତ ତତ୍ତ୍ୱ ସବୁକୁ ବେଦ ସାକ୍ଷାତରେ ପ୍ରତିପାଦନ କରେ । ଅବଶ୍ୟ ସ୍ମୃତି ଓ ପୁରାଣକୁ ଅସ୍ମେମାନେ ମାନୁ; ମାତ୍ର ସେଗୁଡ଼ିକ ବେଦର ଅନୁକୂଳ ହୋଇଥିବା ହେତୁ ସେମାନଙ୍କର ମହତ୍ତ୍ୱ ବଢ଼ିଅଛି । ଶ୍ରୁତି ଓ ସ୍ମୃତି ମଧ୍ୟରେ ଯଥେଷ୍ଟ ପାର୍ଥକ୍ୟ ଅଛି; ମାତ୍ର ଶ୍ରୁତି ଅଧିକ

Digitized by srujanika@gmail.com

ଗରିସ୍ଥାନ୍ ଅଟେ । ଯାହା ବେଦରେ ଲେଖାଅଛି ଏବଂ ମନୁଷ୍ୟର ଆବଶ୍ୟକ ପଦାର୍ଥ ଗୁଡ଼ିକର ଉତ୍ପନ୍ନ କରିବାରେ ଯାହା ସାହାଯ୍ୟ କରେ ତାହାକୁ ଧର୍ମ କୁହାଯାଏ । ଅନ୍ୟଭାବରେ ମଧ୍ୟ ବେଦର ବିଶେଷ ମହତ୍ତ୍ୱ ଅଛି । ପୃଥିବୀରେ ବେଦ ସର୍ବପ୍ରାଚୀନ ଗ୍ରନ୍ଥ । ଆର୍ଯ୍ୟମାନଙ୍କର ସଭ୍ୟତା ଏବଂ ସଂସ୍କୃତି ସମାଜ ଏବଂ ଧର୍ମ ବେଦରୁ ଜଣାଯାଏ । ଧର୍ମର ବିକାଶ କିପରି ହେଲା ବେଦାଧ୍ୟୟନରୁ ତାହା ଜଣାଯାଏ । ଆର୍ଯ୍ୟଭାଷାର ମୂଳସ୍ୱରୂପ ବୈଦିକ ଭାଷାରୁ ଅନୁମିତ ହୁଏ ।

ବେଦ ଦୁଇଭାଗରେ ବିଭକ୍ତ । ସଂହିତା ଏବଂ ବ୍ରାହ୍ମଣ । ମନ୍ତ୍ରମାନଙ୍କର ସମଷ୍ଟିକରଣ ସଂହିତା । ବ୍ରାହ୍ମଣରେ ମନ୍ତ୍ରମାନଙ୍କର ବିସ୍ତୃତ ବ୍ୟାଖ୍ୟା ଥାଏ । ବିଶେଷତଃ ଯାଗଯଜ୍ଞ ପ୍ରଭୃତିର ସବିସ୍ତର ବିବରଣ ବ୍ରାହ୍ମଣରେ ମିଳେ । ବ୍ରାହ୍ମଣ ତିନିଭାଗରେ ବିଭକ୍ତ । (୧) ସ୍ୱୟଂ ବ୍ରାହ୍ମଣ, (୨) ଆରଣ୍ୟକ (୩) ଉପନିଷଦ୍ ।

ଆରଣ୍ୟକ ଗ୍ରନ୍ଥ ଜନସାଧାରଣଙ୍କଠାରୁ ବହୁଦୂର ଜଙ୍ଗଲରେ ପଢ଼ିଅଛି । ଅର୍ଥାତ୍ ଅତି କମ୍ ଲୋକ ତାକୁ ଜାଣନ୍ତି । ଏଥିରେ ଯଜ୍ଞର ଆଧ୍ୟାତ୍ମିକ ବିବରଣ ବର୍ଣ୍ଣନା କରାଯାଇଅଛି । ଗୃହସ୍ଥ ସକାଶେ ବ୍ରାହ୍ମଣ ଉପାଦେୟ । ମାତ୍ର ଆରଣ୍ୟକ, ବାନପ୍ରସ୍ଥ ଆଶ୍ରମରେ ଯେଉଁମାନେ ଜୀବନ ଅତିବାହିତ କରନ୍ତି ସେମାନଙ୍କ ପ୍ରତି ହିତକର ଉପନିଷଦର ତାତ୍ପର୍ଯ୍ୟ ବ୍ରହ୍ମବିଦ୍ୟା, ତାହାର ଅନୁଶୀଳନରେ ଲୋକ ସାଂସାରିକ କ୍ଳେଶରୁ ମୁକ୍ତ ଲାଭକରି ଅସୀମ ସୁଖ ଲାଭ କରିପାରେ । ଉପନିଷଦ୍ ବୈଦିକ ସାହିତ୍ୟର ଅନ୍ତଭାଗ ( ଶେଷଭାଗ ) । ସୁତରାଂ ତାହାକୁ ବେଦାନ୍ତ ମଧ୍ୟ କୁହାଯାଏ । ଆଉମଧ୍ୟ ଉପନିଷଦର ସାରାଂଶ ହେଉଅଛି ଭଗବତ୍ ଗୀତା । ବ୍ରହ୍ମସୂତ୍ରରେ ବାଦରାୟଣ ବ୍ୟାସ ଉପନିଷଦର ସିଦ୍ଧାନ୍ତ ଗୁଡ଼ିକ ବ୍ୟବସ୍ଥିତ ରୂପେ ଦେଖାଇ ଅଛନ୍ତି ।

Digitized by srujanika@gmail.com

ତାହା ନିମ୍ନଭାଗରେ ବିଭକ୍ତ । ( ୧ ) ଉପନିଷଦ୍ ( ୨ ) ବ୍ରହ୍ମସୂତ୍ର ( ୩ ) ଭଗବଦ୍ ଗୀତା । ଏହି ତିନିଗୋଟି ଲୋକସମାଜରେ "ପ୍ରସ୍ଥାନତ୍ରୟୀ" ନାମରେ ବିଖ୍ୟାତ । ବିଷୟ ଦୃଷ୍ଟିରୁ ବେଦ ଦୁଇ ଭାଗରେ ବିଭକ୍ତ । କର୍ମକାଣ୍ଡ, ଜ୍ଞାନକାଣ୍ଡ । ସଂହିତା ବ୍ରାହ୍ମଣ ଏବଂ ଆରଣ୍ୟକରେ ପ୍ରଧାନତଃ କର୍ମର ବିସ୍ତାର କରାଯାଇ ଅଛି । ସୁତରାଂ ଏହାକୁ କର୍ମକାଣ୍ଡରେ ଅନ୍ତର୍ଗତ କରିବା ବିଧେୟ । ଉପନିଷଦର ପ୍ରଧାନ ବିଷୟ ହେଉଛି ଜ୍ଞାନ ବିସ୍ତାର । ଏହିହେତୁ ଉପନିଷଦ ଜ୍ଞାନକାଣ୍ଡ ନାମରେ ପ୍ରସିଦ୍ଧ ।

କୌଣସି ଦେବତା ବିଶେଷର ସ୍ତୁତିରେ ବ୍ୟବହୃତ ହୋଇଥିବା ଅର୍ଥକୁ ସ୍ମରଣ କରାଉଥିବା ବାକ୍ୟକୁ ମନ୍ତ୍ର କୁହାଯାଏ । ଏହି "ମନ୍ତ୍ର" ଗୁଡ଼ିକର ସଂକଳନକୁ ସଂହିତା କୁହାଯାଏ ।

## ସଂହିତା ଚାରି ପ୍ରକାର

(୧) ଋକ୍ ସଂହିତା, (୨) ଯଜୁଃ ସଂହିତା, (୩) ସାମ ସଂହିତା, (୪) ଅଥର୍ବ ସଂହିତା । ମହର୍ଷି ବେଦବ୍ୟାସ ଯଜ୍ଞର ଆବଶ୍ୟକତା ଦୃଷ୍ଟିରୁ ଏହି ସଂହିତା ଗୁଡ଼ିକର ସଂକଳନ କରିଅଛନ୍ତି । ଯଜ୍ଞ ନିମିତ୍ତ ଚାରିଗୋଟି ଋତ୍ୱିଜର ଆବଶ୍ୟକତା ହୁଏ । (୧) ହୋତା (୨) ଅଧ୍ୱର୍ଯ୍ୟୁ (୩) ଉଦ୍‌ଗାତା (୪) ବ୍ରହ୍ମା । ହୋତା ଅର୍ଥ, ଆହ୍ୱାନ କରିବା । ହୋତା, ଯଜ୍ଞର ବିଶିଷ୍ଟ ଦେବତାଙ୍କର ପ୍ରଶଂସାତ୍ମକ ମନ୍ତ୍ରଗୁଡ଼ିକୁ ଉଚ୍ଚାରଣ କରି ସେ ଦେବତାଙ୍କୁ ଆହ୍ୱାନ କରେ, ସେଥିପାଇଁ ଆବଶ୍ୟକ ମନ୍ତ୍ର ଗୁଡ଼ିକର ସଂକଳନ ଯେଉଁ ସଂହିତାରେ କରାଯାଇ ଅଛି ତାର ନାମ ଋଗ୍ୱିକ୍ ସଂହିତା । ଅର୍ଥାତ୍ ଋଗ୍‌ବେଦ । ଅଧ୍ୱର୍ଯ୍ୟୁ—ଅର୍ଥ-ଯଜ୍ଞର ବିଧିବତ୍ ସମ୍ପାଦକ, ସେଥିପାଇଁ ଆବଶ୍ୟକ ମନ୍ତ୍ର ସମୁଦାୟକୁ ଯଜୁଃ ସଂହିତା କୁହାଯାଏ । ଉଦ୍‌ଗାତା—ଅର୍ଥ, ଯେ ଉଚ୍ଚସ୍ୱରରେ ଗାନ କରନ୍ତି । ଏହାଙ୍କର କାର୍ଯ୍ୟ, ମନ୍ତ୍ର

Digitized by srujanika@gmail.com

ଉପରେ ସ୍ୱର ଲଗାଇ ସେମାନଙ୍କୁ ମଧୁରସ୍ୱରରେ ଗାଇବା । ସେଥିପାଇଁ ସାମବେଦର ସଂକଳନ କରାଯାଇଅଛି । ବ୍ରହ୍ମା ଅର୍ଥ ଯେ, ଯଜ୍ଞର ବିଧିକୁ ପୂର୍ଣ୍ଣରୂପରେ ନିରୀକ୍ଷଣ କରନ୍ତି ଯେପରିକି ଅନୁଷ୍ଠାନରେ କୌଣସି ତ୍ରୁଟି ନ ରହେ । ବ୍ରହ୍ମାଙ୍କର ସମଗ୍ର ବେଦରେ ଜ୍ଞାନ ରହିବା ଉଚିତ, ମାତ୍ର ତାର ବିଶିଷ୍ଟ ବେଦ ହେଉଛି ଅଥର୍ବ ବେଦ ।

ବେଦର ଅନ୍ୟନାମ "ତ୍ରୟୀ" କାରଣ ଏଥିରେ ତିନିପ୍ରକାର ପଦାର୍ଥ ପ୍ରଧାନତଃ ଦେଖାଯାଏ । ଋକ୍, ସାମ ଏବଂ ଯଜୁଃ । ପାଦଯୁକ୍ତ ଛନ୍ଦୋବଦ୍ଧ ମନ୍ତ୍ରଗୁଡ଼ିକୁ ଋକ୍ ବା ଋଚ୍ କୁହାଯାଏ । ଏହି ଋଚ୍ମାନଙ୍କର ଗାୟନକୁ ସାମ କୁହାଯାଏ । ଏହି ଉଭୟଙ୍କ ପୃଥକ୍ ଗଦ୍ୟାତ୍ମକ ବାକ୍ୟଗୁଡ଼ିକୁ ଯଜୁଃ କୁହାଯାଏ । ଅତଏବ ବେଦ ଋକ୍ ଯଜୁ ଓ ସାମ ନାମରେ ବିଭକ୍ତ । ସେଥି ସକାଶେ ବେଦର ନାମ "ତ୍ରୟୀ" ।

## ବୈଦିକ ସଂହିତା

ଗୃବେଟି ସଂହିତା ମଧ୍ୟରେ ଋଗ୍‌ବେଦ ସର୍ବ ପ୍ରାଚୀନ । ଅନ୍ୟ ସଂହିତାରେ ଋଗ୍‌ବେଦର ଅନେକ ମନ୍ତ୍ର ଦେଖାଯାଏ । ପ୍ରାୟ ସମୁଦାୟ ସାମବେଦ, ଋଗ୍‌ବେଦ ମନ୍ତ୍ରରେ ଗଠିତ । ଋଗ୍‌ବେଦକୁ ଗୋଟିଏ ଗ୍ରନ୍ଥ ନ କହି ଗୋଟିଏ ବିଶାଳକାୟ ଗ୍ରନ୍ଥସମୂହ ବୋଲି କହିବା ବିଧେୟ । ଭାଷା ଏବଂ ଅର୍ଥ ଦୃଷ୍ଟିରୁ ବୈଦିକ ସାହିତ୍ୟରେ ଏହା ଅନୁପମ । ଏହା ଦୁଇଭାଗରେ ବିଭକ୍ତ ।

(୧) ଅଷ୍ଟକ ଅଧ୍ୟାୟ ଏବଂ ସୂକ୍ତ ।

(୨) ମଣ୍ଡଳ, ଅନୁବାଦକ ଏବଂ ସୂକ୍ତ ।

Digitized by srujanika@gmail.com

# ଋଗ୍‌ବେଦ

ସମଗ୍ର ଋଗ୍‌ବେଦ ୮ ଭାଗରେ ବିଭକ୍ତ । ତାହାକୁ ଅଷ୍ଟକ କୁହାଯାଏ । ପ୍ରତ୍ୟେକ ଅଷ୍ଟକରେ ଆଠଟି ଅଧ୍ୟାୟ ଥାଏ ।

ଏହି ପ୍ରକାର ପୂରା ଋଗ୍ ବେଦରେ ଆଠ ଅଷ୍ଟକ ଅଥବା ଚଉଷଠି ଅଧ୍ୟାୟ ଥାଏ । ସମ୍ଭବତଃ ଏହି ବିଭାଗ ପାଠ କ୍ରମର ସୁବିଧା ନିମନ୍ତେ କରାଯାଇଅଛି । ଦ୍ୱିତୀୟ ବିଭାଗ ପ୍ରଥମ ଅପେକ୍ଷା ଅଧିକ ଐତିହାସିକ ଓ ମହତ୍ତ୍ୱଶାଳୀ ଅଟେ । ଏହି ବିଭାଗରେ ସମସ୍ତ ଋଗ୍‌ବେଦକୁ ଦଶ ଭାଗରେ ବିଭକ୍ତ କରି ଯାଇଅଛି । ତାହାକୁ ମଣ୍ଡଳ କୁହାଯାଏ ।

ମଣ୍ଡଳରେ ସଂଗୃହୀତ ମନ୍ତ୍ରଗୁଡ଼ିକୁ ସୂକ୍ତ କୁହାଯାଏ । ଏହି ସୂକ୍ତର କାଣ୍ଡଗୁଡ଼ିକୁ ଋଗ୍ କୁହାଯାଏ ।

ଏହି ଋଗ୍ ବେଦରେ ସୂକ୍ତର ସଂଖ୍ୟା ସମସ୍ତ ମିଶି ୧୦୨୮ ଅଟେ ଏବଂ ମନ୍ତ୍ର ସଂଖ୍ୟା ପ୍ରାୟ ୧୧ ହଜାର ଅଟେ ।

ବେଦ ଋଷିମାନଙ୍କ ଦ୍ୱାରା ରଚିତ ବୋଲି କେହି କେହି କହନ୍ତି; ଋଷି ଶବ୍ଦର ଅର୍ଥ ଯେ ଦେଖେ । ଯାସ୍କଙ୍କ ମତରେ ଋଷିମାନେ ମନ୍ତ୍ରର ଦ୍ରଷ୍ଟା । ଋଗ୍‌ବେଦର ଋଷିଗଣ ବିଭିନ୍ନ କୁଟୁମ୍ବ ସହିତ ସଂପୃକ୍ତ । ଗୋଟିଏ କୁଳର ଋଷିଙ୍କ ଦ୍ୱାରା ଉଦ୍ଭାବିତ ମନ୍ତ୍ରଗୁଡ଼ିକର ସଂଗ୍ରହକୁ ଗୋଟିଏ ମଣ୍ଡଳ କୁହାଯାଏ । ପ୍ରଥମ ମଣ୍ଡଳ ଓ ଦଶମ ମଣ୍ଡଳରେ ନାନା କୁଟୁମ୍ବର ଋଷିମାନଙ୍କର ମନ୍ତ୍ର ଦେଖିବାକୁ ମିଳେ । କିନ୍ତୁ ଦ୍ୱିତୀୟଠାରୁ ସପ୍ତମ ପର୍ଯ୍ୟନ୍ତ ପ୍ରତ୍ୟେକଟିରେ ଏକ କୁଟୁମ୍ବ ଋଷିଙ୍କ ଦ୍ୱାରା ଦୃଷ୍ଟ ମନ୍ତ୍ରଗୁଡ଼ିକର

Digitized by srujanika@gmail.com

ସଂକଳନ ଦେଖାଯାଏ । ଏହି ଋଷିମାନଙ୍କର ନାମ କ୍ରମଶଃ ଧୃଅଗଲ୍ପ । ୧ ଗୃତ୍ସମଦ, ୨ ବିଶ୍ୱାମିତ୍ର, ୩ ବାମଦେବ, ୪ ଅତ୍ରି, ୫ ଭାରଦ୍ୱାଜ, ୬ ବଶିଷ୍ଠ, ଦ୍ୱିତୀୟଠାରୁ ସପ୍ତମ ପର୍ଯ୍ୟନ୍ତ କ୍ରମଶଃ ଏମାନଙ୍କର ସମ୍ବନ୍ଧ ଦେଖାଯାଏ । ଅଷ୍ଟମ ମଣ୍ଡଳରେ କଣ୍ୱବଂଶ ଏବଂ ଅଙ୍ଗିରା ଗୋତ୍ର ଋଷିମାନଙ୍କର ମନ୍ତ୍ରର ସଙ୍କଳନ । ନବମ ମଣ୍ଡଳରେ ସୋମ ବିଷୟକ ମନ୍ତ୍ରର ସଂକଳନ ହୋଇଅଛି । ସୋମର ନାମ "ପବମାନ" ଅର୍ଥାତ୍ "ପବିତ୍ର" ସେଥିପାଇଁ ଏହି ମଣ୍ଡଳକୁ "ପବମାନ ମଣ୍ଡଳ କୁହାଯାଏ ।

ଦଶମ ମଣ୍ଡଳର ମନ୍ତ୍ରଗୁଡ଼ିକ ନାନା ଋଷିବଂଶ ସମ୍ବନ୍ଧୀୟ ଅଟେ । ସେଥିରେ କେବଳ ଦେବତାମାନଙ୍କର ସ୍ତୁତି ନାହିଁ । ଅନ୍ୟ ବିଷୟର ଚର୍ଚ୍ଚାମାନ ରହିଅଛି । ଦ୍ୱିତୀୟଠାରୁ ସପ୍ତମ ମଣ୍ଡଳ ପର୍ଯ୍ୟନ୍ତ ଋଗ୍‌ବେଦ ସର୍ବ ପ୍ରାଚୀନ । ଦଶମ ମଣ୍ଡଳ ପୂରା ଋଗ୍‌ବେଦରେ ଅର୍ବାଚୀନ ବୋଲି ବିବେଚିତ ହୋଇଅଛି ।

## ସାମବେଦ

କୁହା ଯାଇଅଛି ଯେ, ସାମବେଦର ସଂକଳନ ଉଦ୍‌ଗାତା ଋତ୍ୱିକ ନିମିତ୍ତ କରାଯାଇଅଛି । ଯଜ୍ଞରେ ଯେଉଁ ଦେବତାମାନଙ୍କୁ ଆହୁତି ଦିଆ ଯାଇଥାଏ, ଯଜ୍ଞ ଶେଷରେ ସେହି ଦେବତାମାନଙ୍କୁ ଆହ୍ୱାନ କରିବା ନିମିତ୍ତ ବା ସନ୍ତୋଷ କରିବା ନିମିତ୍ତ ଉଦ୍‌ଗାତା ଉଚିତ ସ୍ୱରରେ ସେହି ସେହି ଦେବତାମାନଙ୍କର ସ୍ତୁତି ଗାନ କରନ୍ତି । ଗାୟନକୁ ସାମ କୁହାଯାଏ । ଋକ୍ ଉପରେ ତାହା ଆଶ୍ରିତ । ଋକ୍‌କୁ ଗାୟନ କୁହାଯାଏ । ସମଗ୍ର ସାମବେଦରେ କେବଳ ଋକ୍ ପୂର୍ଣ୍ଣ ଏହାର ସଂଖ୍ୟା ୧୫୪୯ । ତେଣୁ ମଧ୍ୟରୁ କେବଳ ୭୫ଟି ଋକ୍ ଋକ୍ ସଂହିତାରେ ଦେଖିବାକୁ ମିଳେ

Digitized by srujanika@gmail.com

ନାହିଁ । ଏଥିପାଇଁ ସାମବେଦର ସ୍ୱତନ୍ତ୍ର ସତ୍ତା ଅଛି ବୋଲି କୁହାଯାଇ ନ ପାରେ । ସାମ ସଂହିତା ଦୁଇ ଭାଗରେ ବିଭକ୍ତ । ୧ ପୂର୍ବାର୍ଚ୍ଚିକ, ୨ ଉତ୍ତରାର୍ଚ୍ଚିକ । ପୂର୍ବାର୍ଚ୍ଚିକକୁ ଛନ୍ଦ, ଛନ୍ଦସୀ ଅଥବା ଛନ୍ଦସିକା କୁହାଯାଏ । ବିଷୟାନୁସାରେ ଏହି ଖଣ୍ଡର ଚାରି ଗୋଟି ଭାଗରେ ବିଭକ୍ତ [କ] ଆଗ୍ନେୟ (ଅଗ୍ନି ବିଷୟକ ମନ୍ତ୍ର), [ଖ] ଐନ୍ଦ୍ର (ଇନ୍ଦ୍ର ବିଷୟକ ମନ୍ତ୍ର), [ଗ] ପବମାନ ( ସୋମ ବିଷୟକ ମନ୍ତ୍ର ), [ଘ] ଆରଣ୍ୟକ ପର୍ବ । ଦ୍ୱିତୀୟ ଖଣ୍ଡ ଉତ୍ତରାର୍ଚ୍ଚିକା ନାମରେ ପ୍ରସିଦ୍ଧ । ଏଥିରେ ବିଷୟାନୁସାରେ ଉପଖଣ୍ଡମାନ ଅଛି । ତହିଁରେ ଅନୁଷ୍ଠାନମାନଙ୍କର ନିର୍ଦ୍ଦେଶ କରାଯାଇଅଛି । (୧) ଦଶରାତ୍ର (୨) ସମ୍ବତ୍ସର (୩) ଐକାହ (୪) ଅହୀନ, (୫) ସତ୍ର, (୬) ପ୍ରାୟଶ୍ଚିତ, (୭) କ୍ଷୁଦ୍ର । ସାମ ଗାୟନରେ ସାତ ପ୍ରକାର ସ୍ୱର ପ୍ରୟୋଗ କରାଯାଏ । ସଙ୍ଗୀତର ମୂଳ ଉପଲବ୍ଧି ହୋଇ ପାରୁନାହିଁ । ସେହି ପ୍ରାଚୀନ କାଳରେ ସଂଗୀତର ଉନ୍ନତ ଭାରତୀୟ ସଭ୍ୟତାର ଉଦାତ୍ତ ବିକାଶର ସୂଚନା ଦିଏ ।

## ଯଜୁର୍ବେଦ

ଗଦ୍ୟକୁ ଯଜୁ କହନ୍ତି । ଏହି ଯଜୁର୍ବେଦରେ ବହୁତ ଗଦ୍ୟ ବାକ୍ୟ ଦେଖିବାକୁ ମିଳେ । ଯାହାର ବ୍ୟବହାର କି ଅଧ୍ୱର୍ଯ୍ୟ ଯଜ୍ଞରେ କରନ୍ତି । ଯଜ୍ଞର ବାସ୍ତବିକ କ୍ରିୟାତ୍ମକ ଅନୁଷ୍ଠାନ ଅଧ୍ୱର୍ଯ୍ୟୁଙ୍କ ଦ୍ୱାରା କରାଯାଏ । ଅତଏବ ଏହି ବେଦରେ ଯଜ୍ଞାନୁଷ୍ଠାନ ବିଶେଷ ଭାବରେ ଦେଖିବାକୁ ମିଳେ । ଏହି ଯଜୁର୍ବେଦ ଦୁଇ ଭାଗରେ ବିଭକ୍ତ । ଯଥା :—କୃଷ୍ଣ ଯଜୁର୍ବେଦ ଏବଂ ଶୁକ୍ଳ ଯଜୁର୍ବେଦ । ଏହି ନାମ କରଣ ବିଷୟରେ ଏକ ସାମ୍ପ୍ରଦାୟିକ ପ୍ରଥା ପୁରାଣରେ ଦେଖିବାକୁ ମିଳେ ।

Digitized by srujanika@gmail.com

ବେଦବ୍ୟାସ ଯଜୁର୍ବେଦକୁ ନିଜର ଶିଷ୍ୟ ବୈଶମ୍ପାୟନଙ୍କୁ ଶିଖାଇଲେ, ବୈଶମ୍ପାୟନ ତାହା ଯାଜ୍ଞବଲ୍‌କ୍ୟଙ୍କୁ ଶିଖାଇଲେ; ଏଣୁ ଗୁରୁ ବେଦବ୍ୟାସ କୌଣସି କାରଣରୁ ବୈଶମ୍ପାୟନଙ୍କୁ ବିରକ୍ତ ହେଲେ । ମଧ୍ୟ କହିଲେ ତୁମ୍ଭେ ପଠିତ ବେଦଗୁଡ଼ିକ ଫେରାଇ ଦିଅ । ବୈଶମ୍ପାୟନଙ୍କର ଏହି ଅବସ୍ଥା ଦେଖି ମଧ୍ୟ ଶୁଣି ବୈଶମ୍ପାୟନଙ୍କ ଶିଷ୍ୟ ଯାଜ୍ଞବଲ୍‌କ୍ୟ ପଠିତ ଯଜୁର୍ବେଦ ଗୁଡ଼ିକୁ ବାନ୍ତି କରି ପକାଇଲେ । ତହୁଁ ଅନ୍ୟ ଶିଷ୍ୟଗଣ ପକ୍ଷୀରୂପ ଧାରଣ କରି ସେହି ବାନ୍ତିକୁ ଖାଇଗଲେ । ଏହାପରେ କୃଷ୍ଣ ଯଜୁର ଜନ୍ମ । ତାପରେ ଯାଜ୍ଞବଲ୍‌କ୍ୟ ସୂର୍ଯ୍ୟଙ୍କୁ ଉପାସନା କରି ନୂତନ ଯଜୁଷ୍ ଉତ୍ପନ୍ନ କଲେ । ତାହାର ନାମ ହେଲା ଶୁକ୍ଳ ଯଜୁର୍ବେଦ । ଏମାନଙ୍କ ମଧ୍ୟରେ ପାର୍ଥକ୍ୟ ବହୁତ । ଶୁକ୍ଳ ଯଜୁର୍ବେଦରେ କେବଳ ମନ୍ତ୍ରମାନଙ୍କର ସଂଗ୍ରହ କରା ଯାଇଅଛି । ତହିଁରେ ବିନିଯୋଗ ବାକ୍ୟ ନାହିଁ । ବ୍ରାହ୍ମଣ ସହିତ ଅମିଶ୍ରିତ ହେବା ହେତୁ ଏହାକୁ ଶୁକ୍ଳ ଯଜୁର୍ବେଦ କୁହାଯାଏ କିନ୍ତୁ କୃଷ୍ଣ ଯଜୁର୍ବେଦରେ ଛନ୍ଦୋବଦ୍ଧ ମନ୍ତ୍ର ଏବଂ ଗଦ୍ୟାତ୍ମକ ବିନିଯୋଗର ମିଶ୍ରଣ ଅଛି । ଏହି ମିଶ୍ରଣ ସକାଶେ ତାହାକୁ କୃଷ୍ଣ ଯଜୁର୍ବେଦ କୁହାଯାଏ ।

ଶୁକ୍ଳ ଯଜୁର୍ବେଦ ସଂହିତାକୁ ବାଜସନେୟୀ ସଂହିତା କୁହାଯାଏ । କାରଣ ସୂର୍ଯ୍ୟ ଘୋଡ଼ାରୂପ ଧାରଣ କରି ଏହି ଉପଦେଶ ଦେଇଥିଲେ । ଏଥିରେ ୪୦ ଅଧ୍ୟାୟ ଅଛି । ଏହାର ରଚନା ବିଶିଷ୍ଟ ଯଜ୍ଞର ଅବଲମ୍ବନରେ କରାଯାଇଅଛି । ଏହି ବେଦର ଦୁଇଟି ପ୍ରଧାନ ଶାଖା ଅଛି । ମାଧ୍ୟନ୍ଦିନ ଏବଂ କାଣ୍ୱ । ପ୍ରଥମ ଶାଖା ଉତ୍ତର ଭାରତରେ ଦେଖାଯାଏ । ଦ୍ୱିତୀୟ ଶାଖା ମହାରାଷ୍ଟ୍ରରେ ଦେଖିବାକୁ ମିଳେ । ଏହି ଶାଖା ଗୁଡ଼ିକର ସଂହିତା ଭିନ୍ନ । ଏହି ଭିନ୍ନତା ସେପରି କିଛି ବିଶେଷ ନୁହେଁ । କୃଷ୍ଣ

Digitized by srujanika@gmail.com

ଯଜୁର୍ବେଦର ମଧ୍ୟ ଅନେକ ଶାଖା ଅଛି । ବର୍ତ୍ତମାନ କେବଳ ଗୁଟିଏ ଶାଖା ଦେଖିବାକୁ ମିଳେ । ତଦନୁସାରେ ଏହି ବେଦର ସଂହିତା ନିମ୍ନ ରୂପେ ଦିଆଗଲା ।

(୧) ତୈତ୍ତିରୀୟ ସଂହିତା । ଏହା ପ୍ରଧାନ ଓ ପ୍ରସିଦ୍ଧ ଶାଖା ଅଟେ । ଏହା ସାତଖଣ୍ଡରେ ବିଭକ୍ତ, ପ୍ରତ୍ୟେକକୁ ଅଷ୍ଟକ ବା କାଣ୍ଡ କୁହାଯାଏ । ପ୍ରତ୍ୟେକ କାଣ୍ଡରେ କେତେକ ଅଧ୍ୟାୟ ଅଛି । ତାକୁ ପ୍ରଶ୍ନ ବା ପ୍ରପାଠକ କୁହାଯାଏ । ଏହି ପ୍ରଶ୍ନ ସବୁ ଅନେକ ଅନୁବାକ୍ୟରେ ବିଭକ୍ତ ।

(୨) ମୈତ୍ରାୟଣୀ ସଂହିତା (୩) କାଠକ ସଂହିତା ଏ ଉଭୟ ସଂହିତା ତୈତ୍ତିରୀୟ ସଂହିତା ସହିତ ସାମ୍ୟ ଅଛି । କ୍ରମରେ କୌଣସିଠାରେ ଦେଖିବାକୁ ମିଳେ । (୪) କଠକା ପିଷ୍ଟଳ ସଂହିତା କେବଳ ଏ ପର୍ଯ୍ୟନ୍ତ ଉଦ୍ଭାବିତ ହୋଇଅଛି ।

କୃଷ୍ଣ ଯଜୁର୍ବେଦରେ ଯଜ୍ଞର ବର୍ଣ୍ଣନା ହୋଇଅଛି । ଶୁକ୍ଳ ଯଜୁର୍ବେଦଠାରୁ ଏହାର ପାର୍ଥକ୍ୟ ଏହି ଯେ, ଯଜ୍ଞ ଗୁଡ଼ିକରେ କ୍ରମ ସବୁ ଦୁଇଟି ଯାଗାରେ ଭିନ୍ନ ଭିନ୍ନ ରୂପରେ ଦିଆ ଯାଇଅଛି ।

## ଅଥର୍ବ ବେଦ

ଏଥିରେ ଯଜ୍ଞଭାଗ ସମ୍ବନ୍ଧରେ ବର୍ଣ୍ଣନା ଅତି କମ୍ । ଏଥିରେ ମାରଣ, ମୋହନ, ଉଚ୍ଚାଟନ, ବଶୀକରଣ ପ୍ରଭୃତି କାର୍ଯ୍ୟ ଗୁଡ଼ିକର ବିଶେଷ ବର୍ଣ୍ଣନା ହୋଇଅଛି । ଅଥର୍ବ ଋଷି ଏହାର ଦ୍ରଷ୍ଟା ଥିବାରୁ ଏହାକୁ ଅଥର୍ବ ସଂହିତା କୁହାଯାଏ । ଏହି ସଂହିତା ୨୦ ଖଣ୍ଡରେ ବିଭକ୍ତ, ଯାହାକୁ କି କାଣ୍ଡ କୁହାଯାଏ ।

କାଣ୍ଡ ଭିତରେ—ପ୍ରପାଠକ, ଅନୁବାକ, ସୂକ୍ତ ତଥା ମନ୍ତ୍ରର ସନ୍ନିବେଶ କରି ଯାଇଅଛି । ଏପରି ଅଥର୍ବ ବେଦରେ ୨୦ କାଣ୍ଡ,

Digitized by srujanika@gmail.com

୩୪ ପ୍ରପାଠକ, ୧୧୧ ଅନୁବାକ, ୭୩୧ ସୂକ୍ତ ତଥା ୫୮୪୯ ମନ୍ତ୍ର ରହିଅଛି । ଏଥିରେ ପ୍ରାୟ ୧୨୦୦ ଋକ୍ ଋଗ୍‌ବେଦରୁ ନିଆ ଯାଇଅଛି । ଏହି ବେଦର ପ୍ରାୟ ଷଷ୍ଠ ଭାଗ ଗଦ୍ୟ । ପ୍ରଥମରୁ ତେର କାଣ୍ଡରେ ମାରଣ, ମୋହନ ଆଦି କ୍ରିୟା ସମ୍ବନ୍ଧରେ ବର୍ଣ୍ଣନା ରହିଅଛି । ୧୪ କାଣ୍ଡରେ ବିବାହ ବିଷୟକ ମନ୍ତ୍ର ରହିଅଛି । ୧୮ କାଣ୍ଡ ଶ୍ରାଦ୍ଧ ବିଷୟକ ଅଟେ । ତଥା ୨୦ କାଣ୍ଡରେ ସୋମ ଯାଗର ବର୍ଣ୍ଣନା ରହିଅଛି । ଏହି କାଣ୍ଡର ସମସ୍ତ ମନ୍ତ୍ର ପ୍ରାୟ ଋଗ୍‌ବେଦରୁ ନିଆ ଯାଇଅଛି । ଏହି ବେଦରେ ଭିନ୍ନ ଭିନ୍ନ ଦେବତାମାନଙ୍କର ସ୍ତୁତି ଅଛି । ନିରୁକ୍ତର ରଚୟିତା ମହର୍ଷି ଯାସ୍କ ।

## ଦେବତା

ସ୍ଥାନର ଦୃଷ୍ଟି ଅନୁସାରେ ଦେବତାମାନଙ୍କୁ ତିନିଭାଗରେ ବିଭକ୍ତ କରିଅଛନ୍ତି । ପୃଥିବୀ ସ୍ଥାନ, ଅନ୍ତରୀକ୍ଷସ୍ଥାନ, ତଥା ଦ୍ୟୁସ୍ଥାନ । ପୃଥିବୀବାସୀ ଦେବତାମାନଙ୍କ ମଧ୍ୟରେ ଅଗ୍ନି ସର୍ବଶ୍ରେଷ୍ଠ, ଋଗ୍‌ବେଦର ସର୍ବାଧିକମନ୍ତ୍ର ଏହି ଅଗ୍ନିଙ୍କ ବିଷୟରେ ରଚନା କରାଯାଇଅଛି । ଅନ୍ତରୀକ୍ଷରେ ଥିବା ଦେବତାମାନଙ୍କ ମଧ୍ୟରେ ଇନ୍ଦ୍ରଙ୍କ ସ୍ଥାନ ଏବଂ ଆକାଶରେ ରହିଥିବା ଦେବତାମାନଙ୍କ ମଧ୍ୟରେ ସୂର୍ଯ୍ୟ ସବିତା ବା ବିଷ୍ଣୁ ଆଦି ସୌରଦେବତାଙ୍କ ସ୍ଥାନ ଶ୍ରେଷ୍ଠ ଅଟେ । ଏହି ଦେବତାମାନଙ୍କ ମଧ୍ୟରେ ବରୁଣର ସ୍ଥାନ ଅତି ଉଚ୍ଚ । ଜଗତରେ ଯେଉଁ ନିୟମମାନ ପରିଦୃଷ୍ଟ ହୁଏ, ବରୁଣ ସେ ସମସ୍ତଙ୍କର କାରଣ ଅଟନ୍ତି । ସେ ସର୍ବଜ୍ଞ ଅଟନ୍ତି, ପ୍ରାଣୀମାନଙ୍କର ଶୁଭ ଓ ଅଶୁଭ କର୍ମ ଦେଖନ୍ତି ଏବଂ ଅନୁରୂପ ଫଳ ପ୍ରଦାନ କରନ୍ତି । ସଂଗ୍ରାମରେ ଇନ୍ଦ୍ର ଆର୍ଯ୍ୟମାନଙ୍କୁ ବିଜୟ ପ୍ରଦାନ କରନ୍ତି । ଇନ୍ଦ୍ରଙ୍କ ହସ୍ତରେ ବଜ୍ର ଥାଏ

Digitized by srujanika@gmail.com

ଉଦ୍ଧାର ବୃତ୍ରାଦ ଦାନବମାନଙ୍କୁ ମାର ଉଡ଼ ଦଅନ୍ତି ଏବଂ ଶତ୍ରୁର ନଗର ଗୁଡ଼ିକୁ ଧ୍ୱଂସ କର ଦେଇ ପାରନ୍ତି, ସେ ବୃଷ୍ଟିର ଦେବତା। ବିଷ୍ଣୁ ସୂର୍ଯ୍ୟଙ୍କ ପ୍ରତିନିଧି ଏବଂ ସୂର୍ଯ୍ୟ ସର୍ବଦା କ୍ରିୟାଶୀଳ, ସୂର୍ଯ୍ୟ ତିନି ଭାଗରେ ଏହି ବିଶ୍ୱକୁ ମାପି ଦେଇଛନ୍ତି। ସୁତରାଂ ବିଷ୍ଣୁଙ୍କର ନାମ ତ୍ରିବିକ୍ରମ, ବୈଦିକ ଦେବୀମାନଙ୍କ ମଧ୍ୟରେ ଉଷାଙ୍କର କଳ୍ପନା କବିତ୍ୱ ପୂର୍ଣ୍ଣ। ଋଷିମାନେ ସୁବର୍ଣ୍ଣ ରଥରେ ଚଢ଼ି ଯାତ୍ରା କରୁଥିବା ଚକ୍ ଚକ୍ ଦେଖା ଯାଉଥିବା ଉଷାଙ୍କ ବର୍ଣ୍ଣନାରେ ନିଜର ସର୍ବୋଚ୍ଚ ବର ପ୍ରତିଭାର ପରିଚୟ ଦେଇଛନ୍ତି। ଉଷା ବେଦର ପ୍ରଧାନ ଦେବତା।

ପ୍ରାକୃତିକ ଦୃଶ୍ୟକୁ ଦେଖି ଆର୍ଯ୍ୟମାନଙ୍କ ହୃଦୟରେ ଯେଉଁ କଳ୍ପନା ଜାଗ୍ରତ ହେଲା ତାକୁ ସେମାନେ ଦେବତା ରୂପରେ ବର୍ଣ୍ଣନା କରିଗଲେ, ସୁତରାଂ ଦେବତାମାନେ ପ୍ରାକୃତିକ ଦୃଶ୍ୟର ପ୍ରତିନିଧି। ମାତ୍ର ସେତିକି ନୁହେଁ ବୈଦିକ ଋଷିମାନେ ଏହା ବ୍ୟତୀତ ଭିନ୍ନ ଆକାର ଧାରଣ କରୁଥିବା ଜଗତର ସର୍ବତ୍ର ବ୍ୟାପ୍ତ ଏକ ସତ୍ତାର ଅନ୍ୱେଷଣ ବହୁପୂର୍ବରୁ କରିଥିଲେ। ତାହାର ନାମ ହେଉଛି ଆତ୍ମା ଅର୍ଥାତ୍ ଈଶ୍ୱର। ସମସ୍ତ ଦେବଗଣ ସେହି ସର୍ବବ୍ୟାପୀ ପରମାତ୍ମାଙ୍କ ଭିନ୍ନ ଭିନ୍ନ ପ୍ରତୀକ ଅଟନ୍ତି।

ବେଦର ରଚନା କେବେ ହେଲା ଏହା ଏକ ଜଟିଳ ସମସ୍ୟା। ବେଦକୁ ଅପୌରୁଷେୟ କୁହାଯାଏ। ଅର୍ଥାତ୍ ଏହା କୌଣସି ପୁରୁଷ ଦ୍ୱାରା ରଚିତ ହୋଇନାହିଁ ଏହା ମାନିବାକୁ ପଡ଼ିବ। ବେଦ ନିତ୍ୟ ହୋଇଥିବାରୁ ତାହାର ସମୟ ନିର୍ଦ୍ଧାରଣର ଆବଶ୍ୟକତା ପଡ଼ ନାହିଁ।

Digitized by srujanika@gmail.com

## ବେଦର ସମୟ

ପରନ୍ତୁ ପାଶ୍ଚାତ୍ୟ ଲୋକମାନେ ଏହାକୁ ସ୍ୱୀକାର କରନ୍ତି ନାହିଁ । ସେମାନେ ଋଷିମାନଙ୍କୁ ମନ୍ତ୍ରର ଦ୍ରଷ୍ଟା ନ କହି କର୍ତ୍ତା କହନ୍ତି । ସର୍ବ ପ୍ରାଚୀନ ଋଗ୍‌ବେଦ କେବେ ରଚନା କରାଗଲା ପ୍ରସିଦ୍ଧ ଜର୍ମାନ୍ ବିଦ୍ୱାନ୍ ମେକ୍ସ୍‌ମୁଲର ବୈଦିକ ସାହିତ୍ୟକୁ ଚାରିକାଳ ବିଭାଗରେ ବିଭକ୍ତ କରି ଅଛନ୍ତି । ଛନ୍ଦକାଳ, ମନ୍ତ୍ରକାଳ, ବ୍ରାହ୍ମଣକାଳ ଏବଂ ସୂତ୍ରକାଳ । ପ୍ରତ୍ୟେକର ବିକାଶ ନିମନ୍ତେ ଦୁଇଶହ ବର୍ଷ ଲାଗିଥିବ ମାନି ନେଇଛନ୍ତି । ବୌଦ୍ଧଧର୍ମରେ ସୂତ୍ରକାଳ ବିଷୟରେ ଲେଖା ଯାଇଥିବା ଗ୍ରନ୍ଥ ଏବଂ ସେଥିରେ ବର୍ଣ୍ଣିତ ଯଜ୍ଞର ନିର୍ଦ୍ଦେଶ ମିଳେ । ଅତଏବ ବୁଦ୍ଧଙ୍କ ପୂର୍ବରୁ ଏହି ବେଦ ଗ୍ରନ୍ଥ ରଚନା ହୋଇଥିବ । ବୁଦ୍ଧଙ୍କ ମୃତ୍ୟୁ ଖ୍ରୀଷ୍ଟାବ୍ଦ ୪୮୩ରେ ହୋଇଅଛି । ସୁତରାଂ ସୂତ୍ରଗ୍ରନ୍ଥ ଏହାର ୨୦୦ ବର୍ଷ ପୂର୍ବରୁ ଅର୍ଥାତ୍ ଖ୍ରୀଷ୍ଟାବ୍ଦ ୬୦୦ ବର୍ଷ ପୂର୍ବ ବୋଲି କହନ୍ତି । ଏହିପରି ପ୍ରତ୍ୟେକ ଯୁଗ ବା କାଳ ନିମିତ୍ତ ଦୁଇଶହ କରି ମାନି ମେକ୍‌ସିମୁଲର ଋଗ୍‌ବେଦର ସମୟ ୧୨୦୦ ଶତାବ୍ଦୀ ଖ୍ରୀଷ୍ଟପୂର୍ବ ବୋଲି ମାନିଛନ୍ତି । ଏହିମତ ବହୁ ପ୍ରସିଦ୍ଧ କିନ୍ତୁ ଋଗ୍‌ବେଦରେ ଯେଉଁ ନକ୍ଷତ୍ର ବିଷୟକ ସୂଚନା ଦିଆ ଯାଇଅଛି ତାହାକୁ ଅବଲମ୍ବନ କରି ଲୋକମାନ୍ୟ ତିଳକ ଋଗ୍‌ବେଦର ରଚନା ସମୟ ଖ୍ରୀଷ୍ଟପୂର୍ବ (୬୦୦୦) ଛଅ ହଜାର ବର୍ଷ ବୋଲି ମାନି ଅଛନ୍ତି । ଏ ସମସ୍ତ ଯୁକ୍ତି ଗଣିତ ଏବଂ ଜ୍ୟୋତିଷ୍ ଅବଲମ୍ବନରେ ଆଶ୍ରିତ ହୋଇଥିବାରୁ ଅକାଟ୍ୟ ଅଟେ । ଖ୍ରୀଷ୍ଟପୂର୍ବ ୬୦୦୦ ଠାରୁ ୪୦୦୦ ବର୍ଷ ମଧ୍ୟରେ ଋଗ୍‌ବେଦର ମନ୍ତ୍ରଗୁଡ଼ିକ ରଚିତ ହୋଇଅଛି । ଅନ୍ୟ ବେଦ ଗୁଡ଼ିକର ରଚନା ଖ୍ରୀଷ୍ଟପୂର୍ବ ୪ ହଜାର ଠାରୁ ୩ ହଜାର ବର୍ଷ ମଧ୍ୟରେ ରଚିତ ହୋଇଅଛି । ଶତପଥ ବ୍ରାହ୍ମଣ ଯାହାକୁ କି ସମସ୍ତ

Digitized by srujanika@gmail.com

ବ୍ରାହ୍ମଣମାନଙ୍କ ମଧ୍ୟରେ ପ୍ରାଚୀନ ବୋଲି କୁହାଯାଏ । ତାହା ଖ୍ରୀଷ୍ଟପୂର୍ବ ୨ ହଜାର ବର୍ଷରେ ଲେଖା ହୋଇଥିଲା ବୋଲି କୁହା ଯାଏ । ବେଦରେ ଭୂଗର୍ଭ ଶାସ୍ତ୍ର ସମ୍ବନ୍ଧୀୟ ସିଦ୍ଧାନ୍ତ ମାନଙ୍କର ଅନ୍ୱେଷଣ କରାଯାଇ ଅଛି । ତାହା ଅବଲମ୍ବନରେ ଜନୈକ ବିଦ୍ୱାନ୍ ଡାକ୍ତର ଅବିନାଶ ଚନ୍ଦ୍ର ଦାସ କହି ଅଛନ୍ତି ଯେ, ବେଦର ରଚନା ଲକ୍ଷାଧିକ ବର୍ଷ ପୂର୍ବେ ହୋଇଥିଲା । ଏପରି ପରିସ୍ଥିତିରେ ବେଦର ରଚନା କାଳ ନିର୍ଣ୍ଣୟ କରିବା କଠିନ, କାରଣ ବେଦ ଅପୌରୁଷେୟ । ଏହାକୁ କେହି ରଚନା କରିନାହାନ୍ତି ।

## ବ୍ରାହ୍ମଣ

ସଂହିତା ପରେ ବ୍ରାହ୍ମଣ ଗ୍ରନ୍ଥର ସମୟ ଆସିଲା । ବ୍ରାହ୍ମଣର ଯଜ୍ଞ ସହିତ ସମ୍ବନ୍ଧ ରହିଛି । ଯଜ୍ଞାନୁଷ୍ଠାନର ବିସ୍ତୃତ ବର୍ଣ୍ଣନ ବ୍ରାହ୍ମଣରେ ଦେଖିବାକୁ ମିଳେ । ଅଜ୍ ମଧ୍ୟ ବହୁ ଅଖ୍ୟାନ, ଶବ୍ଦର ବ୍ୟୁତ୍ପତ୍ତି, ଏବଂ ପ୍ରାଚୀନ ରାଜା ଅଥବା ଋଷିମାନଙ୍କର କଥା ବ୍ରାହ୍ମଣରେ ଦେଖିବାକୁ ମିଳେ । ଅତଏବ ବ୍ରାହ୍ମଣରେ ଅନେକ ଦେବତାଙ୍କର ବୀଜ ମନ୍ତ୍ର ସନ୍ନିହିତ ରହିଅଛି । ପ୍ରତ୍ୟେକ ବେଦର ଶାଖାନୁସାରେ ବ୍ରାହ୍ମଣ ଏବଂ ଆରଣ୍ୟକ ଭିନ୍ନ ଭିନ୍ନ ଅଟେ । ଏହାର ସଂକ୍ଷିପ୍ତ ପରିଚୟ ଏହି ପ୍ରକାର ଅଟେ । ଋଗ୍-ବେଦର ଦୁଇ ବ୍ରାହ୍ମଣ । ୧ ଐତରେୟ ଏବଂ କୌଷୀତକି । ତହିଁରେ ଐତରେୟ ନିତାନ୍ତ ପ୍ରସିଦ୍ଧ ଅଟେ । ଏଥିରେ ୪୦ ଅଧ୍ୟାୟ ଅଛି । ପ୍ରତି ପାଞ୍ଚ ଅଧ୍ୟାୟର ସମଷ୍ଟିକୁ ପଞ୍ଜିକା କୁହାଯାଏ । ସୁତରାଂ ଏଥିରେ ଆଠଟି ପଞ୍ଜିକା ଅଛି । କୌଶୀତକି ବ୍ରାହ୍ମଣ କେବଳ ୩୦ ଅଧ୍ୟାୟରେ ବିଭକ୍ତ । ଋଗ୍‌ବେଦରେ ଦୁଇଟି ଆରଣ୍ୟକ ଅଛି । ଏତରେୟ ଆରଣ୍ୟକ ଏବଂ ସଂଖ୍ୟାୟନ ଆରଣ୍ୟକ, ସାମବେଦ ସହିତ ବହୁତ ବ୍ରାହ୍ମଣର ସମ୍ବନ୍ଧ ଅଛି । ତହିଁରେ

Digitized by srujanika@gmail.com

'ତାଣ୍ଡ୍ୟ ବ୍ରାହ୍ମଣ' ସର୍ବଶ୍ରେଷ୍ଠ । ୨୫ ଅଧ୍ୟାୟ ପୂର୍ଣ୍ଣ ଏହା ଏକ ବିପୁଳକାୟ ଗ୍ରନ୍ଥ । ସୁତରାଂ ଏହାକୁ "ପଞ୍ଚବିଂଶ ବ୍ରାହ୍ମଣ" କୁହାଯାଏ । କୃଷ୍ଣ ଯଜୁର୍ବେଦସମ୍ବନ୍ଧିତ ତୈତ୍ତିରୀୟ ବ୍ରାହ୍ମଣ ତଥା ତୈତ୍ତିରୀୟ ଆରଣ୍ୟକର ସମ୍ବନ୍ଧ ରହିଅଛି । ଶୁକ୍ଳ ଯଜୁର୍ବେଦର ବ୍ରାହ୍ମଣ 'ଶତପଥ ବ୍ରାହ୍ମଣ' ନାମରେ ଅଭିହିତ । କାରଣ ଏଥିରେ ୧୦୦ ଅଧ୍ୟାୟ ରହିଅଛି । ଋଗ୍‌ବେଦପରେ ଏହି ଗ୍ରନ୍ଥ ବିଶେଷ ମହତ୍ତ୍ୱ ପୂର୍ଣ୍ଣ ବୋଲି କୁହାଯାଏ । ଏଥିରେ ଯଜ୍ଞର ବିସ୍ତୃତ ବର୍ଣ୍ଣନ ରହିଅଛି । ଅତି ମଧ୍ୟ ବହୁ ପ୍ରାଚୀନ ଆଖ୍ୟାନ, ବ୍ୟୁତ୍ପତ୍ତି ତଥା ଅନେକ ସାମାଜିକ କଥାର ସଂଗ୍ରହ କରାଯାଇ ଅଛି । ଅଥର୍ବବେଦର ବ୍ରାହ୍ମଣକୁ "ଗୋପଥ ବ୍ରାହ୍ମଣ" ବୋଲି କୁହାଯାଏ । ଏହା ଦୁଇଖଣ୍ଡରେ ବିଭକ୍ତ । ପ୍ରଥମ ଖଣ୍ଡରେ ୫ ଅଧ୍ୟାୟ । ଦ୍ୱିତୀୟ ଖଣ୍ଡରେ ୬ ଅଧ୍ୟାୟ ।

## ଉପନିଷଦ୍

ଉପନିଷଦ୍ ଶବ୍ଦ ଉପ୍ ତଥା ନି ଉପସର୍ଗ ସଦ୍ ଧାତୁରୁ ନିଷ୍ପନ୍ନ ହୋଇଅଛି । 'ସଦ୍' ଧାତୁରୁ ତିନୋଟି ଅର୍ଥ (୧) ବିଶରଣ ଅର୍ଥାତ୍ ନାଶ ହେବା (୨) ଗତି ଅର୍ଥାତ୍ ପ୍ରାପ୍ତିହେବା (୩) ଅବସାଦନ ଅର୍ଥାତ୍ ଶିଥିଳ ହେବା । ଉପନିଷଦ୍‌ର ମୁଖ୍ୟ ଅର୍ଥ ଆଧ୍ୟାତ୍ମ୍ୟ ବିଦ୍ୟା, ଏହାକୁ ଅଧ୍ୟୟନ କଲେ ମୁମୁକ୍ଷୁ ବ୍ୟକ୍ତିମାନଙ୍କର ଅବିଦ୍ୟା ନଷ୍ଟ ଏ । ଏହି ବିଦ୍ୟା ସେମାନଙ୍କୁ ବ୍ରହ୍ମପ୍ରାପ୍ତି କରାଏ ଏବଂ ଏହାର ଅଭ୍ୟାସ ଦ୍ୱାରା ଗର୍ଭବାସ ଆଦି ନାନାପ୍ରକାର ଦୁଃଖ ଶିଥିଳ ହୁଏ । ସୁତରାଂ ଉପନିଷଦ୍‌ର ଏହି ଅର୍ଥରେ ସଦ୍ ଧାତୁର ତିନୋଟି ଅର୍ଥ ସୁସଙ୍ଗତ ଅଟେ । ଉପନିଷଦ୍‌ର ଗୌଣ ଅର୍ଥ ବ୍ରହ୍ମ ବିଦ୍ୟାର ପ୍ରତିପାଦକ ଗ୍ରନ୍ଥ ଅଟେ । ବୈଦିକ ସାହିତ୍ୟରେ ଉପନିଷଦ୍‌ର ସ୍ଥାନ ସବୁଠାରୁ ଶେଷରେ, ସୁତରାଂ ଏହାକୁ ବେଦାନ୍ତ

Digitized by srujanika@gmail.com

ବୋଲି ମଧ୍ୟ କୁହାଯାଏ । 'ମୁକ୍ତିକୋପନିଷଦ୍'ରେ ୧୦୮ ଗୋଟି ଉପନିଷଦ୍‌ର ନାମ ଦିଆ ଯାଇଅଛି । ଯହିଁରେ ୧୦ଟି ଉପନିଷଦ୍ ଋଗ୍‌ବେଦରୁ ଅସିଅଛି । ୧୯ଟି ଶୁକ୍ଳ ଯଜୁର୍ବେଦରୁ । ୩୨ଟି କୃଷ୍ଣ ଯଜୁର୍ବେଦରୁ । ୧୬ଟି ସାମ ବେଦରୁ ଏବଂ ୩୧ଟି ଅଥର୍ବ ବେଦରୁ ନିଆ ହୋଇଅଛି । ମାତ୍ର ଉପନିଷଦ୍‌ର ସଂଖ୍ୟା ଏ ସମସ୍ତ ଅପେକ୍ଷା ଅଧିକ । ୧୧ଟି ଉପନିଷଦ୍ ଅଧିକ ପ୍ରସିଦ୍ଧ ଅଟେ । (୧) ଈଶ (୨) କେନ (୩) କଠ (୪) ପ୍ରଶ୍ନ (୫) ମୁଣ୍ଡକ (୬) ମାଣ୍ଡୁକ୍ୟ (୭) ତୈତ୍ତିରୀୟ (୮) ଐତରେୟ (୯) ଛାନ୍ଦୋଗ୍ୟ (୧୦) ବୃହଦାରଣ୍ୟକ (୧୧) ଶ୍ୱେତାଶ୍ୱତର । ବେଦାନ୍ତର ପ୍ରସିଦ୍ଧ ଆଚାର୍ଯ୍ୟମାନେ ଏହି ଉପନିଷଦ୍ ଗୁଡ଼ିକ ଅବଲମ୍ବନରେ ନିଜ ନିଜର ମତ ପୁଷ୍ଟି କରିବା ନିମିତ୍ତ କେବେ କେବେ ଭାଷ୍ୟ ରଚନା କରି ଅଛନ୍ତି । ଉପନିଷଦ୍‌ର ରଚନା ଶୈଳୀରେ ପ୍ରଭେଦ ଅଛି । ଉପନିଷଦ୍ ଗଦ୍ୟାତ୍ମକ । କେତେକ ପଦ୍ୟାତ୍ମକ ଏବଂ କେତେକ ଗଦ୍ୟପଦ୍ୟାତ୍ମକ ଉଭୟ ରୂପ । ଉପନିଷଦ୍‌ର ରଚନା କାଳ ବିଷୟରେ ଅନେକେକମାନଙ୍କର ନାନା ମତଭେଦ ଦେଖାଯାଏ । ଏହା ନିଶ୍ଚିତ ହୋଇଅଛି ଯେ, ପ୍ରଧାନ ଉପନିଷଦ୍‌ର ରଚନାକାଳ ବୁଦ୍ଧଦେବଙ୍କ ଆବିର୍ଭାବର ବହୁପୂର୍ବରୁ ହୋଇଅଛି । ଛାନ୍ଦୋଗ୍ୟ ଏବଂ ବୃହଦାରଣ୍ୟକ, ଅନ୍ୟାନ୍ୟ ଉପନିଷଦ୍ ଅପେକ୍ଷା ମହତ୍ତ୍ୱପୂର୍ଣ୍ଣ ଏବଂ ପ୍ରାଚୀନ ବୋଲି ସ୍ୱୀକାର କରି ଯାଇଅଛି । ବିଷୟବର୍ଣ୍ଣନ ଦୃଷ୍ଟିରୁ ଉପନିଷଦ୍‌ର ଶ୍ରେଣୀ ବିଭାଗ କରି ଯାଇପାରେ । କେତେକ ଉପନିଷଦ୍‌ର ପ୍ରତିପାଦ୍ୟ ବିଷୟ ବେଦାନ୍ତ ଅଟେ । ତହିଁରେ ବ୍ରହ୍ମ ଏବଂ ଆତ୍ମାର ସ୍ୱରୂପ ଏବଂ ପରସ୍ପର ସମ୍ବନ୍ଧ ବର୍ଣ୍ଣନା କରି ଯାଇଅଛି । କେତେକ ଅଂଶ ଯୋଗ ବିଷୟକ ଅଟେ । ଉପନିଷଦ୍‌ର ଅଧିକାଂଶ ଭାଗ ବିଷ୍ଣୁ, ଶିବ ଏବଂ ଶକ୍ତିଙ୍କର ଉପାସନାର

Digitized by srujanika@gmail.com

ପ୍ରତିପାଦନ କରେ । ଉପନିଷଦ୍ ଭାରତୀୟ ଅଧ୍ୟାତ୍ମ ଶାସ୍ତ୍ରର ଦେଦୀପ୍ୟମାନ ରତ୍ନ । ଯେତିକି ଯେତିକି ସୂକ୍ଷ୍ମ ଅଧ୍ୟୟନ କରାଯାଏ ସେତିକି ସେତିକି ଉପନିଷଦ୍‌ର ମହତ୍ତ୍ୱ ଉପଲବ୍ଧ ହୁଏ । ଭାରତୀୟ ମହର୍ଷିମାନେ ସ୍ୱୀୟ ପ୍ରତିଭା ଚକ୍ଷୁରେ ଯେଉଁ ଆଧ୍ୟାତ୍ମିକ ତତ୍ତ୍ୱର ସାକ୍ଷାତ୍‌କାର କରିଥିଲେ, ସେ ସବୁର ଭଣ୍ଡାର ଉପନିଷଦ୍‌ରେ ଅଛି । ଭାରତୀୟ ସଭ୍ୟତାକୁ ଆଧ୍ୟାତ୍ମିକତା ଆଡ଼କୁ ଗୁଳିତ କରିବା ଏହି ଗ୍ରନ୍ଥର ମୂଳ ଉଦ୍ଦେଶ୍ୟ ।

ବହୁକାଳ ପୂର୍ବେ ଯେଉଁ ବିଦେଶୀ ବିଦ୍ୱାନଙ୍କୁ ଭାରତୀୟ ସାହିତ୍ୟର ଅଧ୍ୟୟନ କରିବାର ସୁଯୋଗ ମିଳିଲା, ସେମାନେ ଉପନିଷଦ୍‌ର ପ୍ରଶଂସା ଶତ ମୁଖରେ ଗାନ କରିଅଛନ୍ତି । ୧୭୦୦ ଶତାବ୍ଦୀରେ ଦାରାଶିକୋହଙ୍କ ନିର୍ବାଚିତ ପଚିଶଟି ଉପନିଷଦ୍‌ର ଅନୁବାଦ ଫରାସୀ ଭାଷାରେ କରି ଯାଇଥିଲା । ଏହି ଅନୁବାଦ ଲାଟିନ୍ ଭାଷାରେ ଅନୁବାଦ ମଧ୍ୟ ଜନୈକ ଫ୍ରେଞ୍ଚ ବିଦ୍ୱାନ୍‌ଙ୍କ ଦ୍ୱାରା କରି ହୋଇଅଛି । ତା ଛଡ଼ା ଜର୍ମାନ ଦାର୍ଶନିକ ସୋପେନ୍ ହୋବର ଉପନିଷଦ୍‌ର ବହୁ ପ୍ରଶଂସା କରିଅଛନ୍ତି । ବର୍ତ୍ତମାନ ପାଶ୍ଚାତ୍ୟଜଗତ ଉପରେ ଉପନିଷଦର ବହୁ ପ୍ରଭାବ ପଡ଼ିଅଛି । ପୃଥିବୀର ସବୁ ଭାଷାରେ ଉପନିଷଦ୍‌ର ଅନୁବାଦ ଦେଖିବାକୁ ମିଳେ ।

ଉପନିଷଦ୍ ଏକ ଶତାବ୍ଦୀର ରଚନାର ଫଳ ନୁହେଁ, ବରଂ ବହୁ ଶତାବ୍ଦୀର ରଚନାର ଫଳ ଅଟେ, ଅତଏବ ତହିଁରେ ଭିନ୍ନ ଭିନ୍ନ ଏବଂ ପରସ୍ପର ବିରୋଧୀ ସିଦ୍ଧାନ୍ତମାନ ମିଳିବା ଆଶ୍ଚର୍ଯ୍ୟ ଜନକ ଅଟେ । କିନ୍ତୁ ଏହି ପ୍ରଭେଦ କେବଳ ବାହ୍ୟ ଅଟେ । ଭିତରେ ପ୍ରବେଶ କଲେ ଏକ ତାତ୍ତ୍ୱିକ ବ୍ୟବସ୍ଥା ଦେଖାଯାଏ । ଯାହା ଅନୁସାରେ ଏହି ଜଗତକୁ ଭଲ ଭାବରେ ବୁଝିବାର ମାର୍ଗ

Digitized by srujanika@gmail.com

ନିର୍ଦ୍ଦିଷ୍ଟ କରାଯାଇ ଅଛି । ଉପନିଷଦର ଅଧ୍ୟାତ୍ମବେତ୍ତା ଋଷିମାନେ ଏହି ନାନାତ୍ମକ ଏବଂ ସଦା ପରିବର୍ତ୍ତନଶୀଳ ଜଗତର ମୂଳରେ ବିଦ୍ୟମାନ ଥିବା ଶାଶ୍ୱତ ପଦାର୍ଥକୁ ଖୋଜି ବାହାର କରିଛନ୍ତି ସେହି ତତ୍ତ୍ୱର ନାମ ହେଉଅଛି ପରମାତ୍ମା (ବ୍ରହ୍ମ) । ଜୀବାତ୍ମା ଏବଂ ପରମାତ୍ମା ମଧ୍ୟରେ କୌଣସି ପ୍ରକାର ଭେଦ ନାହିଁ । ଉଭୟ ଏକତତ୍ତ୍ୱ ଅଟନ୍ତି । ଏହି ଅଭେଦ ସମ୍ବନ୍ଧ ଉପରେ ଉପନିଷଦ୍ ଗୁଡ଼ିକ ଖୁବ୍ ଜୋର ଦେଇ ଅଛନ୍ତି । ଆତ୍ମା ନିତ୍ୟ ବସ୍ତୁ ଅଟେ । ଆତ୍ମା ଅମର । କୌଣସି ଅବସ୍ଥାରେ କୌଣସି ମତେ କୌଣସି ପ୍ରକାରେ ଦୋଷ ବା ବିକାର ତାକୁ ସ୍ପର୍ଶ କରେ ନାହିଁ । ତାହା ଇନ୍ଦ୍ରିୟଠାରୁ ସ୍ୱତନ୍ତ୍ର ଏବଂ ମନଃ ବୁଦ୍ଧି ତଥା ପ୍ରାଣଠାରୁ ମଧ୍ୟ ପୃଥକ୍ ଅଟେ । ଉପନିଷଦ୍‌ର ମଞ୍ଜୁଳ କଳ୍ପନା ଅନୁସାରେ ଏ ଶରୀର ହେଉଅଛି ରଥ । ବୁଦ୍ଧି ହେଉଅଛି ସାରଥୀ । ମନଃ ହେଉଅଛି ଲଗାମ, ଏବଂ ଇନ୍ଦ୍ରିୟମାନେ ବିଷୟରୂପୀ ମାର୍ଗ ଆଡ଼କୁ ଗମନରତ କରିବାରେ ଘୋଡ଼ କ ଅଟନ୍ତି । ଆତ୍ମା ଏହି ରଥର ସ୍ୱାମୀ ଅଟେ ।* ଆତ୍ମା ଏବଂ ବ୍ରହ୍ମ ମୂଳତଃ ଏକତତ୍ତ୍ୱ । ବ୍ରହ୍ମର ଦୁଇଟି ସ୍ୱରୂପ ଅଛି । ସଗୁଣ ଓ ନିର୍ଗୁଣ, ସଗୁଣ ରୂପରେ ସେ ଏହି ଜଗତ୍ ସୃଷ୍ଟି କରେ. ସ୍ଥିତି କାଳରେ ଏହି ଜଗତ୍‌ର ପ୍ରାଣ ଧାରଣ କରେ ଏବଂ ଏହି ପ୍ରଳୟ କାଳରେ ନିଜ ଦେହରେ ଲୀନ କରିଦିଏ । ନିର୍ଗୁଣ ରୂପ ତାହାର ସର୍ବଶ୍ରେଷ୍ଠ ରୂପ ଅଟେ । ବ୍ରହ୍ମର ପ୍ରକାଶ ଶବ୍ଦଦ୍ୱାରା

---

* ଆତ୍ମାନଂ ରଥିନଂ ବିଦ୍ଧି ଶରୀରଂ ରଥ ମେବତୁ
ବୁଦ୍ଧିଂ ତୁ ସାରଥିଂ ବିଦ୍ଧି ମନଃପ୍ରଗ୍ରହମେବ ଚ ।
ଇନ୍ଦ୍ରିୟାଣି ହୟାନାହୁଃ ବିଷୟାନ୍ ତେଷୁଗୋଚରାନ୍ ,
ଆତ୍ମେନ୍ଦ୍ରିୟ ମନୋଯୁକ୍ତଂ ଭୋକ୍ତେତ୍ୟାହୁର୍ମନୀଷିଣଃ । କଂ—୨।୩

Digitized by srujanika@gmail.com

କହିହେବ ନାହିଁ । ସୁତରାଂ ଉପନିଷଦ୍‌ମାନେ "ନେତି ନେତି" ଶବ୍ଦଦ୍ୱାରା ଏହାର ନାମକରଣ କରିଛନ୍ତି । ଏହି ବ୍ରହ୍ମ ଦର୍ଶନର ସାକ୍ଷାତ୍‌କାର ଉପନିଷଦ୍‌ର ଚରମ ଲକ୍ଷ୍ୟ ଅଟେ । ଉପନିଷଦ୍ ବାସ୍ତବରେ ଆଧ୍ୟାତ୍ମିକ-ମାନସରୋବର ଅଟେ । ତହିଁରୁ ଭିନ୍ନ ଭିନ୍ନ ଜ୍ଞାନସ୍ରୋତ ସମୂହ ନିର୍ଗତ ହୋଇ ଏହି ପୁଣ୍ୟଭୂମି ଆର୍ଯ୍ୟାବର୍ତ୍ତରେ ପ୍ରତ୍ୟେକ ମନୁଷ୍ୟର ସାଂସାରିକ ଅଭ୍ୟୁଦୟ ଏବଂ ପାରଲୌକିକ କଲ୍ୟାଣ ପାଇଁ ପ୍ରବାହିତ ହେଉଅଛି । ହିନ୍ଦୁ ଦର୍ଶନରେ ତିନୋଟି ପ୍ରସ୍ଥାନ ଗ୍ରନ୍ଥ ଅଛି ତାହା ବୈଦିକ ଧର୍ମାନୁସାରେ ମାର୍ଗ ତଥା ତାର ସାଧନର ପ୍ରତିପାଦକ ଅଟେ । ଏହି ପ୍ରସ୍ଥାନ ତ୍ରୟୀରେ ଅନ୍ତର୍ଗତ । ଉପନିଷଦ୍‌କୁ ପ୍ରଥମ ପ୍ରସ୍ଥାନ କୁହାଯାଏ । ଦ୍ୱିତୀୟ ପ୍ରସ୍ଥାନ ଭଗବତ୍ ଗୀତା । ଏହା ସମସ୍ତ ଉପନିଷଦ୍ ରୂପକ ଧେନୁର ବତ୍ସରୂପୀ ପାର୍ଥଙ୍କ ନିମିତ୍ତ ଭଗବାନ୍ ଗୋପାଳକୃଷ୍ଣଙ୍କ ଦ୍ୱାରା ଦୋହନ କରା ଯାଇଥିବା ଅମୃତ ସହୋଦର ସାରଭୂତ ଦୁଗ୍ଧ ଅଟେ । ତୃତୀୟ ପ୍ରସ୍ଥାନ ବାଦରାୟଣ ବ୍ୟାସଙ୍କର ବିରଚିତ ବ୍ରହ୍ମସୂତ୍ର ଅଟେ । ତହିଁରେ ଅବିରୋଧଭାବ ପ୍ରତିପାଦନ କରୁଥିବା ବାକ୍ୟଗୁଡ଼ିକର ସମନ୍ୱୟ ଏବଂ ଅଭିପ୍ରାୟ ବ୍ରହ୍ମ ବୋଲି ଦେଖାଇ ଦିଆ ଯାଇଅଛି । ସୁତରାଂ ଗୀତା ଏବଂ ବ୍ରହ୍ମ ଉପନିଷଦ୍ ଉପରେ ଅବଲମ୍ବିତ । ଅତଏବ ଉପନିଷଦ୍‌ହିଁ ଭାରତୀୟ ଦର୍ଶନର ମୂଳ ସ୍ରୋତ ଅଟେ । ଏଥିରେ କିଛିମାତ୍ର ସନ୍ଦେହ ନାହିଁ । ଅତଏବ ନବୀନ ମତର ସଂସ୍ଥାପକ ଆଚାର୍ଯ୍ୟଗଣ ନିଜର ମତକୁ ପ୍ରମାଣିତ ଏବଂ ଅକ୍ଷୁଣ୍ଣ ବା ସିଦ୍ଧି କରିବା ଉଦ୍ଦେଶ୍ୟରେ ଏହି ତିନି ଗ୍ରନ୍ଥରତ୍ନ ଉପରେ ବିଶେଷତଃ ଉପନିଷଦ୍ ଉପରେ ସ୍ୱୀୟ ମତର ଅନୁକୂଳ ବ୍ୟାଖ୍ୟା ଗ୍ରନ୍ଥମାନ ରଚନା କରିଅଛନ୍ତି ।

Digitized by srujanika@gmail.com

# ବେଦାଙ୍ଗ

ବ୍ରାହ୍ମଣ କାଳର ଅବଶେଷରେ ସୂତ୍ରକାଳ ଆରମ୍ଭ ହେଲା । ଏହି ସମୟରେ ଆମ୍ଭ ପୂର୍ବପୁରୁଷମାନଙ୍କୁ ଶ୍ରୁତି ତ୍ୟାଗ କରି ସ୍ମୃତିର ଆଶ୍ରୟ ନେବାକୁ ପଡ଼ିଲା । ଯଜ୍ଞ ଯାଗର ଏପରି ବିସ୍ତାର ହୋଇଗଲା ଯେ, ସେଗୁଡ଼ିକୁ ମନେ ରଖିବା ବା ବେଦର ଅର୍ଥ ବୁଝିବା ବଡ଼ କଷ୍ଟ ହୋଇ ପଡ଼ିଲା । ତେଣୁ ସେ ଗୁଡ଼ିକୁ ବୁଝିବା ସକାଶେ ଛୋଟ ଛୋଟ ଗ୍ରନ୍ଥ ରଚନାର ଆବଶ୍ୟକତା ହେଲା । ସେ ଗୁଡ଼ିକୁ ବେଦର ଅଙ୍ଗ ଧରାଯାଇଥିଲା । ବେଦର ଅଙ୍ଗ ହେଉଅଛି ୬ଗୋଟି ଯଥା:—ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ ଓ ଜ୍ୟୋତିଷ ।

ବ୍ୟାକରଣକୁ ବେଦର ମୁଖ, ଜ୍ୟୋତିଷକୁ ବେଦର ନେତ୍ର, ନିରୁକ୍ତକୁ ବେଦର କର୍ଣ୍ଣ, କଳ୍ପକୁ ବେଦର ହସ୍ତ, ଶିକ୍ଷାକୁ ବେଦର ନାସିକା, ଛନ୍ଦକୁ ବେଦର ପାଦ କୁହାଯାଏ । ଅତଏବ ଏହି ଶାସ୍ତ୍ରଗୁଡ଼ିକର ବେଦ ସହିତ ଘନିଷ୍ଠ ସମ୍ବନ୍ଧ ଥିବାରୁ ଏହି ଶାସ୍ତ୍ରଗୁଡ଼ିକୁ ବେଦାଙ୍ଗ କୁହାଯାଏ । ଏହି ବିଷୟରେ ପାଣିନୀୟ ଶିକ୍ଷାର ୪୧, ୪୨ ଶ୍ଳୋକ ପ୍ରମାଣ । ଯଥା—

ଛନ୍ଦଃ ପାଦୌତୁ ବେଦସ୍ୟ ହସ୍ତୌ କଳ୍ପୋଽଥ ପଠ୍ୟତେ ।
ଜ୍ୟୋତିଷାମୟନଂ ଚକ୍ଷୁର୍ନିରୁକ୍ତଂ ଶ୍ରୋତ୍ରମୁଚ୍ୟତେ ॥
ଶିକ୍ଷା ଘ୍ରାଣଂ ତୁ ବେଦସ୍ୟ ମୁଖଂ ବ୍ୟାକରଣଂ ସ୍ମୃତମ୍ ।
ତସ୍ମାତ୍ ସାଙ୍ଗମଧୀତ୍ୟୈବ ବ୍ରହ୍ମଲୋକେ ମହୀୟତେ ॥

## ୧—ଶିକ୍ଷା

ଯାହା ସାହାଯ୍ୟରେ ବେଦର ଉଚ୍ଚାରଣ ସ୍ପଷ୍ଟରୂପେ କରି ଯାଇପାରେ ତାହା ଶିକ୍ଷା । ବେଦପାଠରେ ସ୍ୱରର ମହତ୍ତ୍ୱ ବେଶି । ସ୍ୱରରେ ପ୍ରମାଦ ହେଲେ ବଡ଼ ଅନର୍ଥ ଘଟେ ।

Digitized by srujanika@gmail.com

ଅତଏବ ସ୍ୱରର ଶିକ୍ଷା ନିମିତ୍ତ ସ୍ୱତନ୍ତ୍ର ବେଦାଙ୍ଗ ରଚିତ ହୋଇଅଛି । ପ୍ରତ୍ୟେକ ବେଦର ସ୍ୱତନ୍ତ୍ର ଶିକ୍ଷା ଅଛି । ଯାଜ୍ଞବଲ୍କ୍ୟ ଶିକ୍ଷା, ଶୁକ୍ଲ ଯଜୁର୍ବେଦରୁ ଗୃହୀତ ଏବଂ ନାରଦ ଶିକ୍ଷା ସାମବେଦରୁ ଗୃହୀତ । ପାଣିନୀ କୃତ ଏକ ଉତ୍କୃଷ୍ଟ ଶିକ୍ଷା ଅଛି । ତାହାକୁ ପାଣିନୀୟ ଶିକ୍ଷା କୁହାଯାଏ ।

## ୨—ଛନ୍ଦ

ବିନା ଛନ୍ଦ ଜ୍ଞାନରେ ବେଦ ମନ୍ତ୍ରଗୁଡ଼ିକର ଠିକ୍ ଉଚ୍ଚାରଣ କରି ଯାଇ ନ ପାରେ । ମନ୍ତ୍ର ଛନ୍ଦ ଦ୍ୱାରା ଆବଦ୍ଧ । ଅତଏବ ଛନ୍ଦ ଜ୍ଞାନ ନିତାନ୍ତ ଆବଶ୍ୟକ । ସୌନକ ଋକ୍ ପ୍ରତି ଶାଖ୍ୟର ଶେଷରେ ଛନ୍ଦର ପର୍ଯ୍ୟାପ୍ତ ବିଚାର କରି ଯାଇଅଛି । କିନ୍ତୁ ଏହି ବେଦାଙ୍ଗର ଏକମାତ୍ର ସ୍ୱତନ୍ତ୍ର ଗ୍ରନ୍ଥ 'ପିଙ୍ଗଳ' ଅଟେ । ଏହା ପିଙ୍ଗଳ ନାମକ ଋଷିଙ୍କ ଦ୍ୱାରା ରଚିତ । ଏହି ଗ୍ରନ୍ଥରେ ବୈଦିକ ଓ ଲୌକିକ ଉଭୟ ପ୍ରକାର ଛନ୍ଦ ଦେଖିବାକୁ ମିଳେ ।

## ୩—ନିରୁକ୍ତ

ଏହି ବେଦାଙ୍ଗରେ ଶବ୍ଦ ଗୁଡ଼ିକର ବ୍ୟୁତ୍ପତ୍ତି ଦେଖିବାକୁ ମିଳେ । ବେଦର ଅର୍ଥ ବୁଝିବା ପାଇଁ ବ୍ୟୁତ୍ପତ୍ତିର ବର୍ତ୍ତମାନ କେବଳ ଏକମାତ୍ର ନିରୁକ୍ତ ଦେଖାଯାଏ । ଏହାର ରଚୟିତା ମହର୍ଷି ଯାସ୍କ । ବହୁ ପ୍ରାଚୀନ କାଳରୁ ନିଘଣ୍ଟୁ ନାମକ ଗ୍ରନ୍ଥ ପ୍ରସିଦ୍ଧ ଥିଲା । ତହିଁରେ ବେଦର କଠିନ ଶବ୍ଦ ଗୁଡ଼ିକର ଏକ କ୍ରମବଦ୍ଧ ତାଲିକା ଦିଆ ଯାଇଅଛି । ଏହି ଗ୍ରନ୍ଥ ଉପରେ ଯାସ୍କ ମହର୍ଷି ଏକ ବିସ୍ତୃତ ଭାଷ୍ୟ ଲେଖି ଅଛନ୍ତି । ତାହା 'ନିରୁକ୍ତ' ନାମରେ ପ୍ରସିଦ୍ଧ । ଯାସ୍କଙ୍କ ମତରେ ସମସ୍ତ ଶବ୍ଦ ଧାତୁରୁ ଉତ୍ପନ୍ନ । ଅତଏବ ଶବ୍ଦ ଗୁଡ଼ିକର ବ୍ୟୁତ୍ପତ୍ତି ଦେଖାଇବା ପାଇଁ ଏହି ଗ୍ରନ୍ଥରେ ଚେଷ୍ଟା

Digitized by srujanika@gmail.com

କରିଯାଇ ଅଛି । ଯାସ୍କ ପାଣିନିଙ୍କ ପୂର୍ବବର୍ତ୍ତୀ । ତାଙ୍କର ଅବସ୍ଥାନ କାଳ ପ୍ରାୟ ଖ୍ରୀଷ୍ଟପୂର୍ବ ୭୦୦ ବର୍ଷରେ ହୋଇଥିବ ବୋଲି ସମ୍ଭାବନା ।

## ୪—ବ୍ୟାକରଣ

ଏହି ବେଦାଙ୍ଗର ଏକମାତ୍ର ଉଦ୍ଦେଶ୍ୟ ହେଉଅଛି—ବୈଦିକ ଅର୍ଥକୁ ବୁଝାଇବା ଏବଂ ବେଦାର୍ଥକୁ ରକ୍ଷା କରିବା । ଆଜିକାଲି ପାଣିନି ବ୍ୟାକରଣ ଏହି ବେଦାଙ୍ଗର ଏକମାତ୍ର ପ୍ରତିନିଧି ଅଟେ । କିନ୍ତୁ ପାଣିନିଙ୍କ ପୂର୍ବରୁ ମଧ୍ୟ ବ୍ୟାକରଣର ପ୍ରଚଳନ ଥିଲା । ପାଣିନି ଆଠୋଟି ଅଧ୍ୟାୟ ବିଶିଷ୍ଟ ସୂତ୍ର ରୂପରେ ବ୍ୟାକରଣ ଲେଖିଗଲେ । ତାହା "ଅଷ୍ଟାଧ୍ୟାୟୀ" ନାମରେ ଖ୍ୟାତ । ତାହାଙ୍କ ପୂର୍ବରୁ ଗାର୍ଗ୍ୟ, ସ୍ଫୋଟାୟନ, ଶାକଟାୟନ, ଭାରଦ୍ୱାଜ ପ୍ରଭୃତି ଅନେକ ଆଚାର୍ଯ୍ୟ ଥିଲେ । ସେମାନଙ୍କ ବିଷୟରେ ପାଣିନି ସ୍ୱୀୟ ଅଷ୍ଟାଧ୍ୟାୟୀରେ ବର୍ଣ୍ଣନା କରି ଅଛନ୍ତି । ଏହା ପୂର୍ବରୁ ପ୍ରାତିଶାଖ୍ୟ ନାମକ ଗ୍ରନ୍ଥରେ ସ୍ୱର ଛନ୍ଦ ସହିତ ବ୍ୟାକରଣର ବିଶେଷ ବର୍ଣ୍ଣନା ଅଛି । ଏହି ଗ୍ରନ୍ଥ ପ୍ରତ୍ୟେକ ଶାଖାରେ ସ୍ୱତନ୍ତ୍ର ଭିନ୍ନ ଭିନ୍ନ ରୂପ ଧାରଣ କରିଅଛି । ବର୍ତ୍ତମାନ ଋଗ୍‌ବେଦ ସହିତ ସମ୍ବନ୍ଧ ଶୌନକ ପ୍ରାତିଶାଖ୍ୟ ଏବଂ ଶୁକ୍ଳ ଯଜୁଃ ସହିତ ସମ୍ବନ୍ଧ କାତ୍ୟାୟନ ପ୍ରାତିଶାଖ୍ୟ, ବିଶେଷ ପ୍ରସିଦ୍ଧ । ଅନ୍ୟାନ୍ୟ ବେଦର ପ୍ରାତିଶାଖ୍ୟ ମଧ୍ୟ ଦେଖିବାକୁ ମିଳେ ।

## ୫—ଜ୍ୟୋତିଷ

ବେଦାଙ୍ଗରେ ଜ୍ୟୋତିଷର ସ୍ଥାନ ବହୁତ ଉଚ୍ଚରେ । ଯଜ୍ଞର ପ୍ରତିପାଦନ ନିମିତ୍ତ ବେଦର ସୃଷ୍ଟି ଏବଂ ସମୟର ଆବଶ୍ୟକତା ସହିତ ଯଜ୍ଞର ସମ୍ବନ୍ଧ ରହିଛି । ସୁତରାଂ



Digitized by srujanika@gmail.com

ଜ୍ୟୋତିଷକୁ କାଳର ବିଧାୟକ ଶାସ୍ତ୍ର ବୋଲି କୁହାଯାଏ । ଯେଉଁ ଲୋକ ଜ୍ୟୋତିଷ ଜାଣନ୍ତି ସେ ଯଜ୍ଞ ଜାଣନ୍ତି । ବେଦାଙ୍ଗ ଜ୍ୟୋତିଷ ଏହାର ପ୍ରତିନିଧି, ଏହାଙ୍କ ରଚୟିତାଙ୍କ ନାମ 'ଲଗଧ' ଏହାର ଦୁଇଟି ସଂସ୍କରଣ ଅଛି । ଗୋଟିଏ ଯଜୁର୍ବେଦ ସମ୍ବନ୍ଧୀୟ । ଅପରଟି ଋଗ୍‌ବେଦ ସମ୍ବନ୍ଧୀୟ । ଯାଜୁ ଜ୍ୟୋତିଷରେ ୪୩ଟି ଶ୍ଳୋକ । ଆର୍ଚ୍ଚରେ କେବଳ ୩୬ଟି ଶ୍ଳୋକ ଅଛି । ସାମାନ୍ୟତଃ ଶ୍ଳୋକଗୁଡ଼ିକ ଏକପ୍ରକାର ଅଟନ୍ତି । ଏହାର କେତେକ ଶ୍ଳୋକ ମାନଙ୍କର ଅର୍ଥ ଏ ପର୍ଯ୍ୟନ୍ତ ଜଣା ଯାଇ ନାହିଁ । 'ସୋମାକର'ଙ୍କ ପ୍ରାଚୀନ ଟୀକା ସୁଧାକର ଦ୍ୱିବେଦୀଙ୍କ ନୂତନ 'ସୁଧାକର' ଭାଷ୍ୟ ପ୍ରସିଦ୍ଧ ଅଟେ ।

## ୬—କଳ୍ପସୂତ୍ର

ବ୍ରାହ୍ମଣ କାଳରେ ଯଜ୍ଞ ଯାଗର ଏପରି ଅଧିକ ବିସ୍ତାର ହେଲା ଯେ, ତାହାର ଯଥୋଚିତ ଜ୍ଞାନ ନିମିତ୍ତ କେତେକ ସଂକ୍ଷିପ୍ତ ଏବଂ ପୂର୍ଣ୍ଣ ପରିଚୟ ଦେଉଥିବା ରଚନାର ଆବଶ୍ୟକ ହେଲା । ଏହାର ପରିଚୟ କଳ୍ପସୂତ୍ର ଦ୍ୱାରା କରା ଯାଇଅଛି । ଏହା ଦୁଇ ପ୍ରକାର । ଶ୍ରୌତସୂତ୍ର ଓ ସ୍ମାର୍ତ୍ତସୂତ୍ର । ସ୍ମାର୍ତ୍ତସୂତ୍ର ପୁଣି ଦୁଇ ଭାଗରେ ବିଭକ୍ତ । ଗୃହ୍ୟସୂତ୍ର ଓ ଧର୍ମସୂତ୍ର । ଶ୍ରୌତ ଶବ୍ଦର ଅର୍ଥ ଶ୍ରୁତି, (ଅର୍ଥାତ୍ ବେଦ) ବେଦ ସହିତ ସଂଯୁକ୍ତ ଯଜ୍ଞ ଯାଗ । ଅତଏବ ଶ୍ରୌତ ସୂତ୍ରରେ ତିନି ପ୍ରକାର ଅଗ୍ନି ; ଯଥା— ଆହବନୀୟ ଗାର୍ହପତ୍ୟ ଏବଂ ଦକ୍ଷିଣାଗ୍ନି । ଏହି ଅଗ୍ନିର ଆଧାନ, ଅଗ୍ନିହୋତ୍ର, ଦର୍ଶ ଓ ପୂର୍ଣ୍ଣମାସ ନାମକ ଯଜ୍ଞ । ଏଥିରେ ପଶୁଯାଗ, ବିଶେଷତଃ ଭିନ୍ନ ପ୍ରକାର ସୋମ ଯାଗର ବର୍ଣ୍ଣନା କରା ଯାଇଅଛି । ଶ୍ରୌତ ସୂତ୍ରରେ ଏହି ପ୍ରକାର ଭାରତୀୟ ଯାଗ ପଦ୍ଧତିର ମୂଳସ୍ୱରୂପ ।

Digitized by srujanika@gmail.com

ଜାଣିବା ନିମନ୍ତେ ସବୁଠାରୁ ପ୍ରାଚୀନ ତଥା ପର୍ଯ୍ୟାପ୍ତ ସାମଗ୍ରୀ ରହିଅଛି । ଗୃହ୍ୟ ସୂତ୍ରରେ ଏହିପରି ଅନୁଷ୍ଠାନ କରିବା ପ୍ରତ୍ୟେକ ହିନ୍ଦୁଗୃହସ୍ଥର ଅବଶ୍ୟକ । ବିଶେଷତଃ ଷୋଡ଼ଶ ସଂସ୍କାର ବର୍ଣ୍ଣନ ଗୃହ୍ୟସୂତ୍ରରେ ଅତି ବିସ୍ତାର ଭାବରେ ଦିଆ ଯାଇଅଛି । ତହିଁରେ ଉପନୟନ, ତଥା ବିବାହର ବର୍ଣ୍ଣନ ଅତି ବିଶଦ ଭାବରେ କରି ଯାଇଅଛି । ଏହି ଗ୍ରନ୍ଥକୁ ଅଧ୍ୟୟନ କଲେ, ପ୍ରାଚୀନ ଭାରତୀୟ ସମାଜର ପାରିବାରିକ ଆଚାର ବିଚାରର ପୁଣି ଭିନ୍ନ ଭିନ୍ନ ପ୍ରାନ୍ତର ପ୍ରଥାର ପରିଚୟ ପୂର୍ଣ୍ଣ ଭାବରେ ମିଳେ । ଗୃହ୍ୟସୂତ୍ର ସହିତ ଧର୍ମସୂତ୍ରର ମଧ୍ୟ ସମ୍ବନ୍ଧ ରହିଅଛି । ଏହି ସୂତ୍ରରେ ଧାର୍ମିକ ନିୟମାବଳି, ରାଜା ଓ ପ୍ରଜାଙ୍କର କର୍ତ୍ତବ୍ୟ ଏବଂ ଅଧିକାରର ପୂର୍ଣ୍ଣ ନ ଦେଖିବାକୁ ମିଳେ । ଏଥି ମଧ୍ୟ ଚାରୋଟି ବର୍ଣ୍ଣ ଅର୍ଥାତ୍ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏବଂ ଚାରି ଆଶ୍ରମ ( ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ, ସନ୍ନ୍ୟାସ ) ର ଧର୍ମ ବା କର୍ତ୍ତବ୍ୟର ପୂର୍ଣ୍ଣ ବର୍ଣ୍ଣନ କରି ଯାଇଅଛି । ଏହି ଧର୍ମସୂତ୍ରରୁ ପରବର୍ତ୍ତୀ କାଳରେ ସ୍ମୃତିର ଉତ୍ପତ୍ତି ହୁଏ । ଯାହାକୁ କି ଆଜିକାଲି ସୁଦ୍ଧା ଆମ୍ଭମାନଙ୍କୁ ମାନିବାକୁ ହେଉଅଛି । ଶୁଲ୍ବସୂତ୍ର ମଧ୍ୟ କଳ୍ପସୂତ୍ରର ଅଂଶ ବିଶେଷ । ଏହାର ସାକ୍ଷାତ୍ ସମ୍ବନ୍ଧ ଶ୍ରୌତ ସୂତ୍ରରେ ରହିଅଛି । ଶୁଲ୍ବର ଅର୍ଥ ହେଉଛି ମାଂପସୂତ୍ର ଅର୍ଥାତ୍ ମାପିବାର ଡୋର । ନାମ ଅନୁସାରେ ଶୁଲ୍ବ ସୂତ୍ରରେ ବେଦଗୁଡ଼ିକର ମାପ । ସେମାନଙ୍କ ନିମିତ୍ତ ସ୍ଥାନର ନିର୍ବାଚନ ଏବଂ ସେମାନଙ୍କର ରଚନା ଆଦି ବିଷୟର ବିସ୍ତୃତ ବିବରଣ ପ୍ରସ୍ତୁତ କରି ଯାଇଅଛି । ଏହି ସୂତ୍ର ଭାରତୀୟ ଜ୍ୟାମିତିର ପ୍ରାଚୀନ ଗ୍ରନ୍ଥ ଅଟେ ।

ଋଗ୍‌ବେଦ ସହିତ ସଂପୃକ୍ତ କଳ୍ପସୂତ୍ର—ଆଶ୍ୱଳାୟନ ଓ ସାଂଖ୍ୟାୟନ ଉଭୟ କଳ୍ପସୂତ୍ରରେ ଶ୍ରୌତସୂତ୍ର ଏବଂ ଗୃହ୍ୟସୂତ୍ର

Digitized by srujanika@gmail.com

ଉଭୟ ସମ୍ମିଳନ କର୍ଯ୍ୟ ଯାଇଅଛି । ଶୁକ୍ଳ ଯଜୁର୍ବେଦର କଳ୍ପସୂତ୍ର—
କାତ୍ୟାୟନ ଶ୍ରୌତସୂତ୍ର, ପାରସ୍କର ଗୃହ୍ୟସୂତ୍ର ଏବଂ କାତ୍ୟାୟନ
ଶୁଲ୍ବସୂତ୍ର । କୃଷ୍ଣଯଜୁର୍ବେଦର ବୌଧାୟନ ଏବଂ ଆପସ୍ତମ୍ବ ଶାଖାରେ
ଯେଉଁ କଳ୍ପସୂତ୍ରର ଉପଲବ୍ଧ ହୁଏ; ତାହାକୁ ଆମ୍ଭେମାନେ ସମସ୍ତ
ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ ବୋଲି କହୁପାରୁଁ ; କାରଣ ଏଥିରେ ଶ୍ରୌତ,
ଗୃହ୍ୟ, ଧର୍ମ ଏବଂ ଶୁଲ୍ବ ଗୃହ୍ୟେଷ୍ଟି ସୂତ୍ର ଦେଖିବାକୁ ମିଳେ ।
ଏଥିରେ ପରସ୍ପର ଏତେ ଅଧିକ ସମ୍ବନ୍ଧ ଯେ, ଯଦି ଆମ୍ଭେ ଏହାକୁ
କେବଳ ଏକମାତ୍ର ଗ୍ରନ୍ଥର ଭିନ୍ନଭିନ୍ନ ଖଣ୍ଡ ବୋଲି କହୁଁ ତାହା
ହେଲେ ଅତ୍ୟୁକ୍ତି ହେବ ନାହିଁ ।

ସାମବେଦ ସଂହିତା ସଂପୃକ୍ତ କଳ୍ପସୂତ୍ର—ଲାଟ୍ୟାୟନ ଏବଂ
ଦ୍ରାହ୍ୟାୟନଙ୍କ ଶ୍ରୌତସୂତ୍ର ତଥା ଜୈମିନି ଶାଖାରେ ସମ୍ବନ୍ଧ
ଜୈମିନୀୟ ଶ୍ରୌତସୂତ୍ର ଏବଂ ଜୈମିନି ଗୃହ୍ୟସୂତ୍ର । ସାମ ବେଦର
ଅନ୍ତର୍ଗତ ଆର୍ଷେୟ କଳ୍ପ ମଧ୍ୟ ଗଣନା କର୍ଯ୍ୟ ଯାଇଛି । ଏହାର
ଅନ୍ୟ ନାମ "ମଶକ କଳ୍ପସୂତ୍ର" ଅଟେ । ଏଥିରେ ସାମବେଦ
ଗାୟନର ବିଭିନ୍ନ ରାଗ ରାଗିଣୀ ଏବଂ ଲୟର ବର୍ଣ୍ଣନ ହୋଇଅଛି ।
ଏହି ସୂତ୍ରର ପଞ୍ଚବିଂଶ ବ୍ରାହ୍ମଣ ସଙ୍ଗେ ସମ୍ବନ୍ଧ ରହିଛି ଏବଂ
ଲାଟ୍ୟାୟନ ଶ୍ରୌତସୂତ୍ର ଅପେକ୍ଷା ଏହା ପ୍ରାଚୀନତର ବୋଲି
ଅନୁମିତ ହୁଏ ।

ଅଥର୍ବ ବେଦ ସଂହିତ ସଂପୃକ୍ତ—କଳ୍ପସୂତ୍ର ।

ବୈତାନ ଶ୍ରୌତସୂତ୍ର (ଯାହା କି ବିଶେଷ ପ୍ରାଚୀନ ନୁହେଁ) ।

କୌଶିକ ସୂତ୍ର ( ଯାହା ଗୃହ୍ୟସୂତ୍ର ହେଲେ ମଧ୍ୟ ନାନା
ପ୍ରକାର ଅଭିଚାର କର୍ମମାନଙ୍କ ଦ୍ୱାରା ପରିପୂର୍ଣ୍ଣ ) ପ୍ରାଚୀନ ଭାରତୀୟ
ଅଭିଚାର କର୍ମଗୁଡ଼ିକ ଜାଣିବା ପାଇଁ ଏହା ପ୍ରଧାନ ଗ୍ରନ୍ଥ ।

Digitized by srujanika@gmail.com

# ଅନୁକ୍ରମଣୀ

ବେଦାଙ୍ଗ ସାହିତ୍ୟ ଅନ୍ତର୍ଗତ ଅନୁକ୍ରମଣୀ ଉଲ୍ଲେଖ ଯୋଗ୍ୟ । ବେଦର ରକ୍ଷା ଏବଂ ବେଦାର୍ଥର ମୀମାଂସା ନିମିତ୍ତ ଏଗୁଡ଼ିକ ରଚିତ ହୋଇଥିଲା । ଅର୍ଷାନୁକ୍ରମଣୀରେ ଋଗ୍‌ବେଦୀୟ ମନ୍ତ୍ରଗୁଡ଼ିକର ଦ୍ରଷ୍ଟା ଋଷିମାନଙ୍କର ନାମ ଏବଂ ମନ୍ତ୍ର କ୍ରମଶଃ ବର୍ଣ୍ଣିତ ଅଛି ।

ଛନ୍ଦୋନୁକ୍ରମଣୀରେ ଋଗ୍‌ବେଦୀୟ ଛନ୍ଦମାନଙ୍କର କ୍ରମଶଃ ବର୍ଣ୍ଣନା ଅଛି । ଦେବତାନୁକ୍ରମଣୀରେ ଋଗ୍‌ବେଦ ବର୍ଣ୍ଣିତ ଦେବତାମାନଙ୍କର ମନ୍ତ୍ର କ୍ରମଶଃ ଅତି ବିସ୍ତୃତ ଭାବରେ ବର୍ଣ୍ଣିତ ଅଛି । ଶୌନକଙ୍କ କୃତ "ବୃହଦ୍ ଦେବତା" ମଧ୍ୟ ଏହି ବିଷୟର ଏକ ପ୍ରାମାଣିକ ଅର୍ଥାତ୍ ଉପାଦେୟ ଗ୍ରନ୍ଥ ଅଟେ । ଏଥିରେ ଋଗ୍-ବେଦୀୟ ଦେବତାମାନଙ୍କର କ୍ରମଶଃ ବର୍ଣ୍ଣନା କରା ଯାଇଅଛି । ଆଉ ମଧ୍ୟ ତତ୍ସମ୍ବନ୍ଧୀୟ ଅନେକ ପ୍ରାଚୀନ ଆଖ୍ୟାନ ଏବଂ କଥା ବର୍ଣ୍ଣିତ ହୋଇଅଛି । କାତ୍ୟାୟନ କୃତ ସର୍ବାନୁକ୍ରମଣୀ ଏହି ବିଷୟର ଏକ ପ୍ରସିଦ୍ଧ ଗ୍ରନ୍ଥ ଅଟେ । ଏହା ଅବଲମ୍ବନରେ ଷଡ଼ଗୁରୁ ଶିଷ୍ୟର ଭାଷ୍ୟ ( ଦ୍ୱାଦଶ ଶତକ ) ଅତ୍ୟନ୍ତ ଉପଯୋଗୀ ଏବଂ ପ୍ରସିଦ୍ଧ ଅଟେ । ଯେଉଁ ବିଦ୍ୱାନ୍ ବ୍ୟକ୍ତିଙ୍କ ଭାଷ୍ୟର ସାହାଯ୍ୟରେ ଆମ୍ଭେମାନେ ବେଦର ଅର୍ଥ ବୁଝିପାରୁଁ ସେହି ମହାତ୍ମାଙ୍କୁ ଧନ୍ୟବାଦ । ସେ ହେଉଛନ୍ତି ମହାତ୍ମା ସାୟଣାଚାର୍ଯ୍ୟ । ଏହାଙ୍କର ଜନ୍ମ ଓ ଭାଷ୍ୟ ରଚନାର କାଳ ୧୩୫୦—୭୯ ଓ ୧୩୭୯—୯୯, ଏହି ସମୟରେ ଦକ୍ଷିଣ ଭାରତର ବିଜୟ ନଗର ରାଜ୍ୟର ସଂସ୍ଥାପକ ମହାରାଜ ବୁକ୍କ ଓ ଏହାଙ୍କ ଉତ୍ତରାଧିକାରୀ

Digitized by srujanika@gmail.com

ମହାରାଜ ହରିହର ରାଜତ୍ୱ କରୁଥିଲେ । ଏହି ରାଜାଙ୍କ ଅଶ୍ରୟରେ ମହାତ୍ମା ସାୟଣାଚାର୍ଯ୍ୟ ଅନେକ ଭାଷ୍ୟ ରଚନା କରିଥିଲେ, ଯଥା :— ସାୟଣଙ୍କ ଭାଷ୍ୟ ଋଗ୍‌ବେଦ, ତୈତ୍ତିରୀୟ ସଂହିତା, କାଣ୍ୱସଂହିତା, ସାମସଂହିତା, ଅଥର୍ବ ସଂହିତା; ଅର୍ଥାତ୍ ମାଧ୍ୟନ୍ଦିନ ସଂହିତାକୁ ଛାଡ଼ି ସମଗ୍ର ସଂହିତା ଉପରେ ଅଛି । ବ୍ରାହ୍ମଣ ସାହିତ୍ୟରେ ଐତରେୟ ବ୍ରାହ୍ମଣ ଏବଂ ଐତରେୟ, ଆରଣ୍ୟକ, ତୈତ୍ତିରୀୟ ବ୍ରାହ୍ମଣ ଏବଂ ଆରଣ୍ୟକ ପଞ୍ଚବିଂଶ ବ୍ରାହ୍ମଣ ସଦୃଶ ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥଗୁଡ଼ିକ ଉପରେ ମଧ୍ୟ ଏହାଙ୍କର ଭାଷ୍ୟ ।

---

Digitized by srujanika@gmail.com

# ଯୋଗସାଧନାରେ ତନ୍ତ୍ରର ପ୍ରଭାବ

ଭାରତବର୍ଷ ମଧ୍ୟରେ ଉତ୍କଳଖଣ୍ଡ ପୁଣ୍ୟଭୂମି ବୋଲି ବହୁକାଳରୁ ପରିଚିତ । ଭାରତୀୟ ଜୀବନରେ ଋଷିମାନେ ଧର୍ମର ସୂକ୍ଷ୍ମତତ୍ତ୍ୱ ଅନୁଶୀଳନରେ ଯେଉଁ ପ୍ରତିଷ୍ଠା ଅର୍ଜନ କରିଥିଲେ ଉତ୍କଳ ପ୍ରଦେଶ ସେ ବିଷୟରେ କେବେହେଲେ ପଶ୍ଚାତ୍‌ପଦ ନ ଥିଲା । ପୁରାଣମାନଙ୍କରେ ବର୍ଣ୍ଣିତ ଅଛି, କଳିଯୁଗ ଆରମ୍ଭରେ ଭଗବାନ୍ ଶ୍ରୀକୃଷ୍ଣ ପୃଥିବୀ ତ୍ୟାଗ କରିବା ପୂର୍ବେ ଉତ୍କଳଖଣ୍ଡର ମହୋଦଧି-ତୀରରେ ନିଜ ଭବିଷ୍ୟତ୍ ଅବତାର ସ୍ଥାନ ନିର୍ଦ୍ଦେଶ କରିବା ପାଇଁ ତଦୀୟ ବୈଷ୍ଣବଅସ୍ତ୍ର ସୁଦର୍ଶନ ଚକ୍ରକୁ ସଙ୍କେତ କରିଥିଲେ । ସେହି ସଙ୍କେତରେ ସୁଦର୍ଶନଚକ୍ର ଯେଉଁଠାରେ ପତିତ ହେଲେ ସେହି 'ଚକ୍ରତୀର୍ଥ' ନୀଳାଦ୍ରିରେ କଳିକାଳରେ ଭଗବାନଙ୍କ ଦାରୁମୟୀ ମୂର୍ତ୍ତି ପ୍ରତିଷ୍ଠିତ ହୋଇ ପୂଜିତ ହେଲା । ଏଥିରୁ ବୁଝାଯାଉଅଛି ଯେ, ଉତ୍କଳଖଣ୍ଡହିଁ ସମଗ୍ର ଭାରତରେ ଧର୍ମାନୁଶୀଳନର ଅନୁକୂଳ କ୍ଷେତ୍ର । ଏ ପ୍ରଦେଶର ପ୍ରକୃତି ମାନବ ଜୀବନକୁ ଧର୍ମାଭିମୁଖୀ କରାଇବାରେ ସର୍ବଥା ଉପଯୁକ୍ତ ।

ଅତି ପ୍ରାଚୀନକାଳରୁ ଅଦ୍ୟାବଧି ଭାରତର ଯେତେ ପ୍ରକାର ପ୍ରଧାନ ପ୍ରଧାନ ଧର୍ମମତର ଅନୁଶୀଳନ ଓ ଆଲୋଚନା ହୋଇ ଯାଇଅଛି, ସେ ସମସ୍ତ ଏହି ଉତ୍କଳ ପ୍ରଦେଶରେ ପରୀକ୍ଷିତ ହୋଇଅଛି । ବୈଦିକ ଧର୍ମମତକୁ ଏ ଦେଶବାସୀ ବ୍ରାହ୍ମଣସମାଜ ଅଦ୍ୟାବଧି ପରମବିଶ୍ୱାସ ଓ ଶ୍ରଦ୍ଧା ସହକାରେ ଅବଲମ୍ବନ କରି

Digitized by srujanika@gmail.com

ରହିଅଛନ୍ତି । ବୈଦିକ ଧର୍ମର ଦୋଷ ଦୁର୍ବଳତା ଦୂର କରିବା ପାଇଁ ହିମାଦ୍ରି ପ୍ରଦେଶରେ ଜନ୍ମ ପରିଗ୍ରହ କରି ମହାପୁରୁଷ ବୁଦ୍ଧଦେବ ଯେଉଁ ଜ୍ଞାନବାଦ ପ୍ରଚାର କଲେ ବହୁ ଶତବର୍ଷ ପର୍ଯ୍ୟନ୍ତ ଆମ ଉତ୍କଳଖଣ୍ଡରେ ତାହା ଆଲୋଚିତ ଓ ଅନୁଶୀଳିତ ହୋଇଥିଲା । ଖଣ୍ଡଗିରି, ଉଦୟଗିରି, ଲଳିତଗିରି ପ୍ରଭୃତିର ବୌଦ୍ଧଗୁମ୍ଫା ଓ ବିହାରମାନଙ୍କର ଧ୍ୱଂସାବଶେଷ ଅଦ୍ୟାପି ତାହାର ମୂକ-ସାକ୍ଷୀରୂପେ ବିଦ୍ୟମାନ । ତା ପରେ ଶୈବ ଧର୍ମର ପ୍ରବୋଧା ମହାମନୀଷୀ ଶଙ୍କରା-ଚାର୍ଯ୍ୟଙ୍କର ଆବିର୍ଭାବ ହେଲା । ସେ ମହାତ୍ମା ତାଙ୍କ ବଳିଷ୍ଠ ଯୁକ୍ତିଦ୍ୱାରା ତତ୍କାଳୀନ ବୌଦ୍ଧ, ଚାର୍ବାକ, ଜୈନ ପ୍ରଭୃତି ନାସ୍ତିକମାନଙ୍କର ମତ ଖଣ୍ଡନ କରି ତାଙ୍କ ମତ ସ୍ଥାପନ କଲେ । ଏ ମହାତ୍ମାଙ୍କର ମତକୁ ଶୈବ ମତ ବୋଲି ଲୋକେ କହି ଆସୁଛନ୍ତି । ଏଣେ ନାସ୍ତିକ ମାନଙ୍କ ଦ୍ୱାରା ଦୁର୍ବଳ ବୈଦିକ ଧର୍ମମତକୁ ସବଳ କରିବା ପାଇଁ ସେ ଶିଷ୍ୟ ସଂଗ୍ରହ କରି ଭାରତର ନାନା ସ୍ଥାନ ଭ୍ରମଣ କଲେ ଏବଂ ତାଙ୍କ ମତର ବିଜୟ ସ୍ତମ୍ଭ ସ୍ୱରୂପ ସେ ଭାରତର ଚାରି ଦିଗରେ ଚାରିଗୋଟି ମଠ ସ୍ଥାପନ କରାଇଲେ । ସେହି ମଠଗୁଡ଼ିକ ବର୍ତ୍ତମାନ ସୁଦ୍ଧା ଗୋବର୍ଦ୍ଧନ, ଶାରଦା, ଶୃଙ୍ଗେରୀ, ଓ ଜ୍ୟୋତି ନାମରେ ଲୋକସମାଜରେ କଥିତ ହେଉଅଛୁ । ତାଙ୍କ ଶିଷ୍ୟମାନଙ୍କ ଭିତରେ ପଦ୍ମପାଦ, ହସ୍ତାମଳକ, ଶୁରେଶ୍ୱର ଓ ତୋଟକ ପ୍ରସିଦ୍ଧ ଥିବାରୁ ଶ୍ରୀ ପଦ୍ମପାଦଙ୍କୁ ପୂର୍ବଦେଶ ଅନ୍ତର୍ଗତ ଋଗ୍‌ବେଦୀୟ ଗୋବର୍ଦ୍ଧନମଠ ପୁରୀରେ, ଶ୍ରୀହସ୍ତାମଳକଙ୍କୁ ପଶ୍ଚିମଦେଶ ଅନ୍ତର୍ଗତ ସାମବେଦୀୟ ସାରଦା ମଠରେ, ଶ୍ରୀ ସୁରେଶ୍ୱରଙ୍କୁ ଦକ୍ଷିଣଦେଶ ଅନ୍ତର୍ଗତ ଯଜୁର୍ବେଦୀୟ ଶୃଙ୍ଗେରୀ ମଠରେ ଏବଂ ଶ୍ରୀ ତୋଟକଙ୍କୁ ଉତ୍ତରଦେଶ ଅନ୍ତର୍ଗତ ଅଥର୍ବବେଦୀୟ ଜ୍ୟୋତି ମଠରେ ମଠାଧୀଶ ସ୍ୱରୂପେ ସ୍ଥାପନ କରାଇ ଶୈବମତ ପ୍ରଚାର କରାଇଥିଲେ । ବିଶେଷତଃ ସେ

Digitized by srujanika@gmail.com

ତାଙ୍କ ମତ ପ୍ରଚାର ପାଇଁ ଉତ୍କଳକୁ ଆସି ପୁରୀରେ ଗୋବର୍ଦ୍ଧନ ମଠ ଛଡ଼ା, ଭୁବନେଶ୍ୱର, ଯାଜପୁର, ଏପରିକି ପ୍ରତି ଗ୍ରାମରେ ଶିବମନ୍ଦିର ପ୍ରତିଷ୍ଠା—ପରମହଂସ ଶଙ୍କରଙ୍କ ଓଡ଼ିଶା ଦିଗ୍‌ବିଜୟର ନିଦର୍ଶନ । ଚନ୍ଦ୍ରଭାଗା ନଦୀର ତୀରବର୍ତ୍ତୀ ମୈତ୍ରେୟ ବନରେ ଶାମ୍ବଙ୍କ ସୂର୍ଯ୍ୟୋପାସନାଦ୍ୱାରା କୁଷ୍ଠ ରୋଗରୁ ମୁକ୍ତ ଏବଂ ପରବର୍ତ୍ତୀକାଳରେ ସେଠାରେ କୋଣାର୍କ ସୂର୍ଯ୍ୟମନ୍ଦିର ନିର୍ମାଣ, ଉତ୍କଳଖଣ୍ଡରେ ସୌରମତ ଆଲୋଚନାର ସୁନ୍ଦର ଚିହ୍ନ । ବୈଷ୍ଣବଧର୍ମ ମତର ଅଗ୍ରୀର୍ଯ୍ୟ ଚୈତନ୍ୟଦେବ ବଙ୍ଗଦେଶରେ ଜନ୍ମିଥିଲେହେଁ, ତାଙ୍କ ଧର୍ମମତ ପ୍ରଚାର ପାଇଁ ଉତ୍କଳଖଣ୍ଡକୁ ପ୍ରଶସ୍ତ କ୍ଷେତ୍ରରୂପେ ବାଛି ନେଇଥିଲେ । ରାମାନୁଜାଚାର୍ଯ୍ୟ ପ୍ରମୁଖ ରାମମତାବଲମ୍ବୀ ଧର୍ମପ୍ରଚାରକମାନେ ମଧ୍ୟ, ପୁରୀକୁ ସେମାନଙ୍କ ଧର୍ମ ପ୍ରଚାରର କେନ୍ଦ୍ର କରିଥିଲେ ।

## ୨ । ଉତ୍କଳରେ ତନ୍ତ୍ର ଉପାସନା

ବୌଦ୍ଧଧର୍ମର ପ୍ରଚାର ସଙ୍ଗେ ସଙ୍ଗେ ଏ ଦେଶରେ ତନ୍ତ୍ରମତର ଆଲୋଚନା ଆରମ୍ଭ ହୋଇଥିଲା । ପରଂବ୍ରହ୍ମ, ନିର୍ଲିପ୍ତ, ନିରାକାର ଓ ନିଷ୍କ୍ରିୟ; ମାୟା ବା ପ୍ରକୃତି ତାଙ୍କର ସାହଚର୍ଯ୍ୟ ଲାଭ କରି ବିଶ୍ୱ-ବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି ଓ ଲୟ କାର୍ଯ୍ୟ କରନ୍ତି । ଏହି ଦାର୍ଶନିକ ମତବାଦ ଉପରେ ତନ୍ତ୍ରମତରେ ପ୍ରତିଷ୍ଠା ବା ଶିବଶକ୍ତି ଉପାସନାର ଉପକ୍ରମ । ପରବର୍ତ୍ତୀ କାଳରେ ପଞ୍ଚମକାର ପ୍ରଭୃତିର ବିକୃତ ବ୍ୟାଖ୍ୟାଦ୍ୱାରା ତନ୍ତ୍ରମତ ଦୂଷିତ ହୋଇଥିଲେହେଁ ଏହାର ମୂଳ ଯେ, ଅନାବିଳ ଏକେଶ୍ୱରବାଦରୂପ ସତ୍ୟ ଉପରେ ପ୍ରତିଷ୍ଠିତ—ମହାନିର୍ବାଣତନ୍ତ୍ର ପ୍ରଭୃତି ଆଲୋଚନାରୁ ଏହା ସ୍ପଷ୍ଟ ଜଣାଯାଏ । ଆମ ଉତ୍କଳଖଣ୍ଡରେ ଏହି ତନ୍ତ୍ର ଉପାସନା ପ୍ରଚଳିତ ଥିଲା । ଶ୍ରୀ ଜଗନ୍ନାଥ

Digitized by srujanika@gmail.com

ଦେବଙ୍କ ମନ୍ଦିର ମଧ୍ୟରେ ଶକ୍ତିସ୍ୱରୂପିଣୀ ବିମଳାଙ୍କ ବିଶିଷ୍ଟତ୍ୱର ସ୍ୱୀକାର ଏହାର ପ୍ରତ୍ୟକ୍ଷ ପ୍ରମାଣ; ବିମଳାଙ୍କଠାରେ ସମର୍ପିତ ନ ହେଲେ ଶ୍ରୀ ଜଗନ୍ନାଥଙ୍କଠାରେ ଅର୍ପିତ ବସ୍ତୁ 'ମହାପ୍ରସାଦ' ରୂପେ ହିନ୍ଦୁଧର୍ମର କୌଣସି ସମ୍ପ୍ରଦାୟ ପକ୍ଷରେ ଗ୍ରହଣୀୟ ନୁହେଁ—ଏହା ସର୍ବ ଧର୍ମମତ ସମନ୍ୱୟର ମୂଳସୂତ୍ର ।

ଉତ୍କଳର ସ୍ୱାଧୀନ ହିନ୍ଦୁ ନରପତିମାନେ ଏହି ମତବାଦର ପ୍ରଧାନ ପୃଷ୍ଠପୋଷକ ଥିଲେ । ଏ ଦେଶରେ ଧର୍ମର ଇତିହାସ ନାହିଁ, କିମ୍ବଦନ୍ତୀ ମାନଙ୍କରୁ ଜଣାଯାଏ ଯେ, ଗଜପତିବଂଶୀୟ ଉତ୍କଳେଶ୍ୱର କପିଳେନ୍ଦ୍ରଦେବଙ୍କ ରାଜତ୍ୱରେ ଏହି ଶକ୍ତି ଉପାସନା ସମାଜର ମୁଖ୍ୟଧର୍ମ ଥିଲା ଓ ଉତ୍କଳର ବିଭିନ୍ନ ଅଞ୍ଚଳରେ ତନ୍ତ୍ରମତରେ ଶିବଶକ୍ତି ଉପାସନା ପାଇଁ ବହୁ ମନ୍ଦିର ଓ ମୂର୍ତ୍ତି ପ୍ରତିଷ୍ଠିତ ହୋଇଥିଲା, ଏବଂ ପ୍ରଧାନ ପ୍ରଧାନ ପୀଠଗୁଡ଼ିକର ପରିଚାଳନାର ଦାୟିତ୍ୱ ରାଜା ସ୍ୱୟଂ ବହନ କରିଥିଲେ । ଖୋର୍ଦ୍ଧା ସବ୍‌ଡିଭିଜନ ଅନ୍ତର୍ଗତ ମୂଳଙ୍ଗରଗଡ଼ ନାମକ ସ୍ଥାନରେ ପ୍ରତିଷ୍ଠିତ 'ଶ୍ରୀ ଉଗ୍ରତାରା ପୀଠ' ମହାରାଜ କପିଳେନ୍ଦ୍ର ଦେବଙ୍କ କୀର୍ତ୍ତି ବୋଲି ସ୍ଥାନୀୟ ଜନଶ୍ରୁତିରୁ ଜଣାଯାଏ । କପିଳେନ୍ଦ୍ର ଦେବ ୧୪୩୫ ଖ୍ରୀଷ୍ଟାବ୍ଦରେ ଉତ୍କଳ ରାଜସିଂହାସନ ଅଧିକାର କରିଥିଲେ । ସୁତରାଂ ଅନ୍ତତ ପ୍ରାୟ ପାଞ୍ଚଶ ବର୍ଷ ପୂର୍ବେ ଏ ପୀଠର ପ୍ରତିଷ୍ଠା । ତିନିଦିଗରେ ପର୍ବତ, ଅନ୍ୟ ଦିଗରେ ଚିଲିକାହ୍ରଦ, ନିକଟରେ ଜନବସତି ନାହିଁ, ଅତି ନିକାଞ୍ଚନ ସ୍ଥାନ; ପୂର୍ବ ଓ ଦକ୍ଷିଣ ଦିଗସ୍ଥ ବେଙ୍ଗଲ ନାଗପୁର ରେଲ୍‌ୱେୟେ ଲାଇନର ଭୁଷଣ୍ଡପୁର ଷ୍ଟେସନ ଏହାର ଅର୍ଦ୍ଧମାଇଲ ଦୂରରେ ପରବର୍ତ୍ତୀ କାଳରେ ନିର୍ମିତ ହୋଇଅଛି । ପୀଠର ପଶ୍ଚିମରେ ମାନ୍ଦ୍ରାଜ ଟ୍ରଙ୍କରୋଡ଼ ଦୁଇମାଇଲ ଦୂରରେ ଅବସ୍ଥିତ । ତନ୍ତ୍ର ଶାସ୍ତ୍ରର ବିଧି ଅନୁସାରେ ଶିବମନ୍ଦିର ସଂଲଗ୍ନ ଦେବୀ ମନ୍ଦିର

Digitized by srujanika@gmail.com

ପଞ୍ଚକୋଶ ବ୍ୟାସାର୍ଦ୍ଧ ମଧ୍ୟରେ ପଞ୍ଚ ସ୍ୱୟମ୍ଭୁ ଶିବଲିଙ୍ଗଙ୍କ ଦ୍ୱାରା ପରିବେଷ୍ଟିତ ନ ହେଲେ ତାହା ସିଦ୍ଧପୀଠରେ ପରିଗଣିତ ହୋଇ ନ ପାରେ । କିନ୍ତୁ ଏ ପୀଠର ପାଞ୍ଚକୋଶ ମଧ୍ୟରେ ଚଣ୍ଡେଶ୍ୱର, ଜଳେଶ୍ୱର, ରାମେଶ୍ୱର, କପିଳେଶ୍ୱର, ଗଙ୍ଗେଶ୍ୱର ଏହି ପାଞ୍ଚ ସ୍ୱୟମ୍ଭୁ ଶିବଲିଙ୍ଗ ପ୍ରତିଷ୍ଠିତ । ପୁଣି ଦେବୀଙ୍କ ପାଖେ ଗ୍ରାମେଶ୍ୱର ନାମକ ଏକ ମହାଦେବ ଅଛନ୍ତି । ସ୍ଥାନର ପ୍ରାକୃତିକ ଦୃଶ୍ୟ ବଡ଼ କମନୀୟ । ଏହି ନିର୍ଜନ ସ୍ଥାନରେ ବସିଲେ ସାଧକର ହୃଦୟ ସ୍ୱତଃ ଭକ୍ତି ରସରେ ଆପ୍ଳୁତ ହୋଇ ଉଠେ । ସମ୍ମୁଖବର୍ତ୍ତୀ ପ୍ରଶସ୍ତ ପ୍ରାନ୍ତର ଦେଖିଲେ ଜଣାଯାଏ ଯେ ଏହା ପୂର୍ବେ ଗୋଟିଏ ଯୁଦ୍ଧକ୍ଷେତ୍ର ଥିଲା । ନିକଟରେ ଗୋଟିଏ ଦୁର୍ଗର ଧ୍ୱଂସାବଶେଷ ମଧ୍ୟ ବର୍ତ୍ତମାନ ଅଛି । ଏହାକୁ ଲୋକେ ମୂଳ ଝଂର ଦୁର୍ଗ ବୋଲି କହି ଆସୁଛନ୍ତି । ପ୍ରବାଦ ଅଛି ଯୁଦ୍ଧପ୍ରିୟ କପିଳେନ୍ଦ୍ର ଦେବଙ୍କ ସଙ୍ଗେ ଦାକ୍ଷିଣାତ୍ୟର ମୁସଲମାନଙ୍କର ଏଠାରେ ଗୋଟିଏ ଭୟଙ୍କର ଯୁଦ୍ଧ ହୋଇଥିଲା ଏବଂ ଏହି ଯୁଦ୍ଧରେ ଉଭୟ ପକ୍ଷର ଏକଲକ୍ଷ ଲୋକ ନିହତ ହୋଇଥିଲେ । ସେହି ଏକଲକ୍ଷ ନର ଶିର ଯେଉଁଠାରେ ପ୍ରୋଥିତ ହୋଇଥିଲା, ତା'ହାର ଉପରେ ଏ ଦେବୀପୀଠ ନିର୍ମିତ ହୋଇଅଛି । ଏହା ଗୋଟିଏ ଜୀର୍ଣ୍ଣମଣ୍ଡପରେ ଥିଲା । ଯେତେବେଳେ ଉକ୍ତମଣ୍ଡପ ପରିବର୍ତ୍ତେ ମନ୍ଦିର ନିର୍ମାଣ କରିବାକୁ ମତେ ସ୍ୱପ୍ନାଦେଶ ହୋଇଥିଲା ସେତେବେଳେ ମୂଳପତ୍ତନ ଦେବାଲାଗି ଗ୍ରୁଚପାଖରେ ପ୍ରାୟ ୫।୬ ଫୁଟ ଗଭୀରର ଗର୍ତ୍ତ ଖୋଳିବାକୁ ପଡ଼ିଲା । ମାଟିତଳୁ ମନୁଷ୍ୟର ଖପୁରୀ, ଅସ୍ଥି ଓ ଅଙ୍ଗାର ପ୍ରଚୁର ପରିମାଣରେ ବାହାରିବାରୁ ଏହି ଜନଶ୍ରୁତି ସତ୍ୟ ଉପରେ ପ୍ରତିଷ୍ଠିତ ବୋଲି ସ୍ପଷ୍ଟରୂପେ ଜଣାଗଲା । ଏବେ ଦେବୀଙ୍କ ସିଂହାସନ ନିକଟରେ ଗୋଟିଏ କ୍ଷୁଦ୍ର ବବର ଦେଖାଯାଏ । ଶତ ଶତ ପୂର୍ଣ୍ଣକୁମ୍ଭର ଜଳ ସେହି ଗର୍ତ୍ତ ମଧ୍ୟରେ

Digitized by srujanika@gmail.com

ଗୃହ୍ୱ ଗୃହ୍ୱ କେଉଁଆଡ଼େ ଅନ୍ତର୍ହିତ ହୋଇଯାଏ । କପିଳେନ୍ଦ୍ରଙ୍କ ଜୀବନକାଳ ଦାକ୍ଷିଣାତ୍ୟର ଯୁଦ୍ଧ ଅଭିଯାନରେ ଅନ୍ତର୍ହିତ ହୋଇଥିଲେ । ତାଙ୍କପରେ ଯୁବରାଜ ପୁରୁଷୋତ୍ତମ ଦେବ ସିଂହାସନ ଅଧିରୋହଣ କଲେ । କାଞ୍ଚୀଯୁଦ୍ଧ ପୁରୁଷୋତ୍ତମ ଦେବଙ୍କ ରାଜତ୍ୱର ପ୍ରଧାନ ଘଟଣା । ଏବେ ଚିଲିକା ହ୍ରଦରୁ ପୀଠ ନିକଟବର୍ତ୍ତୀ ଅଞ୍ଚଳଯାଏ ଗୋଟିଏ ଖୋଲା ହୋଇଥିବା ନାଳର ଧ୍ୱଂସାବଶେଷ ଦେଖାଯାଏ । ଲୋକେ କହନ୍ତି ପୁରୁଷୋତ୍ତମ କାଞ୍ଚୀଯୁଦ୍ଧରେ ଜୟଶ୍ରୀ-ମଣ୍ଡିତ ହୋଇ ପଦ୍ମାବତୀଙ୍କ ସଙ୍ଗେ ଚିଲିକା ମଧ୍ୟରେ ବୋଇତରେ ଆସି ପ୍ରଥମେ ସ୍ୱଦେଶରେ ଏହି ଦେବୀଙ୍କ ଦର୍ଶନ ଲାଭ କରିଥିଲେ । ଚିଲିକାରୁ ରାଜଦମ୍ପତିଙ୍କ ବୋଇତ ଏହି ମନ୍ଦିର ପର୍ଯ୍ୟନ୍ତ ଆସିବାକୁ ଯେଉଁ ନାଳ ଖୋଲା ହୋଇଥିଲା, ଆଜିଯାଏ ତାହାର କିଛିଅଂଶ ବିଦ୍ୟମାନ ଅଛି । ଏହି ନାଳର ନାମ ବୋଇତଖିଆ ।

## ୩ । ଉତ୍କଳର ତାରାପୀଠ

ଏହାହିଁ ଓଡ଼ିଶା ପ୍ରଦେଶରେ ଏକମାତ୍ର 'ତାରା ପୀଠ' ।' ତାନ୍ତ୍ରିକ ଯୁଗରେ ସାଧକମାନେ ସତ୍ୟଶିବସୁନ୍ଦର ପରମେଶ୍ୱରଙ୍କ ଶକ୍ତିକୁ ଯେଉଁ ଦଶବିଧ ରୂପରେ ପୂଜା କରୁଥିଲେ, ତାହା ଦଶମହା-ବିଦ୍ୟା ନାମରେ ପରିଚିତ । 'ତାରା ବା ଉଗ୍ରତାରା' ଏହି ଦଶମହାବିଦ୍ୟା ଅନ୍ତର୍ଗତ ଦ୍ୱିତୀୟା ମହାବିଦ୍ୟା; ଏହାଙ୍କୁହିଁ 'ନୀଳସରସ୍ୱତୀ' ନାମରେ ଅଭିହିତ କରାଯାଏ । ବିଧାନ ଅନୁସାରେ ଏହିସବୁ ଦେବୀଙ୍କ ଉପାସନା କରି ଆଗେ ତାନ୍ତ୍ରିକ ସାଧକମାନେ ଯେଉଁସବୁ ଅସାଧ୍ୟ ସାଧନ କରୁଥିଲେ ତାହା ଶୁଣିଲେ ଭୟ ଓ ବିସ୍ମୟରେ ରୋମ ଟାଙ୍କୁରି ଉଠେ; ଆଦ୍ୟାଶକ୍ତି କାଳୀଙ୍କ ଉପାସନା କରି ଅଜ୍ଞ 'କାଳିଦାସ' ଜଗତର ଶ୍ରେଷ୍ଠ କବି । ଏହି ଉଗ୍ରତାରା

ପୀଠରେ ଉପାସନା କରି କେତେ ସାଧକ ଭକ୍ତ ଯେ, ସିଦ୍ଧିଲାଭ କରି ଅଛନ୍ତି; ତାହାର ଇୟତ୍ତା ନାହିଁ । ଏବେ ପ୍ରତ୍ୟହ ଶତ ଶତ ଲୋକ ଏ ପୀଠକୁ ଆସି କାମନା ସିଦ୍ଧି ପାଇଁ ଦେବୀଙ୍କୁ ଧୂପ ଦୀପ ନୈବେଦ୍ୟାଦି-ଦ୍ୱାରା ଆରାଧନା କରୁଅଛନ୍ତି । ଦେବୀଙ୍କ ମସ୍ତକରେ ସମର୍ପିତ ପୁଷ୍ପଦ୍ୱାରାହିଁ ଭକ୍ତର କାମନା ସିଦ୍ଧିର ସୂଚନା ମିଳେ । ଭକ୍ତର ଅଭିଳାଷ ଅନୁସାରେ ଯେବେ ପୁଷ୍ପ ବିଶେଷ ଦେବୀଙ୍କ ଶ୍ରୀମସ୍ତକରୁ ସ୍ଖଳିତ ହୁଏ, ତେବେ ଭକ୍ତ ବୁଝେ ଯେ, ତାହାର କାମନା ସିଦ୍ଧ ହେବ । ସ୍ଖଳିତ ନ ହେଲେ ବୁଝେ ଯେ, ତାହାର କାମନା ସିଦ୍ଧ ହେବ ନାହିଁ । ଅନେକ ଭକ୍ତଙ୍କଦ୍ୱାରା ଏହା ବହୁବାର ପରୀକ୍ଷିତ ହୋଇଅଛି । ଏବେ ମଧ୍ୟ ଅନେକ ତାନ୍ତ୍ରିକ ବ୍ରାହ୍ମଣ ଏଠାରେ ଉପାସନା କରିବାକୁ ଆସନ୍ତି । ଶତ ଶତ ଲୋକ ଗୁହାରିଆ ବା ଅଧିଆ ପଡ଼ି ଦେବୀଙ୍କ ଅନୁଗ୍ରହ ଲାଭ ପୂର୍ବକ କୃତାର୍ଥ ହେଉ ଅଛନ୍ତି ।

ଏଠାରେ ତନ୍ତ୍ର ଶାସ୍ତ୍ରାନୁସାରେ ପଞ୍ଚ ମକାରରେ ଭଗବତୀଙ୍କୁ ପୂଜା କରାଯାଏ । ପଞ୍ଚମକାର ଅର୍ଥାତ୍ ପାଞ୍ଚଗୋଟି ଦ୍ରବ୍ୟର ଆଦ୍ୟ ଅକ୍ଷର 'ମ'; ଯଥା :—ମଦ୍ୟ, ମାଂସ, ମତ୍ସ୍ୟ, ମୁଦ୍ରା ଓ ମୈଥୁନ ଏହି ପାଞ୍ଚଟିକୁ ପଞ୍ଚମକାର କୁହାଯାଏ ।

## ୪—ପଞ୍ଚମକାର

"ମଦ୍ୟଂ ମାଂସଂ ତଥା ମତ୍ସ୍ୟଂ ମୁଦ୍ରାଂ ମୈଥୁନମେବଚ
ମକାର ପଞ୍ଚକଂ ଚୈବ ମହାପାତକନାଶନମ୍ ।"

ଏହି ପଞ୍ଚମକାରଦ୍ୱାରା ଦେବୀଙ୍କୁ ଉପାସନା କଲେ, ମହାପାତକ ନାଶ ହୁଏ । ସାଧାରଣତଃ ଏହାର ମୂଳତତ୍ତ୍ୱ ଓ ଉଦ୍ଦେଶ୍ୟ ନ ବୁଝି ଏ ସମ୍ପର୍କରେ ବହୁଲୋକ ବହୁକଥା କହୁଅଛନ୍ତି । ଏତଦ୍ଦ୍ୱାରା ତନ୍ତ୍ରଶାସ୍ତ୍ରର ନିନ୍ଦା ଓ ପୂଜକର ନିନ୍ଦା ଘଟୁଅଛି । ତେଣୁ

Digitized by srujanika@gmail.com

ଏଠାରେ ତନ୍ତ୍ର ଶବ୍ଦର ଅର୍ଥ, ତନ୍ତ୍ରର ପ୍ରଶଂସା, ଅନ୍ୟାନ୍ୟ ଶାସ୍ତ୍ର ସଙ୍ଗେ ତନ୍ତ୍ରର ସମ୍ବନ୍ଧ, ପଞ୍ଚମକାରର ଭୌତିକ ଅର୍ଥ ଓ ଆଧ୍ୟାତ୍ମିକ ଅର୍ଥ କ୍ରମଶଃ ପ୍ରକାଶ କରି ଯାଉଅଛୁ ।

## ତନ୍ତ୍ର ଶବ୍ଦର ଅର୍ଥ

ତନ୍ତ୍ର—ଶାସ୍ତ୍ର, ସିଦ୍ଧାନ୍ତ, ଅନୁଷ୍ଠାନ, ବିଜ୍ଞାନ ଓ ଆଗମ (ଆ—ଗମ୍ + ଅ=ଆଗମ) ଅର୍ଥାତ୍ ଯେଉଁ ଶାସ୍ତ୍ର ଅଧ୍ୟୟନ କରିବା-ଦ୍ୱାରା ବୁଦ୍ଧିକୁ ଭୋଗ ଓ ମୋକ୍ଷର ଉପାୟ ନିଜେ ନିଜେ ଆସିଯାଏ ତାହାକୁ ଆଗମ କହନ୍ତି ।

## ଆଗମ ପ୍ରଶଂସା

"ଆଗମେ ସର୍ବବିଦ୍ୟାଶ୍ଚ ସର୍ବଶାସ୍ତ୍ରାଣି ଚାଗମେ
ଆଗମେ ବେଦ ବେଦାନ୍ତ ଆଗମାଚ ପରଂଗତିଃ ।"

ଅର୍ଥାତ୍ ତନ୍ତ୍ରଶାସ୍ତ୍ରରେ ସମସ୍ତ ବିଦ୍ୟା, ସମସ୍ତ ଶାସ୍ତ୍ର ଓ ସମସ୍ତ ବେଦ ପରିପୂର୍ଣ୍ଣ ଭାବେ ରହିଅଛି । ଏହି ଶାସ୍ତ୍ର ଅଧ୍ୟୟନରେ ଲୋକର ମୁକ୍ତି ସୁନିଶ୍ଚିତ । ତନ୍ତ୍ର କୌଣସି ସ୍ୱତନ୍ତ୍ର ଶାସ୍ତ୍ର ନୁହେଁ । ଏହା ବେଦର ରୂପାନ୍ତର ମାତ୍ର । ଭୋଗ ମାର୍ଗଦେଇ ନିବୃତ୍ତି ମାର୍ଗରେ ସହଜରେ ପ୍ରବେଶ କରିବା ପାଇଁ ଏହି ଶାସ୍ତ୍ର ଅତି ଉତ୍କୃଷ୍ଟ ପଦ୍ଧତିରେ ପରିପୂର୍ଣ୍ଣ । ଏହାର ମୂଳଭିତ୍ତି ବିଶେଷତଃ ସାଂଖ୍ୟ ଦର୍ଶନ ଓ ଉପନିଷଦର ଉପରେ ସ୍ଥାପିତ । ଏଥିରେ ମୁକ୍ତି ପ୍ରାପ୍ତିର ସହଜ ଉପାୟ ବର୍ଣ୍ଣିତ ହୋଇଅଛି ।

## ଅନ୍ୟାନ୍ୟ ଶାସ୍ତ୍ର ସଙ୍ଗେ ତନ୍ତ୍ରଶାସ୍ତ୍ରର ସମ୍ବନ୍ଧ

ସତ୍ତ୍ୱ, ରଜଃ ଓ ତମ; ତ୍ରିଗୁଣ ଭେଦରେ ଉପାସନାର ଅଧିକାର ଓ ପ୍ରକାର ଭେଦ ବେଦରେ ଯେପରି ବ୍ୟବସ୍ଥିତ

Digitized by srujanika@gmail.com

ହୋଇଅଛି, ଏହି ଶାସ୍ତ୍ରରେ ମଧ୍ୟ ସେହିପରି ଅଧିକାର ଓ ପ୍ରକାର ଭେଦ ବ୍ୟବସ୍ଥିତ ହୋଇଅଛି।

କପିଳଙ୍କ ସାଂଖ୍ୟଶାସ୍ତ୍ର ପ୍ରଣୀତ ପୁରୁଷ, ଯେପରି ରୁଚି ଓ ଅଧିକାର ଭେଦରେ କୃଷ୍ଣ, ରାମ ଓ ହର ପ୍ରଭୃତି ନାନା ରୂପରେ ଅର୍ଚ୍ଚିତ ହୋଇ ଅଛନ୍ତି; ସେହିପରି ପ୍ରକୃତି ଅର୍ଥାତ୍ ରାଧା, ସୀତା ଓ ଗୌରୀ ରୂପରେ ଅର୍ଚ୍ଚିତା ହୋଇ ଅଛନ୍ତି।

ସତ୍ତ୍ୱାଧିକ୍ୟ ଓ ପୁରୁଷର ସାନ୍ନିଧ୍ୟ ହେତୁ ମହତ୍ ତତ୍ତ୍ୱ ବା ବୁଦ୍ଧିତତ୍ତ୍ୱ ଉତ୍ପନ୍ନ, ବୁଦ୍ଧିତତ୍ତ୍ୱରୁ ଅହଙ୍କାରତତ୍ତ୍ୱ, ଅହଙ୍କାର ତତ୍ତ୍ୱରୁ ପଞ୍ଚତନ୍ମାତ୍ର ଓ ଉଭୟ ଇନ୍ଦ୍ରିୟ, ତନ୍ମାତ୍ରରୁ ପଞ୍ଚ ମହାଭୂତ, ଏପରି ସୃଷ୍ଟି ହୋଇଅଛି।

ପୁରୁଷ ଚୈତନ୍ୟ, ସୁଖ ଦୁଃଖାଦି ଶୂନ୍ୟ, ଅକର୍ତ୍ତା ଅର୍ଥାତ୍ କୌଣସି କାର୍ଯ୍ୟ କରନ୍ତି ନାହିଁ। ପ୍ରକୃତି ଜଡ଼, ଅଚେତନ, ସୁଖ ଦୁଃଖାଦି ଯୁକ୍ତ, ମାତ୍ର ପୁରୁଷ ସାନ୍ନିଧ୍ୟରୁ ସଂସାରର କର୍ତ୍ତ୍ରୀ। ଏହି ପ୍ରକୃତି ପୁରୁଷ ପରସ୍ପର ସାପେକ୍ଷ୍ୟ ହେତୁ ଲୌହ ଯେପରି ଚୁମ୍ବକ ସମକ୍ଷରେ ରହିଲେ, ବଳେ ବଳେ ଚୁମ୍ବକ ଆଡ଼କୁ ଆକୃଷ୍ଟ ହୁଏ; ସେହିପରି ପ୍ରକୃତି ଓ ପୁରୁଷ ପରସ୍ପର ନିକଟବର୍ତ୍ତୀ ହେତୁ ସୃଷ୍ଟି ରଚନାରେ ପ୍ରବୃତ୍ତ ହୋଇ ଅଛନ୍ତି। ପ୍ରକୃତିର କେବଳ ସାକ୍ଷାତ୍ କର୍ତ୍ତୃତ୍ୱ, ଏହା ସାଂଖ୍ୟ ଦର୍ଶନର ମତ।

ଏହି ରହସ୍ୟର ସୂଚନା ସ୍ୱରୂପ କାଳୀ, ତାରା ପ୍ରଭୃତିଙ୍କ ମୂର୍ତ୍ତିତଳେ ଶିବମୂର୍ତ୍ତି ସଂସ୍ଥାପିତ। ମନେ ହୁଏ କପିଳଙ୍କ ପ୍ରକାଶିତ ପ୍ରକୃତି ପୁରୁଷର ତତ୍ତ୍ୱ ସମସ୍ତଙ୍କୁ ପରିଷ୍କାରରୂପେ ବୁଝାଇବା ପାଇଁ ପୁରାଣାଦି ଶାସ୍ତ୍ରରେ ପ୍ରକୃତି ପୁରୁଷଙ୍କ ସାକାର ରୂପ ବର୍ଣ୍ଣିତ ହୋଇଅଛି।

Digitized by srujanika@gmail.com

ବାସ୍ତବକ ସୃଷ୍ଟି ଆଦ୍ୟରୁ ପ୍ରକୃତି ପୁରୁଷ ପରସ୍ପର ସଂଯୁକ୍ତ ଥାନ୍ତି । ତାହା ଫଳରେ ପ୍ରକୃତିର ଗୁଣ ପୁରୁଷଠାରେ ଏବଂ ପୁରୁଷର ଗୁଣ ପ୍ରକୃତିଠାରେ ଉପଚରିତ ହୁଏ । ପ୍ରକୃତରେ ପ୍ରକୃତି ଅଚେତନ ହେଲେହେଁ ଚେତନ ବୋଲି ମନେ ହୁଏ ଏବଂ ବସ୍ତୁତଃ ପୁରୁଷ ଅକର୍ତ୍ତା ହେଲେ ମଧ୍ୟ କର୍ତ୍ତା ପରି ମନେ ହୁଏ ।

"ତସ୍ମାତ୍ ତତ୍ ସଂଯୋଗାଦ ଚେତନଂ ଚେତନାବଦିବ ଲିଙ୍ଗମ୍ ।
ଗୁଣ କର୍ତ୍ତୃତ୍ୱେଽପି ତଥା କର୍ତ୍ତେବ ଭବତ୍ୟୁଦାସୀନଃ ।"

ସାଂଖ୍ୟସୂତ୍ର—୨୭

ସାଂଖ୍ୟବାଦୀମାନେ ପୁଣି କହନ୍ତି, ପ୍ରକୃତି ଅଚେତନ, ସୁତରାଂ ଅନ୍ଧ ସ୍ଥାନୀୟ, ପୁରୁଷ ଅକର୍ତ୍ତା ତେଣୁ ପଙ୍ଗୁ ସ୍ଥାନୀୟ, ଉଭୟ ପରସ୍ପର ସଂଯୁକ୍ତ ହେବାରୁ ଗୋଟିଏ ଅପରର ଅଭାବ ପୂରଣ କରେ । ସେମାନଙ୍କ ସଂଯୋଗ ଫଳରେ ସୃଷ୍ଟିକ୍ରିୟା ଆରମ୍ଭ ହୁଏ । ସେ ସୃଷ୍ଟିର ଉଦ୍ଦେଶ୍ୟ ପୁରୁଷର ଭୋଗ ଓ ମୋକ୍ଷ ସାଧନ ।

"ପୁରୁଷସ୍ୟ ଦର୍ଶନାର୍ଥଂ ତଥା ପ୍ରଧାନସ୍ୟ
ପଙ୍ଗ୍ୱନ୍ଧବତ୍ ଉଭୟୋରପି ସଂଯୋଗସ୍ତତ୍କୃତଃସର୍ଗଃ ।"

ସାଂଖ୍ୟସୂତ୍ର—୨୧

ବେଦରେ "ଓଁ" ଏହିପ୍ରଣବ ମନ୍ତ୍ରଦ୍ୱାରା ପରଂବ୍ରହ୍ମଙ୍କର ଉପାସନା କରାଯିବାର ବିଧି ଅଛି । ପାତଞ୍ଜଳ ଦର୍ଶନରେ ମଧ୍ୟ କହି ଅଛନ୍ତି । "ତସ୍ୟ ବାଚକଃ ପ୍ରଣବଃ" ଅର୍ଥାତ୍—

ଅ+ଉ+ମ=ଓଁ ଏହି ବର୍ଣ୍ଣତ୍ରୟ ଯଥାକ୍ରମେ ବିଷ୍ଣୁ, ବ୍ରହ୍ମା ଶିବ ସୂଚକ ଅଟନ୍ତି । ଏହି ତ୍ରିଗୁଣାତ୍ମିକା ତ୍ରିମୂର୍ତ୍ତିଙ୍କୁ ଏକାଥରକେ ଚିନ୍ତା କରିବା ଚଳଚିତ୍ତ ଜୀବ ପକ୍ଷରେ କଷ୍ଟସାଧ୍ୟ, ତେଣୁ ତନ୍ତ୍ର ଶାସ୍ତ୍ରରେ ଦେବ ଓ ଦେବୀଙ୍କର ଅଧିକାରୀ ଭେଦରେ ଗୋଟିଏ ଗୋଟିଏ କରି ଉପାସନା କରିବାର ସୁବ୍ୟବସ୍ଥା କରାଯାଇ ଅଛି ।

Digitized by srujanika@gmail.com

## ୪—ମକାରମାନଙ୍କର ଭୌତିକାର୍ଥ ପ୍ରକାଶ

### ପ୍ରଥମତତ୍ତ୍ୱ—ମଦ୍ୟ

ମହା ନିର୍ବାଣ ତନ୍ତ୍ରରେ କଥିତ ।
ଗୌଡ଼ୀ ପୈଷ୍ଟୀ ତଥା ମାଧ୍ୱୀ ତ୍ରିବିଧା ଚୋତ୍ତମାସୁରା ।
ସୈବ ନାନା ବିଧା ପ୍ରୋକ୍ତା ତାଳ-ଖର୍ଜ୍ଜୁର ସମ୍ଭବା ।
ତଥା ଦେଶ ବିଭେଦେନ ନାନା ଦ୍ରବ୍ୟ ବିଭେଦତଃ ।
ବହୁଧେୟଂ ସମାଖ୍ୟାତା ପ୍ରଶସ୍ତା ଦେବତାର୍ଚ୍ଚନେ ।

ଗୌଡ଼ୀ ( ଗୁଡ଼ଦ୍ୱାରା ଯେ ମଦ୍ୟ ପ୍ରସ୍ତୁତ ହୁଏ), ପୈଷ୍ଟୀ (ପିଷ୍ଟକଦ୍ୱାରା ଯେ ମଦ୍ୟ ପ୍ରସ୍ତୁତ ହୁଏ ) ଓ ମାଧ୍ୱୀ (ମଧୁଦ୍ୱାରା ଯେ ମଦ୍ୟ ପ୍ରସ୍ତୁତ ହୁଏ ) ଏହି ତ୍ରିବିଧ ସୁରା ଉତ୍ତମ ସୁରାରେ ଗଣ୍ୟ, ଏହି ସମସ୍ତ ସୁରା ତାଳ ଖର୍ଜ୍ଜୁର ଓ ଅନ୍ୟାନ୍ୟ ଦ୍ରବ୍ୟ ରସରେ ପ୍ରସ୍ତୁତ ହୋଇଥାଏ; ଦେଶ ଓ ଦ୍ରବ୍ୟ ଭେଦରେ ନାନା ପ୍ରକାର ସୁରାର ସୃଷ୍ଟି ହୋଇଥାଏ; ଦେବାର୍ଚ୍ଚନ ପକ୍ଷରେ ସମସ୍ତ ସୁରା ପ୍ରଶସ୍ତ ।

ମହୌଷଧଂ ଯଜ୍ଜୀବାନାଂ ଦୁଃଖ-ବିସ୍ମାରକଂ ମହତ୍ ।
ଆନନ୍ଦ-ଜନନଂ ଯଚ୍ଚ ତଦାଦ୍ୟତତ୍ତ୍ୱ ଲକ୍ଷଣମ୍ ॥
ଅସଂସ୍କୃତଞ୍ଚ ଯତ୍ତତ୍ତ୍ୱଂ ମୋହଦଂ ଭ୍ରମକାରଣମ୍ ।
ବିପଦ୍-ରୋଗଜନନଂ ତ୍ୟାଜ୍ୟଂ କୌଳିକୈଃ ସଦାପ୍ରିୟେ ।

ଏହା ମହୌଷଧି ସ୍ୱରୂପ, ଏହାର ଆଶ୍ରୟରେ ଜୀବଗଣ ନିଖିଳ ଦୁଃଖ-ରୋଗ ବିସ୍ମୃତ ହୁଏ, ଏହା ଅତିଶୟ ଆନନ୍ଦ ବିଧାନ କରେ । ଯଦି ଆଦ୍ୟତତ୍ତ୍ୱ ଅର୍ଥାତ୍ ମଦ୍ୟ ସଂସ୍କୃତ ନ ହୁଏ, ତେବେ ଏହାଦ୍ୱାରା ମୋହ ଓ ଭ୍ରମର ଉତ୍ପତ୍ତି ହୁଏ । ତେଣୁ ତତ୍ତ୍ୱର ଶୁଦ୍ଧତା ପାଇଁ କିଞ୍ଚିତ୍ ସେବନୀୟ ।

Digitized by srujanika@gmail.com

ମନ୍ତ୍ରଜ୍ଞାନସ୍ଥୂରଣାୟ ବ୍ରହ୍ମଜ୍ଞାନ-ସ୍ଥିରାୟଚ ।
ଅଳିପାନଂ ପ୍ରକର୍ତ୍ତବ୍ୟଂ ଲୋଲୁପୋ ନରକଂ ବ୍ରଜେତ୍ ॥

ଦେବତାର ଧ୍ୟାନ ପରିସ୍ଫୁଟ ରଖିବା ପାଇଁ ଏବଂ ନିଜ ସହିତ ଦେବତାର ଅଭେଦ ଜ୍ଞାନ ସ୍ଥିରରଖିବାପାଇଁ, ଜପ ପୂର୍ବେ ମଦ୍ୟପାନ କରିବ । ଅନନ୍ଦରେ ଲୋଭ ପରବଶ ହୋଇ ମଦ୍ୟପାନ କଲେ ନିଶ୍ଚୟ ନରକଗାମୀ ହେବାକୁ ହୁଏ ।

ଅତଏବ ମଦ୍ୟପାନ କରି ମାତାଲ ହେବା—ତନ୍ତ୍ରର ଉଦ୍ଦେଶ୍ୟ ନୁହେଁ । ଏହା ମନ୍ତ୍ର ପୂତ ଓ ସଂସ୍କୃତ ହେଲେ ଶୁଭଫଳ ପ୍ରଦାନ କରେ ଏବଂ କୁଳକୁଣ୍ଡଳିନୀ ଶକ୍ତିକୁ ଉତ୍ତେଜିତ କରେ, ଏଥିପାଇଁ ତନ୍ତ୍ରଶାସ୍ତ୍ରରେ ମଦ୍ୟପାନର ବ୍ୟବସ୍ଥା କରି ଅଛନ୍ତି । ମଦ୍ୟପାନକୁ ଯଦି ଏକବାର ଦୋଷ ଧରାଯାଏ ତେବେ ସେପରି ଦୋଷ ଖୋଜିବାକୁ ହେଲେ ଜଗତରେ କେଉଁ ପଦାର୍ଥରେ ବା ଦୋଷ ନାହିଁ । ଦେଖନ୍ତୁ ଯେଉଁ ଅନ୍ନ ଜଗତସ୍ଥ ପ୍ରାଣୀମାନଙ୍କର ପ୍ରାଣପ୍ରଦ, ପୁଣି ସେହି ଅନ୍ନ ଅତିରିକ୍ତ ଭାବେ ଖାଦିତ ହେଲେ ଜୀବନର ସଂହାରକ ଅଟେ । "ସର୍ବମତ୍ୟନ୍ତ ଗର୍ହିତମ୍" ତେଣୁ ପ୍ରୟୋଜନ ଓ କାର୍ଯ୍ୟ ସାଧନ ପାଇଁ ଯଥୋଚିତ ବ୍ୟବହାର କର୍ତ୍ତବ୍ୟ, ମଦ୍ୟପାନ ବ୍ୟତିରେକେ ଯାହାର କୁଳକୁଣ୍ଡଳିନୀ ସ୍ୱତଃ ଜାଗ୍ରତ, ସେ ସାଧକ ମଦ୍ୟ ପାନ ନ କରନ୍ତୁ, ଯାହାର କୁଳକୁଣ୍ଡଳିନୀ ଜାଗ୍ରତ ନାହିଁ, ସେହି ସାଧକ ସଂସ୍କୃତ କରିତ୍ ମଦ୍ୟପାନ କଲେ କିଛି ଦୋଷ ହୁଏ ନାହିଁ ।

## ଦ୍ୱିତୀୟ ତତ୍ତ୍ୱ—ମାଂସ

ମାଂସନ୍ତୁ ତ୍ରିବିଧଂ ପ୍ରୋକ୍ତଂ ଜଳଭୂଚର-ଖେଚରମ୍ ।
ଯସ୍ମାତ୍ କସ୍ମାତ୍ ସମାନୀତଂ ଯେନକେନ ବଧାଡତମ୍
ତତ୍ସର୍ବଂ ଦେବତାପ୍ରୀତ୍ୟୈ ଭବେଦେବ ନ ସଂଶୟଃ ।

Digitized by srujanika@gmail.com

ମାଂସ ତ୍ରିବିଧଃ—ଜଳଚର, ଭୂଚର ଓ ଖେଚର । ଏହା ଯେ କୌଣସି ଲୋକ ଦ୍ୱାରା ଘାତିତ ବା ଯେ କୌଣସି ଲୋକଦ୍ୱାରା ଆନୀତ ହେଲେ ଏବଂ ଅର୍ପିତ ହେଲେ ନିଃସନ୍ଦେହରେ ତଦ୍ଦ୍ୱାରା ଦେବତା ସନ୍ତୁଷ୍ଟ ହୁଅନ୍ତି ।

"ବୁଦ୍ଧି-ତେଜୋ-ବଳକରଂ ଦ୍ୱିତୀୟଂ ତତ୍ତ୍ୱ ଲକ୍ଷଣମ୍"

ଦ୍ୱିତୀୟ ତତ୍ତ୍ୱ ପୁଷ୍ଟିକର, ବୁଦ୍ଧି, ବଳ ଓ ତେଜୋବର୍ଦ୍ଧକ ।

## ତୃତୀୟ ତତ୍ତ୍ୱ—ମତ୍ସ୍ୟ

ଉତ୍ତମାସ୍ତ୍ରିବିଧା ମତ୍ସ୍ୟାଃ ଶାଲ-ପାଠୀନ-ରୋହିତାଃ,
ମଧ୍ୟମାଃ କଣ୍ଟକୈର୍ହୀନାଃ ଅଧମା ବହୁ କଣ୍ଟକାଃ ।
ତେଽପି ଦେବ୍ୟୈ ପ୍ରଦାତବ୍ୟା ଯଦସୁଷ୍ଠୁ ବିଭର୍ଜ୍ଜିତାଃ,

ମତ୍ସ୍ୟ ମଧ୍ୟରେ ଶାଳ, ଭାକୁର ଓ ରୋହି ତିନି ଜାତି ଉତ୍ତମ । କଣ୍ଟକହୀନ ଅନ୍ୟାନ୍ୟ ମତ୍ସ୍ୟ ମଧ୍ୟମ ଏବଂ ବହୁ କଣ୍ଟକଶାଳ ମତ୍ସ୍ୟ ଅଧମ । ଯଦି ଶେଷୋକ୍ତ ମତ୍ସ୍ୟ ସୁନ୍ଦର ରୂପେ ଭଜାଯାଏ ତାହାହେଲେ ଦେବୀଙ୍କୁ ନିବେଦନ କରାଯାଇପାରେ ।

ପ୍ରଜା ବୃଦ୍ଧିକରଂ ଗୁପ୍ତି ତୃତୀୟତତ୍ତ୍ୱ ଲକ୍ଷଣମ୍ ।

ତୃତୀୟ ତତ୍ତ୍ୱ, ପ୍ରଜାବୃଦ୍ଧିକର, ଜୀବର ଜୀବନସ୍ୱରୂପ, ବଳପ୍ରଦ ଏବଂ ସୁଖପ୍ରଦ ।

## ଚତୁର୍ଥ ତତ୍ତ୍ୱ—ମୁଦ୍ରା

ମୁଦ୍ରାପି ତ୍ରିବିଧା ପ୍ରୋକ୍ତା ଉତ୍ତମାଦି ପ୍ରଭେଦତଃ,
ଚନ୍ଦ୍ରବିମ୍ବନିଭା ଶୁଭ୍ରା, ଶାଳି ତଣ୍ଡୁଳ ସମ୍ଭବା
ଯବ ଗୋଧୂମଜା ବାପି ଘୃତ ପକ୍ୱା ମନୋହରା ।

Digitized by srujanika@gmail.com

ମୁଦ୍ରେୟମୁତ୍ତମା ମଧ୍ୟା ଭ୍ରଷ୍ଟଧାନ୍ୟାଦିସମ୍ଭବା ।
ଭର୍ଜ୍ଜିତା ନ୍ୟନ୍ୟ ବୀଜାନ୍ୟଧମାପରିକୀର୍ତ୍ତିତା ॥

ମୁଦ୍ରା ମଧ୍ୟ, ଉତ୍ତମ ମଧ୍ୟମ ଅଧମ ଭେଦରେ ତିନି ପ୍ରକାର । ଯାହାଚନ୍ଦ୍ରବତ୍ ଶୁଭ୍ର, ଶାଳିତଣ୍ଡୁଳ ବା ଯବ ଗୋଧୂମ ପ୍ରସ୍ତୁତ, ଯାହା ଘୃତପକ୍ୱ ଓ ମନୋହର, ତାହା ଉତ୍ତମ ମୁଦ୍ରାରେ ପରିଗଣ୍ୟ । ଯାହା ଭ୍ରଷ୍ଟଧାନ୍ୟ ଅର୍ଥାତ୍ ଖଇ ପ୍ରଭୃତିରୁ ଜାତ ତାହା ମଧ୍ୟମ, ଯାହା ଅନ୍ୟ ଶସ୍ୟ ଭର୍ଜ୍ଜିତ, ତାହା ଅଧମ ନାମରେ ପରିକୀର୍ତ୍ତିତ ।

ସୁଲଭଂ ଭୂମିଜାତଂଚ ଜୀବାନାଂ ଜୀବନଂ ଚ ଯତ୍ ।
ଆୟୁର୍ମୂଳଂ ତ୍ରିଜଗତାଂ ଚତୁର୍ଥତତ୍ତ୍ୱଲକ୍ଷଣମ୍ ॥

ଚତୁର୍ଥତତ୍ତ୍ୱ ସୁଲଭ, ଭୂମିଜାତ ଏବଂ ଜୀବର ଜୀବନ ସ୍ୱରୂପ ଓ ତ୍ରିଭୁବନ ଜୀବର ଆୟୁର ମୂଳ ସ୍ୱରୂପ ।

ତନ୍ତ୍ର ଶାସ୍ତ୍ରରେ ଇଚ୍ଛାନୁରୂପ ମତ୍ସ୍ୟ ମାଂସ ପ୍ରଭୃତି ଆହାରର ବାଧା ନାହିଁ । ଯଥା—

ମନ୍ତ୍ରାର୍ଥ-ସ୍ଫୁରଣାୟ ବ୍ରହ୍ମଜ୍ଞାନୋଦ୍ଭବାୟ ଚ ।
ସେବ୍ୟତେ ମଧୁମାଂସାଦ୍ୟ, ତୃଷ୍ଣୟା ଚେତ୍ ସ ପାତକୀ ॥

ମନ୍ତ୍ରାର୍ଥ ଓ ଦେବତା ସ୍ଫୁର୍ତ୍ତିର ନିମିତ୍ତ ଏବଂ ବ୍ରହ୍ମଜ୍ଞା ଉଦ୍ଭବ ନିମିତ୍ତ ମଦ୍ୟମାଂସ ପ୍ରଭୃତି ଯଥା-ନିୟମରେ ବ୍ୟବହୃତ ହୁଏ ।

ଯେ ଲୋଭ ବଶତଃ ମାଂସାଦ୍ୟ ଭକ୍ଷଣ କରନ୍ତି ସେ ପାତକୀ ମଧ୍ୟରେ ଗଣ୍ୟ । ଭୋଗାସକ୍ତ ବ୍ୟକ୍ତିମାନଙ୍କ ପକ୍ଷରେ ମତ୍ସ୍ୟମାଂସାଦ୍ୟ ଦ୍ୱାରା ସାଧନାର ବ୍ୟବସ୍ଥା ତନ୍ତ୍ର ଶାସ୍ତ୍ରରେ କରା ଯାଇଅଛି ।

Digitized by srujanika@gmail.com

ଏ ବିଷୟରେ ମନୁ କହିଛନ୍ତି ।

ନ ମାଂସ ଭକ୍ଷଣେ ଦୋଷୋ ନ ମଦ୍ୟେ ନଚ ମୈଥୁନେ,
ପ୍ରବୃତ୍ତିରେଷା ଭୂତାନାଂ ନିବୃତ୍ତିସ୍ତୁ ମହାଫଳା ।

ମନୁଷ୍ୟମାନଙ୍କ ପକ୍ଷରେ ମଦ୍ୟପାନ, ମାଂସ ଭକ୍ଷଣ ଓ ମୈଥୁନରେ ଦୋଷ ହୁଏ ନାହିଁ । କାରଣ ଏହା ପ୍ରବୃତ୍ତିକର୍ମ, ପରେ ନିବୃତ୍ତି କାଳେ ମହା ଫଳ ପ୍ରଦାନ କରେ ।

## ପଞ୍ଚମତତ୍ତ୍ୱ-ମୈଥୁନ

ଶେଷତତ୍ତ୍ୱଂ ମହେଶାନି ! ନିର୍ବୀର୍ଯ୍ୟଂ ପ୍ରବଳେ କଳୌ ।
ସ୍ୱକୀୟା କେବଲାଜ୍ଞେୟା ସର୍ବଦୋଷ ବିବର୍ଜିତା ।

ହେ ମହେଶାନି ! ପ୍ରବଳ କଳିକାଳରେ ମନୁଷ୍ୟଗଣ ନିର୍ବୀର୍ଯ୍ୟ ହୋଇ ପଡ଼ିବେ । ସୁତରାଂ ଶେଷତତ୍ତ୍ୱ ମୈଥୁନ ସର୍ବ ଦୋଷ ବିବର୍ଜିତ, ନିଜର ସ୍ତ୍ରୀଠାରେ କରିବା ବିଧେୟ । ତାହା କଲେ ଆଉ କୌଣସି ଦୋଷ ଘଟିବାର ସମ୍ଭାବନା ନାହିଁ ।

ବିନା ପରିଣୀତାଂ ବୀରଃ ଶକ୍ତିସେବାଂ ସମାଚରନ୍
ପରସ୍ତ୍ରୀ ଗାମିନାଂ ପାପଂ ପ୍ରାପ୍ନୁୟାତ୍ ନାତ୍ର ସଂଶୟଃ ।

ବିବାହିତା ପତ୍ନୀ ବ୍ୟତୀତ ସାଧକ ଅନ୍ୟ ଶକ୍ତି ( ସ୍ତ୍ରୀ ) ଗ୍ରହଣ କଲେ ପର ସ୍ତ୍ରୀ ହରଣ ପାପରେ ଦୂଷିତ ହେବେ । ଏହା ମହାନିର୍ବାଣ ତନ୍ତ୍ରରେ କହିଅଛନ୍ତି ।

ମହାନନ୍ଦ କରଂ ଦେବି ! ପ୍ରାଣିନାଂ ସୃଷ୍ଟିକାରଣମ୍ ।
ଅନାଦ୍ୟନ୍ତ ଜଗନ୍ମୂଳଂ ଶେଷ ତତ୍ତ୍ୱସ୍ୟ ଲକ୍ଷଣମ୍ ।

ପଞ୍ଚମତତ୍ତ୍ୱ ମହା ଆନନ୍ଦଜନକ, ପ୍ରାଣୀ ସୃଷ୍ଟି କାରକ ଏବଂ ଆଦ୍ୟନ୍ତ ରହିତ ଜଗତର ମୂଳ ।

Digitized by srujanika@gmail.com

ମକାରମାନଙ୍କର ଚ ଆଧ୍ୟାତ୍ମିକାର୍ଥ ଅଛି; କିନ୍ତୁ ପୂର୍ବୋକ୍ତ ମକାରମାନଙ୍କର ଯାହା କିଛି ସ୍ଥୂଳ ବା ଭୌତିକାର୍ଥ ପ୍ରକାଶ କରାଗଲା, ତାହା ସୁଦ୍ଧା ନ ବୁଝି ଆମ୍ଭମାନଙ୍କ ଭିତରୁ କେତେକ କେବଳ ମକାରମାନଙ୍କର ମୋଟା ମୋଟି ଅର୍ଥ ବୁଝି ବିନା ସଂସ୍କାରରେ ଭଗବତୀଙ୍କର ମକାରାଦି ପୂଜା କରିବାରେ ବ୍ୟସ୍ତ । ଇଚ୍ଛାମୁତାବକ ଯେ ଯେତେ ଭଗବତୀଙ୍କ ନାମରେ ଦୋହାଇ ଦେଇ ଅତିରିକ୍ତ ମଦ୍ୟପାନାଦି କରି ଶାସ୍ତ୍ର ନିନ୍ଦା କରୁ ଅଛନ୍ତି । କୁଣ୍ଡଳିନୀ ଶକ୍ତି ଆମ୍ଭମାନଙ୍କର ଦେହସ୍ଥ ଶକ୍ତିସମୂହର ଶକ୍ତି କେନ୍ଦ୍ର । ସେହି ଶକ୍ତି କେନ୍ଦ୍ରକୁ ଉଦ୍‌ବୋଧିତ କରିବାପାଇଁ ତାହା ମୁଖରେ ସଂଶୋଧିତ କାଞ୍ଚିତ୍ ମଦ୍ୟ ପ୍ରଦାନ, ତନ୍ତ୍ର ଶାସ୍ତ୍ରର ଉଦ୍ଦେଶ୍ୟ, ଏହା ଅତି ଶୁଭଙ୍କର । କିନ୍ତୁ ତନ୍ତ୍ର ଶାସ୍ତ୍ରରେ କଥିତ ଅଛି ଯେ, ପଞ୍ଚ ମକାରର ଭୌତିକାର୍ଥ ପୂଜା, ଅର୍ଥାତ୍ ମଦ୍ୟ ମାଂସ ଦାନାଦି ଶୁଦ୍ର ପକ୍ଷରେ କିନ୍ତୁ ବ୍ରାହ୍ମଣାଦି ପକ୍ଷରେ ନୁହେଁ ।

"ଏ ତଦ୍‌ଦ୍ରବ୍ୟ ଦାନଂ ଶୁଦ୍ରସ୍ୟୈବ, ତଥାଚ ଶ୍ରୀକ୍ରମତନ୍ତ୍ରେ "ନଦଦ୍ୟାତ୍ ବ୍ରାହ୍ମଣୋ ମଦ୍ୟଂ ମହା ଦେବ୍ୟୈ କଥଂଚନ । ବାମକାମୋ ବ୍ରାହ୍ମଣୋଽପି ମଦ୍ୟଂ ମାସଂ ନଭକ୍ଷୟେତ୍ ।

ବ୍ରାହ୍ମଣ କେତେବେଳେ ହେଲେ ମହାଦେବୀଙ୍କୁ ମଦ୍ୟଦାନ କରିବେ ନାହିଁ କି ବ୍ରାହ୍ମଣ ବାମାଗ୍ରହୀ ହେଲେ ମଧ୍ଯ କେତେବେଳେ ହେଲେ ମଦ୍ୟ ଓ ମାଂସ ଭକ୍ଷଣ କରିବେ ନାହିଁ ।

କୁଳଚୂଡ଼ା ମଣୌ—ଯତ୍ରାସବମବଶ୍ୟନ୍ତୁ ବ୍ରାହ୍ମଣସ୍ତୁ ବିଶେଷତଃ
ଗୁଡ଼ାଦ୍ରକଂ ତଦା ଦଦ୍ୟାତ୍ ତାମ୍ରେବା, ବିସୃଜେତ୍ ମଧୁ,

କୁଳ ଚୂଡ଼ାମଣି ତନ୍ତ୍ରରେ କହିଅଛନ୍ତି ଯେ, ଯେଉଁ ସ୍ଥଳରେ ମଦ୍ୟ ଦବାର ବ୍ୟବସ୍ଥା ଅଛି; ବ୍ରାହ୍ମଣ ସେ ସ୍ଥଳରେ ଗୁଡ଼ ମିଶ୍ରିତ ଅଦା, ତାମ୍ର ପାତ୍ରରେ ମଧୁ ପ୍ରଦାନ କରି ପାରିବେ ।

Digitized by srujanika@gmail.com

• ଏତତ୍ ଦ୍ରବ୍ୟଂତୁ ଶୂଦ୍ରସ୍ୟ ନାନ୍ୟେଷାଂତୁ କଦାଚନ
ବୈଶ୍ୟସ୍ୟ ମାକ୍ଷିକଂଶୁଦ୍ଧଂ କ୍ଷତ୍ରିୟସ୍ୟତୁ ସାଜ୍ୟକମ୍ ।
ବ୍ରାହ୍ମଣସ୍ୟ ଗବାଂ କ୍ଷୀରଂ ତାମ୍ରେ ବା ବସ୍ତୁଜେତ୍ ମଧୁ ।

"ନାରିକେଳୋଦକଂ କାଂସ୍ୟେ ସର୍ବେଷାଂ ଦ୍ରବ୍ୟଶୋଧନମ୍" । ଏହି ମଦ୍ୟଦାନ ଶୂଦ୍ରପକ୍ଷରେ ବିହିତ । ଅନ୍ୟ ତାହା ପକ୍ଷରେ ନୁହେଁ । ବୈଶ୍ୟ ପକ୍ଷରେ କେବଳ ମାକ୍ଷିକମଧୁ, କ୍ଷତ୍ରିୟ ପକ୍ଷରେ ସଘୃତ ମଧୁ, ବ୍ରାହ୍ମଣ ମଦ୍ୟ ପରିବର୍ତ୍ତେ ଗୋଦୁଗ୍ଧ ଅଥବା ତାମ୍ର ପାତ୍ରେ ବା କାଂସ୍ୟ ପାତ୍ରରେ ମଧୁ ବା ନାରିକେଳ ଜଳ ନିବେଦନ କରିପାରିବେ । କିନ୍ତୁ ଦ୍ରବ୍ୟ ଶୋଧନ ସମସ୍ତଙ୍କର କରିବା ବିଧେୟ ।

ମଦ୍ୟାଭାବେ ଅନୁକଳ୍ପ ବିଧାନମ୍ ।

ତଥାଚ—ଗୋକ୍ଷୀରଂ ବ୍ରାହ୍ମଣୋ ଦଦ୍ୟାତ୍ ଗବ୍ୟମାଜ୍ୟଂଚ ବାହୁଜଃ ।
ବୈଶ୍ୟଶ୍ଚ ମାକ୍ଷିକଂ ଦ୍ରବ୍ୟଂ ଶୂଦ୍ରଃ ପୈଷ୍ଟାଦିକଂ ପୁନଃ ।

କୌଣସି ପ୍ରକାର ମାଦକଦ୍ରବ୍ୟ ନ ପାଇଲେ ସମସ୍ତଙ୍କ ପକ୍ଷରେ ଅନୁକଳ୍ପ କରିବାର ବିଧିଅଛି । ତାହାର ପ୍ରମାଣ—ବ୍ରାହ୍ମଣ ଗୋଦୁଗ୍ଧ, କ୍ଷତ୍ରିୟ ଗବ୍ୟଘୃତ, ବୈଶ୍ୟ ମକ୍ଷିକା କୃତ ମଧୁ, ଶୂଦ୍ରପୁଷ୍ପଜାତ ମଧୁ ଦେଇ ପାରିବେ; ଏହାମଧ୍ୟ ସଂଶୋଧନ କରିଦେବାକୁ ହେବ ।

ମାଂସାଭାବେଽନୁକଳ୍ପ ବିଧାନମ୍

## ସମୟାଚାର ତନ୍ତ୍ରେ ।

ଲବଣାଦ୍ରକ ପିଣ୍ୟାକ ତଲ ଗୋଧୂମ ମାଷକମ୍ ।
ଲଶୁନଂ ତୁ ମହାଦେବି ! ମାଂସପ୍ରତିନିଧି ସ୍ମୃତଃ ।

୨

Digitized by srujanika@gmail.com

## ଭୈରବତନ୍ତ୍ରେ ।

ପାନେ ଭ୍ରାନ୍ତି ର୍ଭବେତ୍ ଯସ୍ୟ ଘୃଣାସ୍ୟାତ୍ ରକ୍ତରେତସୋଃ ।
ଶୁଦ୍ଧୌଶୁ ଶୁଦ୍ଧତା ଭ୍ରାନ୍ତିଃ ପାପାଶଙ୍କା ଚ ମୈଥୁନେ ॥
ସ ଭ୍ରଷ୍ଟଃ ପୂଜୟେତ୍ ଦେବୀଂ ଚଣ୍ଡୀମନ୍ତ୍ରଂ କଥଂ ଜପେତ୍,
ସଂଶୋଧନ ମନାଚର୍ଯ୍ୟ ସ୍ତ୍ରୀଷୁମଦ୍ୟେଷୁ ସାଧକଃ ।
ଅଗ୍ରୁର୍ଯ୍ୟ ସିଦ୍ଧିହାନିଃ ସ୍ୟାତ୍ କ୍ରୁଦ୍ଧାଭବତୀ ଚଣ୍ଡିକା ॥

ଭୈରବ ତନ୍ତ୍ରରେ କଥିତ ଅଛି ଯେ, ପାନରେ ଯାହାର ଭ୍ରାନ୍ତି ହେବ, ରକ୍ତ ଓ ଶୁକ୍ରରେ ଯାହାର ଘୃଣା ଆସିବ, ଶୁଦ୍ଧ ପଦାର୍ଥରେ ଯାହାର ଅଶୁଦ୍ଧ ବୋଲି ଭ୍ରମହେବ, ମୈଥୁନରେ ଯାହାର ପାପ ଶଙ୍କା ହେବ, ସେ ଭ୍ରଷ୍ଟ ସାଧକ ଦେବୀଙ୍କୁ କପଟ ପୂଜା କରିବ ବା ଦେବୀମନ୍ତ୍ର ଜପ କରିବ ।

"ସଂଶୋଧନ ମନାଚର୍ଯ୍ୟ ସ୍ତ୍ରୀଷୁମଦ୍ୟେଷୁ ସାଧକଃ ।
ଅଗ୍ରୁର୍ଯ୍ୟ ସିଦ୍ଧିହାନିଃସ୍ୟାତ୍ କ୍ରୁଦ୍ଧାଭବତ ଚଣ୍ଡିକା ।"

ସ୍ତ୍ରୀ ଓ ମଦ୍ୟ ସଂଶୋଧନ ନ କରି ବ୍ୟବହାର କଲେ ସିଦ୍ଧିହାନି ହୁଏ; ଭଗବତୀ ମଧ୍ୟ କ୍ରୁଦ୍ଧା ହୁଅନ୍ତି ।

ତେଣୁ ମକାରାଦ ମାନଙ୍କର ଯେ ସବୁ ଭୌତିକାର୍ଥ ପ୍ରକାଶ କରାଯାଇଅଛି ସେ ସବୁ ତନ୍ତ୍ର ଶାସ୍ତ୍ରୋକ୍ତ ବିଧି ଅନୁସାରେ ବିଧିପୂର୍ବକ ସଂଶୋଧନ କରି ଭଗବତୀଙ୍କର ଅର୍ଚ୍ଚନା କରିବା ସାଧକର କର୍ତ୍ତବ୍ୟ; ନଚେତ୍ ଅନିଷ୍ଟ ଫଳ ଘଟେ ।

"ପଞ୍ଚମେ ପଞ୍ଚମକାରଃ ପଞ୍ଚାନନସମୋଭବେତ୍" ।

ପଞ୍ଚମକାର ସାଧନା ଦ୍ୱାରା ସାଧକ ଶିବତୁଲ୍ୟ ହୁଏ, ସୁତରାଂ ପଞ୍ଚମକାରର ପ୍ରକୃତକାର୍ଯ୍ୟ ଯୋଗର ପ୍ରକ୍ରିୟା, ତହିଁରେ ସନ୍ଦେହ ନାହିଁ । ତନ୍ତ୍ର ଓ ଯୋଗ ଉଭୟ ଶାସ୍ତ୍ରକୁ ଶିବ ରଚନା କରିଅଛନ୍ତି । ସୂକ୍ଷ୍ମ ପଞ୍ଚମକାରର ସାଧନା, ଯୋଗ ଶାସ୍ତ୍ରରେ ବର୍ଣ୍ଣନା କରିଅଛନ୍ତି ।

Digitized by srujanika@gmail.com

ତନ୍ତ୍ରରେ ସ୍ଥୂଳ ପଞ୍ଚମକାରର ସାଧନା ବର୍ଣ୍ଣନା କରିଅଛନ୍ତି । ଏହା ବୋଲି ଯେ, ସୂକ୍ଷ୍ମ ପଞ୍ଚମକାରର ସାଧନା ତନ୍ତ୍ରରେ କରିବ ନାହିଁ—ଏପରି ନିଷେଧ କରିନାହାନ୍ତି । ସୂକ୍ଷ୍ମ ପଞ୍ଚମକାରର ସାଧନା ପ୍ରଣାଳୀର ସୂଚନା ସ୍ଥଳେ ସ୍ଥଳେ ମଧ୍ୟ ଦେଇଅଛନ୍ତି ।

ଧର୍ମ ସମ୍ବନ୍ଧରେ ଦୁଇଟି ମାର୍ଗ ଅଛି—ଗୋଟିକର ନାମ ନିବୃତ୍ତି, ଅନ୍ୟଟିର ନାମ ପ୍ରବୃତ୍ତି । ନିବୃତ୍ତିଯୋଗ—ଅଉ ପ୍ରବୃତ୍ତିଭୋଗ—ଆଗମ ସାରୋକ୍ତ ସୂକ୍ଷ୍ମ ପଞ୍ଚମକାରର ସାଧନା ନିବୃତ୍ତି ମାର୍ଗରେ ଏବଂ ମହାନିର୍ବାଣୋକ୍ତ ସ୍ଥୂଳପଞ୍ଚମକାରର ସାଧନା ପ୍ରବୃତ୍ତି ମାର୍ଗରେ । ଯେଉଁମାନଙ୍କର ଭୋଗ ବାସନା ନିବୃତ୍ତି ହୋଇ ବିଷୟ ବୈରାଗ୍ୟ ଜନ୍ମିଅଛି, ସେହିମାନଙ୍କ ପାଇଁ ସୂକ୍ଷ୍ମ ପଞ୍ଚମକାରର ସାଧନା, ପୁଣି ଯେଉଁମାନଙ୍କର ବିଷୟ ମାର୍ଗରେ ଅର୍ଥାତ୍ ଭୋଗ ମାର୍ଗରେ ସର୍ବଦା ମନ ଧାବିତ, ସେମାନଙ୍କ ପକ୍ଷରେ ସ୍ଥୂଳ ପଞ୍ଚମକାରର ସାଧନା । ଏହିପରି ସାଧକମାନଙ୍କର ସୁବିଧା ପାଇଁ ଦୁଇ ପ୍ରକାର ସାଧନାପ୍ରଣାଳୀ ମହାଦେବ ଦେଖାଇ ଅଛନ୍ତି—ଭୋଗମାର୍ଗ ଦେଇ ଯୋଗମାର୍ଗରେ ଉନ୍ନୀତ କରିବା ପୁଣି ପ୍ରବୃତ୍ତି ମାର୍ଗ ଦେଇ ନିବୃତ୍ତି ମାର୍ଗକୁ ଆନୟନ କରିବା, ତାହାଙ୍କର ଉଦ୍ଦେଶ୍ୟ । ଅତଏବ ମଦ୍ୟ ମାଂସାଦିର ବ୍ୟବସ୍ଥାଦ୍ୱାରା ତନ୍ତ୍ର ଶାସ୍ତ୍ରର ନିକୃଷ୍ଟତ୍ୱ ପ୍ରତିପନ୍ନ ନ ହୋଇ ବରଂ ସର୍ବାଙ୍ଗ ସୁନ୍ଦର ଓ ପୂର୍ଣ୍ଣତ୍ୱ ସାଧିତ ହୋଇଅଛି । "ସର୍ବମତ୍ୟନ୍ତ ଗର୍ହିତମ୍" ଅର୍ଥାତ୍ ସମସ୍ତ ପଦାର୍ଥର ଅତିରିକ୍ତ ବ୍ୟବହାର ଦୋଷାବହ; ତେଣୁ ଶାସ୍ତ୍ରୋକ୍ତ ବିଧି ଅନୁସାରେ ମଦ୍ୟ ମାଂସାଦି ସଂଶୋଧନ କରି ପରିମାଣ ଅନୁସାରେ ବ୍ୟବହାର କଲେ ଦୋଷ ହୁଏ ନାହିଁ; ଏହା ହେଲା ତନ୍ତ୍ର ଶାସ୍ତ୍ରର ତାତ୍ପର୍ଯ୍ୟ ।

Digitized by srujanika@gmail.com

## ମକାରମାନଙ୍କର ଆଧ୍ୟାତ୍ମିକାର୍ଥ

### ୧—ମଦ୍ୟ

ସୋମଧାରା କ୍ଷରେଦ୍ ଯାତୁ ବ୍ରହ୍ମରନ୍ଧ୍ରାଦ୍ ବରାନନେ ।
ପୀତ୍ୱାନନ୍ଦ ମୟସ୍ତାନ୍ ଯଃ ସ ଏବ ମଦ୍ୟ ସାଧକଃ ॥

ହେ ବରାନନେ ! ବ୍ରହ୍ମରନ୍ଧ୍ରରୁ ଯେ ଅମୃତ ଧାରା କ୍ଷରିତ ହୁଏ, ତାହା ପାନକରି ସାଧକ ଆନନ୍ଦମୟ ହୁଅନ୍ତି, ଏହାର ନାମ ମଦ୍ୟ ସାଧନ ।

ମତାନ୍ତରେ :—

ଯଦୁକ୍ତଂ ପରମଂ ବ୍ରହ୍ମ, ନିର୍ବିକାରଂ ନିରଞ୍ଜନମ୍ ।
ତସ୍ମିନ୍ ପ୍ରମଦନ-ଜ୍ଞାନଂ ତନ୍ମଦ୍ୟଂ ପରିକୀର୍ତ୍ତିତମ୍ ॥

ନିର୍ବିକାର ନିରଞ୍ଜନ ପରଂବ୍ରହ୍ମଙ୍କଠାରେ ଯୋଗ ସାଧନ ଦ୍ୱାରା ଯେ ପ୍ରମଦନ ଜ୍ଞାନ, ତାହାକୁ ମଦ୍ୟ କହନ୍ତି ।

### ୨—ମାଂସ

'ମା' ଶବ୍ଦାତ୍ ରସନା ଜ୍ଞେୟା, ତଦଂଶାନ୍ ରସନା ପ୍ରିୟେ ।
ସଦା ଯୋ ଭକ୍ଷୟେଦ୍ଦେବି, ସଏବ ମାଂସ ସାଧକଃ ॥

ହେ ରସନା ପ୍ରିୟେ ! ରସନାର ଅର୍ଥାତ୍ ଜିହ୍ୱାର ଅନ୍ୟ ନାମ 'ମା', ତାହାର ଅଂଶ ଅର୍ଥାତ୍ ବାକ୍ୟକୁ ଭୋଜନ କରିବା (ମୌନାବଲମ୍ବନ) ମାଂସ ସାଧନ ।

'ମା', ରସନା ତାହାର ଅଶଂକୁ ସ୍କନ୍ଧକୁ ଅର୍ଥାତ୍ ବାକ୍ୟକୁ କ୍ଷେପଣ କରିବା ( ମୌନାବଲମ୍ବନ ) ମାଂସ ସାଧନ । ମାଂସସାଧକ ବ୍ୟକ୍ତି ଏହି ଅର୍ଥରେ ବାକ୍ୟ—ସଂଯମୀ ମୌନାବଲମ୍ବୀ ଯୋଗୀ, ସକାରିଦ ଭେଦରେ ଏହିପରି ଅର୍ଥକରି କେତେକ ଉଗ୍ରତପସ୍ୱୀ ଭଗବତୀଙ୍କର ଶୀଘ୍ର ଦର୍ଶନ ପାଇଁ ଜିହ୍ୱା ଛେଦନ କରି ତପସ୍ୟା କରନ୍ତି ।

Digitized by srujanika@gmail.com

ମତାନ୍ତରେ :—

ଏବଂ ମାଂ ସନୋତତ୍ତ୍ୱ ଯତ୍କର୍ମ ତନ୍ମାଂସଂ ପରିକୀର୍ତ୍ତିତମ୍
ନଚକାୟ—ପ୍ରତୀକଂତୁ ଯୋଗିଭର୍ମାଂସମୁଚ୍ୟତେ ।

ଯେଉଁ ସାଧକ ସତ୍କର୍ମଗୁଡ଼ିକ ପରଂବ୍ରହ୍ମଙ୍କଠାରେ ସମର୍ପଣ କରେ, ସେହି କର୍ମ ସମର୍ପଣର ନାମ ମାଂସ ।

## ୩—ମତ୍ସ୍ୟ

ଗଙ୍ଗା ଯମୁନୟୋ ର୍ମଧ୍ୟେ ମତ୍ସ୍ୟୌଦ୍ୱୌ ଚରତଃ ସଦା ।
ତୌ ମତ୍ସ୍ୟୌ ଭକ୍ଷୟେତ୍ ଯସ୍ତୁ ସଭବେନ୍ ମତ୍ସ୍ୟ ସାଧକଃ ।

ଗଙ୍ଗା ଯମୁନାର ମଧ୍ୟରେ ଦୁଇଟି ମତ୍ସ୍ୟ ସର୍ବଦା ବିଚରଣ କରୁ ଅଛନ୍ତି; ଯେଉଁ ବ୍ୟକ୍ତି ଏହି ଦୁଇଟି ମତ୍ସ୍ୟ ଭୋଜନ କରେ, ତାହାର ନାମ ମତ୍ସ୍ୟ ସାଧକ । ଇଡ଼ା ଓ ପିଙ୍ଗଳା ନାଡ଼ୀକୁ ଗଙ୍ଗା ଓ ଯମୁନା କହନ୍ତି । ଶ୍ୱାସ ପ୍ରଶ୍ୱାସ, କେବଳ ଦୁଇଟି ମତ୍ସ୍ୟ । ଯେ ପ୍ରାଣାୟାମ ଦ୍ୱାରା ଶ୍ୱାସ ଓ ପ୍ରଶ୍ୱାସର ଗତି ରୋଧ କରି କୁମ୍ଭକର ପୃଷ୍ଟି ସାଧନ କରନ୍ତି, ତାହାକୁ ମତ୍ସ୍ୟ ସାଧକ କହନ୍ତି ।

ମତାନ୍ତରେ—

ମତ୍ ସମାନଂ ସର୍ବଭୂତେ ସୁଖ-ଦୁଃଖମିଦଂ ପ୍ରିୟେ ।
ଇତ୍ଥଂଯତ୍ ସାତ୍ତ୍ୱିକଂ ଜ୍ଞାନଂ ତନ୍ମତ୍ସ୍ୟଂ ପରିକୀର୍ତ୍ତିତମ୍ ।

ମୋ ପରି ସମସ୍ତ ପ୍ରାଣୀମାନଙ୍କ ଠାରେ ଏବଂ ସୁଖ ଓ ଦୁଃଖରେ ସମାନଜ୍ଞାନ ଏହିପରି ଯେଉଁ ସାତ୍ତ୍ୱିକ ଜ୍ଞାନ ତାହାକୁ ମତ୍ସ୍ୟ କହନ୍ତି ।

## ୪—ମୁଦ୍ରା

ସହସ୍ରାରେ ମହାପଦ୍ମେ କର୍ଣ୍ଣିକା ମୁଦ୍ରିତ ଶ୍ଚରେତ୍
ଆତ୍ମା ତତୈବ ଦେବେଶି । କେବଳଃ ପାରଦୋପମଃ ।
ସୂର୍ଯ୍ୟକୋଟି ପ୍ରତୀକାଶଃ ଚନ୍ଦ୍ରକୋଟି ସୁଶୀତଳଃ ।
ଅତୀବ କମନୀୟଶ୍ଚ ମହାକୁଣ୍ଡଳିନୀ ଯୁତଃ ।
ଯସ୍ୟ ଜ୍ଞାନୋଦୟସ୍ତତ୍ର ମୁଦ୍ରା ସାଧକ ଉଚ୍ୟତେ ।

Digitized by srujanika@gmail.com

ହେ ଦେବେଶି ! ଶିରସ୍ଥିତ ସହସ୍ରଦଳ ପଦ୍ମରେ ମୁଦ୍ରିତ କର୍ଣ୍ଣିକା-ଭ୍ୟନ୍ତରେ ଶୁଦ୍ଧପାରଦ ତୁଲ୍ୟ ଆତ୍ମାର ଅବସ୍ଥିତ । ଯଦ୍ୟପି ତାହାର ତେଜଃ କୋଟି ସୂର୍ଯ୍ୟର ସଦୃଶ, କିନ୍ତୁ ସ୍ନିଗ୍ଧତା କୋଟି ଚନ୍ଦ୍ର ତୁଲ୍ୟ । ଏହି ପରମ ପଦାର୍ଥ ଅତିଶୟ ମନୋହର ଏବଂ କୁଳକୁଣ୍ଡଳିନୀ ଶକ୍ତି ସମନ୍ୱିତ—ତାହାର ଏତେରୂପ ଜ୍ଞାନର ଉଦୟ ହୁଏ, ସେ ପ୍ରକୃତ ମୁଦ୍ରା ସାଧକ ।

ମତାନ୍ତରେ—

ସତ୍ ସଙ୍ଗେନ ଭବେତ୍ ମୁକ୍ତିଃ ଅସତ୍ ସଙ୍ଗେନ ବନ୍ଧନମ୍ ।
ଅସତ୍‌ସଙ୍ଗ ମୁଦ୍ରଣଂ ଯତ୍ ତନ୍ମୁଦ୍ରା ପରିକୀର୍ତ୍ତିତମ୍ ॥

ସତ୍ ସଙ୍ଗରେ ମୁକ୍ତି ଆଉ ଅସତ୍ ସଙ୍ଗରେ ବନ୍ଧନ—ଏହିକଥା ଜାଣି ଅସତ୍‌ସଙ୍ଗ ପରିତ୍ୟାଗର ନାମ ମୁଦ୍ରା ।

### ୫—ମୈଥୁନ

ମୈଥୁନଂ ପରମଂ ତତ୍ତ୍ୱଂ ସୃଷ୍ଟିସ୍ଥିତ୍ୟନ୍ତ କାରଣମ୍ ।
ମୈଥୁନାତ୍ ଜାୟତେ ସିଦ୍ଧି ବ୍ରହ୍ମଜ୍ଞାନଂ ସୁଦୁର୍ଲ୍ଲଭଂମ୍ ॥

ମୈଥୁନ ବ୍ୟାପାର ସୃଷ୍ଟି, ସ୍ଥିତ ଓ ଲୟର କାରଣ । ଏହା ପରମତତ୍ତ୍ୱ ବୋଲି ଶାସ୍ତ୍ରରେ ଉକ୍ତ ହୋଇଅଛି । ମୈଥୁନ କ୍ରିୟାଦ୍ୱାରା ସିଦ୍ଧି ଲାଭ ହୁଏ । ତହିଁରୁ ସୁଦୁର୍ଲଭ ବ୍ରହ୍ମଜ୍ଞାନ ଲାଭ ହୁଏ ।

ରେଫସ୍ତୁ କୁଙ୍କୁମାଭାସଃ କୁଣ୍ଡମଧ୍ୟେ ବ୍ୟବସ୍ଥିତଃ ।
ମକାରଶ୍ଚ ବିନ୍ଦୁରୂପୋ ମହାଯୋନୌ ସ୍ଥିତଃପ୍ରିୟେ ॥
ଅକାର ହଂସ ମାରୁହ୍ୟ ଏକତା ଚ ଯଦା ଭବେତ୍
ତଦା ଜାତୋ ମହାନନ୍ଦୋ ବ୍ରହ୍ମଜ୍ଞାନଂ ସୁଦୁର୍ଲଭମ୍ ॥

'ରେଫ' କୁଙ୍କୁମବର୍ଣ୍ଣ କୁଣ୍ଡମଧ୍ୟେ ଅବସ୍ଥିତ କରେ, 'ମକାର' ବିନ୍ଦୁ ରୂପରେ ମହାଯୋନିରେ ପ୍ରବେଶ କରେ । ଅକାର ରୂପୀ ହଂସର ଆଶ୍ରୟରେ ଯେତେବେଳେ ଏହି ଉଭୟଙ୍କର ଏକତା ଘଟେ,

Digitized by srujanika@gmail.com

ଏକ୍ଷେତ୍ରେବେଳେ ସୁଦୁର୍ଲଭ ବ୍ରହ୍ମଜ୍ଞାନ ଲାଭହୁଏ । ଯେ ବ୍ୟକ୍ତି ଏହିରୂପେ ମିଳନ କରିପାରେ ସେ ହେଉଅଛି ମୈଥୁନ-ସାଧକ ।

ମତାନ୍ତରେ—

କୁଳକୁଣ୍ଡଳିନୀ-ଶକ୍ତି ର୍ଦେହିନାଂ ଦେହଧାରିଣୀ ।
ତୟା ଶିବସ୍ୟ ସଂଯୋଗଃ ମୈଥୁନଂ ପରିକୀର୍ତ୍ତିତମ୍ ॥

ମୂଳାଧାରସ୍ଥିତ କୁଣ୍ଡଳିନୀ ଶକ୍ତିକୁ ଯୋଗ ସାଧନ ଦ୍ୱାରା ଷଟ୍ଚକ୍ର ଭେଦ-ପୂର୍ବକ ଶିରଃସ୍ଥିତ ସହସ୍ରଦଳକମଳକର୍ଣ୍ଣିକାନ୍ତର୍ଗତ ବିନ୍ଦୁ-ରୂପ ପରମ ଶିବଙ୍କ ସହିତ ସଂଯୋଗ କରିବାର ନାମ ମୈଥୁନ । ଏହି କେବଳ ପଞ୍ଚମକାର । ଏହାର ନାମ ଲୟ ଯୋଗ, ଏଥିପାଇଁ ପଞ୍ଚମକାର ଯୋଗର କାର୍ଯ୍ୟ ।

## ଅନନ୍ତର—ଆନ୍ତର ପୂଜା

ମୂଳା ଧାରାତ୍ କୁଳ କୁଣ୍ଡଳିନୀ ମୁତ୍‌ଥାପ୍ୟ, ହୃଦୟାଦର୍କମଣ୍ଡଳଂ
ନୀତ୍ୱା ସହସ୍ରଦଳ କର୍ଣ୍ଣିକାନ୍ତର୍ଗତ ଚନ୍ଦ୍ରାମୃତ ଧାରୟା ମୂଳମନ୍ତ୍ରଂ ସ୍ମରନ୍
ସିଞ୍ଚେତ୍ ଅର୍ଦ୍ଧପୂର୍ବ ବ୍ୟଷସ୍ୟୈଃ ପୁର୍ଦ୍ଧ୍ୱିଷ୍ଟତ୍ ଝଣାତ୍ ତନ୍ମୟୋ ଭବେତ୍,
ନ୍ୟାସ ସ୍ତବ୍ଧୟେତା ବୁଦ୍ଧିଃ ସୋଽହଂଭାବେନ ଧୂଜୟେତ୍ ।
ତନ୍ମୟେତ ତଦେକତ୍ୱଜ୍ଞାନଂ ସୋଽହମିତି ।
ମନ୍ତ୍ରାକ୍ଷରାଣି ଚିତ୍ ଶକ୍ତୌ ପ୍ରୋକ୍ତାନି ପରିଭାବୟେତ୍ ॥
ତାମେବ ପରମେବ୍ୟୋମ୍ନି ପରମାନନ୍ଦ ବୃଂହିତେ
ଦର୍ଶୟତ୍ୟା ସ୍ୱସଦ୍ଭାବଂ ପୂଜା ହୋମାଦଭିର୍ବିନା ।

ମୂଳାଧାର ଠାରୁ କୁଳକୁଣ୍ଡଳିନୀକୁ ଉଠାଇ ହୃଦୟ ମାର୍ଗଦେଇ ସୂର୍ଯ୍ୟମଣ୍ଡଳକୁ ନେବାକୁ ହେବ; ତାହାପରେ ମୂଳମନ୍ତ୍ର ସ୍ମରଣ କରି ସହସ୍ରଦଳ ପଦ୍ମର କର୍ଣ୍ଣିକା ମଧ୍ୟବର୍ତ୍ତୀ ଚନ୍ଦ୍ରଙ୍କ ଠାରୁ, ଅମୃତ ନେଇ

Digitized by srujanika@gmail.com

ତଦ୍ଦ୍ୱାରା ଏହି କୁଳକୁଣ୍ଡଳିନୀକୁ ଅଭିଷେକ କରିବ । ବିଷୟ ରୂପ ପୁଷ୍ପଦ୍ୱାରା ପୂଜା କରୁ କରୁ ତତ୍‌କ୍ଷଣାତ୍ ତନ୍ମୟ ହେବାକୁ ହେବ । ଏହି ତନ୍ମୟତା ଜ୍ଞାନଟି ନ୍ୟାସ । "ସୋଽହଂଭାବେ ଏହିପରି ପୂଜା କରିବ ।" ତନ୍ମୟତା ଜ୍ଞାନ ଏହାର ଅର୍ଥ—ସେହି ଆରାଧ୍ୟ ଦେବତା ସହିତ ନିଜର ଏକତାଜ୍ଞାନ । "ସୋଽହଂ" ମୁଁ ମଧ୍ୟ ସେହି ଦେବତା ଏହି ରୂପ ଜ୍ଞାନ ମନ୍ତ୍ରର ଅର୍ଥ ଗୁଡ଼ିକୁ କୁଣ୍ଡଳିନୀ ଶକ୍ତିରେ ଗ୍ରଥିତ ଭାବିବ । ସେହି କୁଣ୍ଡଳିନୀ ଶକ୍ତିକୁ ପରମାନନ୍ଦ ବିଷ୍ଟାରିତ ପରମାତ୍ମାରେ ଗ୍ରଥିତ ଏହିରୂପ ଭାବନା କରିବ । ଏହି ଭାବନାମୟୀ ପୂଜା ହୋମାଦି ବାହ୍ୟ ବ୍ୟାପାର ବିବର୍ଜିତ ହେଲେ ସାଧକର "ସୋଽହଂଭାବ" ଉତ୍‌ଥାପିତ କରେ ।

## ବିଷୟ ପୁଷ୍ପ ଯଥା

ଅମାୟା ମନହଂକାରମରାଗ ମମଦନ୍ତଥା ।
ଅମୋହ କମଦନ୍ତଂଚ ଅନିନ୍ଦାକ୍ଷୋଭକୌ ତଥା ।
ଅମାତ୍ସର୍ଯ୍ୟମଲୋଭଂଚ ଦଶପୁଷ୍ପଂବିଦୁର୍ବୁଧା ।
ଅହିଂସା ପରମଂ ପୁଷ୍ପଂ ପୁଷ୍ପମିନ୍ଦ୍ରିୟ ନିଗ୍ରହମ୍ ।
ଦୟା ପୁଷ୍ପଂ କ୍ଷମା ପୁଷ୍ପଂ ଜ୍ଞାନ ପୁଷ୍ପଂ ଚ ପଞ୍ଚକମ୍ ।

୧ । ଅମାୟା—ସଂସାର ମାୟା ରହିତ, ୨ । ଅନହଙ୍କାର—ଅଭିମାନ ଶୂନ୍ୟତା, ୩ । ଅରାଗ—ବିଷୟେ ଅନାସକ୍ତି, ୪ । ଅମଦ—ଧନମଦେ ମତ୍ତ ନ ହେବା, ୫ । ମୋହ, ୬ । ଅଦନ୍ତ, ୭ । ଅନିନ୍ଦା, ୮ । ଅକ୍ଷୋଭ, ୯ । ଅମାତ୍ସର୍ଯ୍ୟ, ୧୦ । ଅଲୋଭ, ଏହି ଦଶଟିକୁ ବିଷୟ ପୁଷ୍ପ କହନ୍ତି ।

ଏହାଁ ଛଡ଼ା ଅହିଂସା, ଇନ୍ଦ୍ରିୟ ନିଗ୍ରହ, ଦୟା, କ୍ଷମା, ଜ୍ଞାନ ଏହି ପାଞ୍ଚଟିକୁ ବିଷୟ ପୁଷ୍ପ କହନ୍ତି ।

Digitized by srujanika@gmail.com

## କୁଳାର୍ଣ୍ଣବ ତନ୍ତ୍ରରେ ଅନ୍ତଃ ପଞ୍ଚମକାର ଦ୍ୱାରା ପୂଜା ପ୍ରଣାଳୀ

"ସୁରା ଶକ୍ତିଃ ଶିବୋ ମାଂସଂ ତଦ୍‌ଭୋକ୍ତା ଭୈରବଃ ସ୍ୱୟଂ
ତୟୋରୈକ୍ୟ-ସମୁତ୍ପନ୍ନ ଆନନ୍ଦୋ ମୋକ୍ଷ ଉଚ୍ୟତେ ।୧।
ଆନନ୍ଦଂ ବ୍ରହ୍ମଣୋରୂପଂ ତଚ୍ଚ ଦେହେ ବ୍ୟବସ୍ଥିତଂ
ତସ୍ୟାଭ୍ ବ୍ୟଞ୍ଜକଂ ଦ୍ରବ୍ୟଂ ଯୋଗିଭିସ୍ତେନ ପୀୟତେ ।
ଲିଙ୍ଗତ୍ରୟ ବିଶେଷଜ୍ଞଃ, ଷଟ୍‌ଚକ୍ର ପଦ୍ମଭେଦକଃ,
ପୀଠ ସ୍ଥାନାନି ସଂଗତ୍ୟ ମହାପଦ୍ମବନଂ ବ୍ରଜେତ୍
ଆମୂଳାଧାର ମାବ୍ରହ୍ମରନ୍ଧ୍ରଂ ଗତ୍ୱା ପୁନଃ ପୁନଃ
ଚିଚ୍ଚନ୍ଦ୍ର କୁଣ୍ଡଳୀ ଶକ୍ତିଃ ସାମରସ୍ୟ ସୁଖୋଦୟଃ,
ବ୍ୟୋମ ପଙ୍କଜ ନିଷ୍ପନ୍ଦ ଧାରାପାନରତୋ ନରଃ,
ମଧୁପାନମିଦଂ ଦେବି ! ଚେତରନ୍ମଦ୍ୟପାନକଂ । ୨ ।
ପୁଣ୍ୟାପୁଣ୍ୟପଶୁଂ ହତ୍ୱା ଜ୍ଞାନଖଡ୍‌ଗେନ ଯୋଗବିତ୍
ପରେଲୟଂ ନୟେତ୍ ଚିତ୍ତଂ ପଳାଶୀତି ନିଗଦ୍ୟତେ । ୩ ।
ମାନସାଦୀନ୍ଦ୍ରିୟଗଣଂ ସଂଯମ୍ୟାତ୍ମନି ଯୋଜୟେତ୍
ମାଂସାଶୀ ସ ଭବେତ୍ ଦେବି ଇତରେ ପ୍ରାଣୀଘାତକାଃ । ୪ ।
ପରଶକ୍ତ୍ୟାତ୍ମ ମିଥୁନ ସଂଯୋଗାନନ୍ଦ ନିର୍ଭରାଃ
ମୁକ୍ତାଃତେ ମୈଥୁନଂ ତତ୍‌ସ୍ୟାତ୍ ଇତରେ ସ୍ତ୍ରୀ ନିଷେବକା ।୫।

୧ । କୁଣ୍ଡଳିନୀ ଶକ୍ତି—ସୁରା, ପରଶିବ—ମାଂସ, ସ୍ୱୟଂ ଭୈରବ ତାହାର ଭୋକ୍ତା, ଶିବ ଶକ୍ତିର—ଯୋଗରେ ଯେ ଆନନ୍ଦ ପ୍ରକାଶ ହୁଏ ତାହାକୁ ମୋକ୍ଷ ବୋଲିଯାଏ ।

୨ । ଆନନ୍ଦ ବ୍ରହ୍ମର ସ୍ୱରୂପ । ଏହି ଆନନ୍ଦ ସାଧକର ଦେହରେ ଅବସ୍ଥାନ କରେ । ଦେବତା ଉଦ୍ଦେଶ୍ୟରେ ଦେୟବସ୍ତୁ ସେହି ଆନନ୍ଦର ଅଭିବ୍ୟଞ୍ଜକ । ଯୋଗୀମାନେ ସେହି କାରଣରୁ

Digitized by srujanika@gmail.com

ପଞ୍ଚମକାର ସେବା କରନ୍ତି । ଯେଉଁମାନେ ସ୍ୱୟଂଭୂଲିଙ୍ଗ,
ବାଣଲିଙ୍ଗ, ଇତରଲିଙ୍ଗ—ଏହି ତିନିଲିଙ୍ଗର ବିଷୟ
ବିଶେଷରୂପେ ଜାଣନ୍ତି, ସେହିମାନେ ଷଟ୍‌ଚକ୍ର ଭେଦ
କରିପାରନ୍ତି । ଯେଉଁମାନେ ସମଗ୍ର ପୀଠସ୍ଥାନକୁ ଅସି
ମହାପଦ୍ମବନରେ ପରମଶିବଙ୍କ ସହିତ କୁଣ୍ଡଳିନୀ ଶକ୍ତିର
ଏକତା ସମ୍ପାଦନ ପୂର୍ବକ ସହସ୍ରଦଳ କମଳ ମଧ୍ୟସ୍ଥିତ
ଚନ୍ଦ୍ରମଣ୍ଡଳଠାରୁ ଅମୃତଧାରା ପାନକରିପାରନ୍ତି ତାହାକୁ
ମଧୁପାନ କହନ୍ତି । କିନ୍ତୁ ସାଧାରଣ ସୁରାପାନକୁ ମଦ୍ୟପାନ
କୁହାଯାଏ ।

୩ । ଯେ ଯୋଗବିଦ୍ୟା ପାରଦର୍ଶୀ ହୋଇ ଜ୍ଞାନରୂପ ଖଡ୍ଗଦ୍ୱାରା
ପୁଣ୍ୟ ଓ ପାପ ପଶୁକୁ ବଳିଦାନ କରି ସତ୍ୟ ସୁନ୍ଦର
ପରମବ୍ରହ୍ମଙ୍କଠାରେ ଚିତ୍ତଲୟ କରିପାରନ୍ତି ତାହାକୁ ମାଂସାସୀ
ବୋଲାଯାଏ ।

ହେ ଦେବି ! ଅଥବା ଯେ ମନ ପ୍ରଭୃତି ସମସ୍ତ ଇନ୍ଦ୍ରିୟଗଣକୁ
ସଂଯତ କରି ସତ୍ୟ ସୁନ୍ଦର ପରଂବ୍ରହ୍ମଙ୍କଠାରେ ଚିତ୍ତଲୟ
କରିପାରେ ସେ ମାଂସାସୀ । ଅନ୍ୟ ବ୍ୟକ୍ତିଗଣ ( ଯେଉଁମାନେ
ସାଧାରଣ ମାଂସ ଭକ୍ଷଣ କରନ୍ତି ) ପ୍ରାଣୀଘାତକ ।

୪ । ଯେଉଁମାନେ ପରଶକ୍ତି ସହିତ ପରଶିବର ମିଥୁନ (ସଂଯୋଗ)
ସମ୍ପାଦନ କରି ଆନନ୍ଦପୂର୍ଣ୍ଣ ହୋଇ ମୁକ୍ତ ହୋଇପାରନ୍ତି
ସେହିମାନେ ମୈଥୁନସେବୀ ; ଅନ୍ୟ ସ୍ତ୍ରୀସଙ୍ଗମକାରୀ
ବ୍ୟକ୍ତିଗଣ—ସ୍ତ୍ରୀସେବକ ବୋଲି କଥିତ ।

## ଯୋଗକ୍ରିୟା

ଯୋଗ ବ୍ୟତିରେକେ କୁଣ୍ଡଳିନୀର ଗତିଶକ୍ତି ହୁଏ ନାହିଁ ।
ମୂଳାଧାର ପଦ୍ମରେ କୁଣ୍ଡଳିନୀ ଯେ ପର୍ଯ୍ୟନ୍ତ ନିଦ୍ରିତା ଥାଏ,

Digitized by srujanika@gmail.com

ସେପର୍ଯ୍ୟନ୍ତ ମନ୍ତ୍ର ଯନ୍ତ୍ର ପୂଜା ପ୍ରଭୃତି କିଛି ସିଦ୍ଧ ହୁଏ ନାହିଁ। ବହୁ ପୁଣ୍ୟ ସଂଚୟର ଫଳରେ କୁଣ୍ଡଳିନୀ ଦେବୀ ଯଦି ଜାଗରିତା ହୁଏ ତାହାହେଲେ ମନ୍ତ୍ର ଯନ୍ତ୍ର ପୂଜା ପ୍ରଭୃତି ଫଳପ୍ରଦ ହୋଇପାରେ ଏବଂ ଅଷ୍ଟପ୍ରକାର ଐଶ୍ବର୍ଯ୍ୟ ( ଅଣିମାଦି ) ପାଇ ଶିବଙ୍କ ପରି ବିହାର କରିପାରିବ । ଯୋଗର ଅନୁଷ୍ଠାନ କଲେ ମୁକ୍ତି ଲାଭ ଏବଂ ଅଖଣ୍ଡିତ ଭାବେ ମନ୍ତ୍ରସିଦ୍ଧି ହୁଏ। ମନ୍ତ୍ରସିଦ୍ଧି ହେଲେ ପରଂବ୍ରହ୍ମ ପ୍ରାପ୍ତି ହୁଏ ଏହା ଶାସ୍ତ୍ରର ମୀମାଂସା ।

## ଯୋଗ

ନାରଦ କହୁଛନ୍ତି—

"ଐକ୍ୟଂ ଜୀବାତ୍ମନୋରାହୁ
ର୍ଯୋଗଂ ଯୋଗବିଶାରଦାଃ"

ଜୀବାତ୍ମା ଓ ପରମାତ୍ମାଙ୍କର ଐକ୍ୟସମ୍ପାଦନକୁ ଯୋଗ କୁହାଯାଏ ।

## ଯୋଗ ବାଧକାରୀ ଷଡ଼୍ରିପୁ

କାମ କ୍ରୋଧ ଲୋଭ ମୋହ ମଦମାତ୍ସର୍ଯ୍ୟ ସଂଜ୍ଞକାଃ ।
ଯୋଗାଙ୍ଗୈରେବ ଜିତ୍ୱା ତାନ୍ ଯୋଗିନୋ ଯୋଗମାପ୍ନୁୟୁଃ ।

କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ ଏହିମାନେ ଯୋଗର ବାଧକାରୀ; ତେଣୁ ଯୋଗିଗଣ ଯୋଗାଙ୍ଗ ଦ୍ୱାରା ଏମାନଙ୍କୁ ଜୟକରି ଯୋଗସିଦ୍ଧି ଲାଭ କରିପାରନ୍ତି ।

## ଯୋଗାଙ୍ଗ

"ଯମ ନିୟମାସନ ପ୍ରାଣାୟାମ ପ୍ରତ୍ୟାହାର"
ଧାରଣା ଧ୍ୟାନ ସମାଧୟୋଽଷ୍ଟାଙ୍ଗାନି ।

ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧି ଏହି ଆଠଟିକୁ ଯୋଗିଗଣ ଯୋଗ ସାଧନର ଅଙ୍ଗ ବୋଲି କହି ଅଛନ୍ତି ।

Digitized by srujanika@gmail.com

## ୧—ଯମ

ଅହିଂସା ସତ୍ୟମସ୍ତେୟଂ ବ୍ରହ୍ମଚର୍ଯ୍ୟଂ ଦୟାର୍ଜବଂ
କ୍ଷମାଧୃତ ମିତାହାରଃ ଶୌଚଂ ଚେତ ଯମାଃଦଶ ।

ଅହିଂସା, ସତ୍ୟ, ଅସ୍ତେୟ, (ଚୋର ନ କରିବା) ବ୍ରହ୍ମଚର୍ଯ୍ୟ, ଦୟା, ଋଜୁତା ( ସରଳତା ) କ୍ଷମା, ଧୃତ ( ଧୈର୍ଯ୍ୟ ) ମିତାହାର ଓ ଶୌଚ ଏହି ଦଶଗୋଟିକୁ ଯମ କହନ୍ତି ।

## ୨—ନିୟମ

ତପଃ ସନ୍ତୋଷ ଅସ୍ତିକ୍ୟଂ ଦାନଂ ଦେବସ୍ୟ ପୂଜନମ୍
ସିଦ୍ଧାନ୍ତ ଶ୍ରବଣଂ ଚୈବ ହ୍ରୀର୍ମତିଶ୍ଚ ଜପୋହୁତମ୍ ।
ଦଶୈତେ ନିୟମାଃ ପ୍ରୋକ୍ତାଃ ଯୋଗଶାସ୍ତ୍ରବିଶାରଦୈଃ ।

ତପସ୍ୟା, ସନ୍ତୋଷ, ଅସ୍ତିକ୍ୟ, ଦାନ, ଦେବପୂଜା, ସିଦ୍ଧାନ୍ତ-ଶ୍ରବଣ, ଲଜ୍ଜା, ମତ ଜପ ଓ ହୋମ ଏହି ଦଶୋଟିକୁ ନିୟମ କହନ୍ତି ।

## ୩—ଆସନ

ବିଶ୍ୱସାରେ—ସମୁଦ୍ର ମେଖଲେ ଦେବି । ପର୍ବତ ସ୍ତନ ମଣ୍ଡଳେ
ବିଷ୍ଣୁପତ୍ନି ନମସ୍ତୁଭ୍ୟଂ ପାଦସ୍ପର୍ଶଂ କ୍ଷମସ୍ୱ ମେ ।
ଓଁ ପୃଥ୍ୱି ତ୍ୱୟା ଧୃତାଲୋକା ଦେବି ତ୍ୱଂ ବିଷ୍ଣୁନାଧୃତା
ତ୍ୱଂ ଚ ଧାରୟ ମାଂ ନିତ୍ୟଂ ପବିତ୍ରଂ କୁରୁଚାସନମ୍ ।

ପୃଥ୍ୱୀକୁ ପ୍ରାର୍ଥନା କରି କମନୀୟ କୋମଳ ବିଶୁଦ୍ଧ ଅସନରେ ବସ୍ତ୍ର, କୃଷ୍ଣ ମୃଗଚର୍ମ ଓ କୁଶ ପକାଇ ତାହାର ଉପରେ ଯୋଗୋପଯୋଗୀ ଅସନ କରିବ ।

## ୪—ପ୍ରାଣାୟମ

ଇଡ଼ୟା କର୍ଷୟେତ୍ ବାୟୁଂ ବାହ୍ୟଂ ଷୋଡ଼ଶ ମାତ୍ରୟା ।
ଧାରୟେତ୍ ପୂରିତଂ ଯୋଗୀ ଚତୁଃଷଷ୍ଟ୍ୟା ଚ ମାତ୍ରୟା ।

Digitized by srujanika@gmail.com

ସୁଷୁମ୍ନା ମଧ୍ୟଗଂ ସମ୍ୟକ୍ ଦ୍ୱାତ୍ରିଂଶତ୍ ମାତ୍ରୟା ଶନୈଃ ।
ନାଡ଼୍ୟା ପିଙ୍ଗଲୟା ଚୈବ ରେଚୟେତ୍ ଯୋଗବିତ୍ ତମଃ ॥
ପ୍ରାଣାୟାମ ମିମଂ ପ୍ରାହୁ ର୍ଯୋଗଶାସ୍ତ୍ର ବିଶାରଦାଃ ।

ଷୋଳଥର ଜପକରି ଇଡ଼ାନାଡ଼ୀ ଦ୍ୱାରା ବାହ୍ୟ ବାୟୁକୁ ଆକର୍ଷଣ କରିବ, ତାହାପରେ ଏହି ବାୟୁକୁ ସୁଷୁମ୍ନା ନାଡ଼ୀର ମଧ୍ୟ ଗତ କରି ଧାରଣ କରି ଚତୁଃଷଷ୍ଠିବାର (୬୪) ଜପ କରିବ । ତାହାପରେ ଅଭିଜ୍ଞତମ ଯୋଗୀ ବତିଶବାର ଜପ କରି ପିଙ୍ଗଳା ନାଡ଼ୀ ଦ୍ୱାରା ଏହି ବାୟୁକୁ ପରିତ୍ୟାଗ କରିବ । ଯୋଗଶାସ୍ତ୍ର ବିଶାରଦଗଣ ଏହାକୁ ପ୍ରାଣାୟାମ୍ କହନ୍ତି ।

## ୫—ପ୍ରତ୍ୟାହାର

ଇନ୍ଦ୍ରିୟାଣଂ ବିଚରତାଂ ବିଷୟେଷୁ ନିରର୍ଗଲମ୍
ବଲାଦାହରଣଂ ତେଭ୍ୟଃ ପ୍ରତ୍ୟାହାରୋ ବିଧୀୟତେ ।

ଇନ୍ଦ୍ରିୟ ସକଳ ବିଷୟ ସମୂହରେ ଅବ୍ୟାହତ ଗତିରେ ବିଚରଣ କରୁ ଅଛନ୍ତି, ସେହି ବିଷୟ ସମୂହରୁ ଇନ୍ଦ୍ରିୟଗଣକୁ ବଳପୂର୍ବକ ଟାଣି ଆଣିବାକୁ ପ୍ରତ୍ୟାହାର କହନ୍ତି ।

## ୬—ଧାରଣ

ଅଙ୍ଗୁଷ୍ଠ, ଗୁଲ୍ଫ, ଜାନୁରୁ ସୀମନୀ ଲିଙ୍ଗ ନାଭିଷୁ ।
ହୃଦ୍‌ଗ୍ରୀବା କଣ୍ଠଦେଶେଷୁ ଲମ୍ବିକାୟାଂ ତଥା ନସି ॥
ଭ୍ରୂମଧ୍ୟେ ମସ୍ତକେ ମୂର୍ଦ୍ଧ୍ନି ଦ୍ୱାଦଶାନ୍ତେ ଯଥାବିଧି ।
ଧାରଣଂ ପ୍ରାଣମରୁତୋ ଧାରଣେତି ନିଗଦ୍ୟତେ ॥

ଅଙ୍ଗୁଷ୍ଠ, ଗୁଲ୍ଫ, ଜାନୁ, ଊରୁ, ଅଣ୍ଡକୋଷ, ଲିଙ୍ଗ, ନାଭି, ହୃଦୟ, ଗ୍ରୀବା, କଣ୍ଠ, ଗଳକମ୍ବଳ, ନାସିକା, ଭ୍ରୂମଧ୍ୟ, ମସ୍ତକ, ବ୍ରହ୍ମରନ୍ଧ୍ର ଓ ହୃତ୍ ପଦ୍ମରେ ପ୍ରାଣ ବାୟୁକୁ ଯଥା ନିୟମରେ ସୁସ୍ଥିର କରି ରଖିବାକୁ ଧାରଣା କହନ୍ତି ।

Digitized by srujanika@gmail.com

## ୭—ଧ୍ୟାନ

ସମାହିତେନ ମନସା ଚୈତନ୍ୟାନ୍ତର ବର୍ତ୍ତିନା ।
ଆତ୍ମନ୍ୟଭୀଷ୍ଟ ଦେବାନାଂ ଧ୍ୟାନଂ ଧ୍ୟାନ ମିହୋଚ୍ୟତେ ॥

ମନକୁ ଏକାଗ୍ରଭାବେ ଚୈତନ୍ୟ ମଧ୍ୟବର୍ତ୍ତୀ କରି ସେହି ମନଦ୍ୱାରା ଆତ୍ମାରେ ଅଭୀଷ୍ଟ ଦେବତାଙ୍କର ଧ୍ୟାନ କରିବାକୁ ଧ୍ୟାନ କହନ୍ତି ।

## ୮—ସମାଧି

ସମତ୍ୱ ଭାବନା ନିତ୍ୟଂ ଜୀବାତ୍ମ ପରମାତ୍ମନୋଃ ।
ସମାଧି ମାହୁ ର୍ମୁନୟଃ ପ୍ରୋକ୍ତମଷ୍ଟାଙ୍ଗ ଲକ୍ଷଣମ୍ ॥

ସର୍ବଦା ଜୀବାତ୍ମା ଓ ପରମାତ୍ମାଙ୍କର ସମତ୍ୱ ଭାବନା କରିବାକୁ ସମାଧି କହନ୍ତି ।

## ମନ୍ତ୍ର ଶବ୍ଦର ଅର୍ଥ

ମନନାତ୍ ତ୍ରାୟତେ ଯସ୍ମାତ୍ ତସ୍ମାନ୍ମନ୍ତ୍ର ପ୍ରକୀର୍ତ୍ତିତଃ

ମନନଦ୍ୱାରା ସଂସାରରୁ ଯେ ପରିତ୍ରାଣ କରେ ତାହାକୁ ମନ୍ତ୍ର କହନ୍ତି ।

## ମନ୍ତ୍ରଯୋଗ

ଇଦାନୀଂ କଥୟେ ତେଽହଂ ମନ୍ତ୍ର ଯୋଗ ମନୁତ୍ତମମ୍ ,

## ଇଡ଼ା, ପିଙ୍ଗଳା, ସୁଷୁମ୍ନା ପ୍ରଭୃତି ନାଡ଼ୀ

ପ୍ରଧାନା ମେରୁଦଣ୍ଡେଽତ୍ର ଚନ୍ଦ୍ରସୂର୍ଯ୍ୟାଗ୍ନି ରୂପିଣୀ ।
ଇଡ଼ା ବାମେସ୍ଥିତା ନାଡ଼ୀ ଶୁକ୍ଳା ତୁ ଚନ୍ଦ୍ର ରୂପିଣୀ ॥
ଶକ୍ତିରୂପା ଚ ସାନାଡ଼ୀ ସାକ୍ଷାଦମୃତ ବିଗ୍ରହା ।
ଦକ୍ଷିଣେ ପିଙ୍ଗଳା ଖ୍ୟାତୁ ପୁଂରୂପାସୂର୍ଯ୍ୟ ବିଗ୍ରହା ॥
ଦାଡ଼ିମୀ କେଶର ପ୍ରଖ୍ୟା ବିଷସ୍ୟା ମୁନିଭିଃ ସ୍ମୃତା ।
ମେରୁମଧ୍ୟେ ସ୍ଥିତା ଯାତୁମୂଳାଦାବ୍ରହ୍ମ ବିଗ୍ରହା ॥
ସର୍ବତେଜୋମୟୀ ସାତୁ ସୁଷୁମ୍ନା ବହ୍ନିରୂପିଣୀ ।

Digitized by srujanika@gmail.com

ଚନ୍ଦ୍ର, ସୂର୍ଯ୍ୟ ଓ ଅଗ୍ନି ରୂପିଣୀ ଏହି ପ୍ରଧାନ ତିନି ନାଡ଼ୀ ମେରୁଦଣ୍ଡ ଆଶ୍ରୟ କରି ରହିଅଛନ୍ତି । ଯେ ନାଡ଼ୀ ବାମଭାଗରେ ଅବସ୍ଥାନ କରିଅଛି, ତାହା ଚନ୍ଦ୍ର ରୂପିଣୀ, ଶୁକ୍ଳବର୍ଣ୍ଣା, ଶକ୍ତିରୂପା ଓ ଅମୃତମୟୀ, ଏହାର ନାମ ଇଡ଼ା । ଦକ୍ଷିଣ ଭାଗରେ ପୁରୁଷରୂପିଣୀ ଯେ ନାଡୀ ସୂର୍ଯ୍ୟ ମୂର୍ତ୍ତିରେ ଅବସ୍ଥାନ କରିଅଛି, ତାହାର ବର୍ଣ୍ଣ ଦାଡ଼ିମ ପୁଷ୍ପର କେଶରପରି । ମୁନିଗଣ ଏହାକୁ ବିଷମ୍ଭ ନାମରେ ଉଲ୍ଲେଖ କରି ଅଛନ୍ତି । ଏହି ନାଡ଼ୀ ନାମ ପିଙ୍ଗଳା ।

ମୂଳାଧାରଠାରୁ ବ୍ରହ୍ମରନ୍ଧ୍ର ପର୍ଯ୍ୟନ୍ତ ମେରୁଦଣ୍ଡର ମଧ୍ୟଭାଗରେ ଯେ ନାଡ଼ୀ ଅବସ୍ଥାନ କରିଅଛି; ସର୍ବତେଜୋମୟୀ ବହ୍ନିରୂପିଣୀ, ଏହି ନାଡ଼ୀର ନାମ ସୁଷୁମ୍ନା ।

## ଚିତ୍ରାନାଡ଼ୀ

ତସ୍ୟାମଧ୍ୟେ ବିଚିତ୍ରାଖ୍ୟା ଅମୃତ ସ୍ରାବିଣୀ ଶୁଭା ।
ସର୍ବଦେବମୟୀ ସାତୁ ଯୋଗିନାଂ ହୃଦୟଙ୍ଗମା ।
ବିସର୍ଗାତ୍ ବିନ୍ଦୁପର୍ଯ୍ୟନ୍ତଂ ବ୍ୟାପ୍ୟ ତିଷ୍ଠତି ତତ୍ତ୍ୱତଃ ।

ସେହି ସୁଷୁମ୍ନା ନାଡ଼ୀର ଭିତର ଦେଇ ଆଉ ଗୋଟିଏ ଅତି ସୂକ୍ଷ୍ମ ନାଡ଼ୀ ସୁଧାକ୍ଷରଣ କରି ଗୁହ୍ୟଦ୍ୱାରଠାରୁ ପରମ ଶିବ ପର୍ଯ୍ୟନ୍ତ ସ୍ଥାନ ବ୍ୟାପୀ ରହିଅଛି, ଏହି ନାଡ଼ୀର ନାମ ଚିତ୍ରା ।

ଏହା ସର୍ବଦେବମୟୀ । ଏହା ଏକମାତ୍ର ଯୋଗୀଗଣଙ୍କ ହୃଦ୍‌ଗମ୍ୟ ।

## ୧—ମୂଳଧାର ଚକ୍ର

ମୂଳାଧାରେ ତ୍ରିକୋଣାଖ୍ୟେ ଇଚ୍ଛା ଜ୍ଞାନ କ୍ରିୟାତ୍ମିକେ ।
ମଧ୍ୟେ ସ୍ୱୟଂଭୁଲିଙ୍ଗ ତୁ କୋଟିସୂର୍ଯ୍ୟ ସମପ୍ରଭମ୍ ।
ତଦୂର୍ଦ୍ଧ୍ୱେ କାମବୀଜଂ ତୁ କଳଶାନ୍ତ୍ୟେନ୍ଦୁ ନାମକମ୍
ତଦୂର୍ଦ୍ଧ୍ୱେତୁ ଶିଖାକାର କୁଣ୍ଡଲୀ ବ୍ରହ୍ମ ବିଗ୍ରହା ।

Digitized by srujanika@gmail.com

ମୂଳାଧାର ପଦ୍ମରେ ଗୋଟିଏ ତ୍ରିକୋଣ ଯନ୍ତ୍ର ଇଚ୍ଛା ଓ ଜ୍ଞାନ ରୂପେ ଅବସ୍ଥିତ । ସେହି ତ୍ରିକୋଣର ମଧ୍ୟ ସ୍ଥଳରେ କୋଟିସୂର୍ଯ୍ୟ ପରି ତେଜସ୍ୱୀ ସ୍ୱୟଂଭୂଲିଙ୍ଗ ଅବସ୍ଥାନ କରିଅଛନ୍ତି । ଏହି ତ୍ରିକୋଣର ଊର୍ଦ୍ଧ୍ୱଦେଶରେ "କ୍ଲୀଂ" ଏହି କାମବୀଜ ବର୍ତ୍ତମାନ । ଏହି କାମବୀଜର ଶିଖାକାର କୁଣ୍ଡଳୀ, ବ୍ରହ୍ମ ମୂର୍ତ୍ତିରେ ବିରାଜମାନ କରୁଅଛନ୍ତି ।

## ୨—ସ୍ୱାଧିଷ୍ଠାନ ଚକ୍ର

ବ ସ ବର୍ଣ୍ଣଂ ଚତୁର୍ଦଳଂ
ଦ୍ରୁତହେମ ସମପ୍ରଖ୍ୟଂ ପଦ୍ମଂତତ୍ର ବିଭାବୟେତ୍ ।
ତଦୂର୍ଦ୍ଧ୍ୱେଽଗ୍ନି ସମପ୍ରଖ୍ୟଂ ଷଡ୍‌ଦଳଂ ହୀରକ ପ୍ରଭଂ
ବାଦିଲାନ୍ତ ଷଡ୍‌ବର୍ଣ୍ଣେନ ଯୁକ୍ତାଧିଷ୍ଠାନ ସଂଜ୍ଞକମ୍
ମୂଳ ମାଧାର ଷଟ୍‌କାନାଂ ମୂଳାଧାରଂ ତତୋ ବିଦୁଃ
ସ୍ୱଶବ୍ଦେନ ପରଂ ଲିଙ୍ଗଂ ସ୍ୱାଧିଷ୍ଠାନଂ ତତୋ ବିଦୁଃ

ଏହାର ବହିର୍ଦେଶରେ ଚତୁର୍ଦଳ ପଦ୍ମରେ ବ, ଶ, ଷ, ସ, ଏହି ଚାରିବର୍ଣ୍ଣ ରହିଅଛି । ଏହି ପଦ୍ମକୁ ଗଳିତ ସୁବର୍ଣ୍ଣ ପରି ବର୍ଣ୍ଣବିଶିଷ୍ଟ ଚିନ୍ତା କରିବ । ଏହି ମୂଳ ଚକ୍ରର ଊର୍ଦ୍ଧ୍ୱଦେଶରେ ଅଗ୍ନିସଦୃଶ କାନ୍ତି ବିଶିଷ୍ଟ, ହୀରକପରି ନିର୍ମଳ ଷଡ୍‌ଦଳ ଏକପଦ୍ମ ବିଦ୍ୟମାନ । ଏହି ପଦ୍ମର ନାମ ଅଧିଷ୍ଠାନଚକ୍ର । ଏହି ପଦ୍ମରେ ବ, ଭ, ମ, ଯ, ର, ଲ, ଏହି ଛଅଗୋଟି ବର୍ଣ୍ଣ ରହିଅଛି ।

ଏହି ଚତୁର୍ଦଳ ପଦ୍ମ, ଛ ଗୋଟି ଆଧାରର ମୂଳ ବୋଲି ଏହାକୁ ମୂଳାଧାର ବୋଲିହୁଏ । ସ୍ୱଶବ୍ଦରେ ପରଲିଙ୍ଗ ଏହି ପଦ୍ମରେ ସେହି ପରଲିଙ୍ଗର ଅଧିଷ୍ଠାନ । ଏହି କାରଣରୁ ଏହାକୁ ସ୍ୱାଧିଷ୍ଠାନ ବୋଲିଯାଏ ।

Digitized by srujanika@gmail.com

## ୩—ମଣିପୁର ଚକ୍ର

ତଦୂର୍ଦ୍ଧ୍ୱେ ନାଭିଦେଶେତୁ ମଣିପୁରଂ ମହତ୍ ପ୍ରଭଂ,
ମେଘାଭଂ ବିଦ୍ୟୁଦାଭଂ ଚ ବହୁତେଜୋମୟଂ ତତଃ।
ତତ୍‌ପଦ୍ମଂ ମଣିବତ୍ ଭିନ୍ନଂ ମଣି ପୁରଂ ତଥୋଚ୍ୟତେ ।
ଦଶଭିଶ୍ଚ ଦଳୈର୍ଯୁକ୍ତଂ ଡାଦିଫାନ୍ତାକ୍ଷରାନ୍ୱିତଂ
ଶିବେନାଧିଷ୍ଠିତଂପଦ୍ମଂ ବିଶ୍ୱଲୋକୈକକାରଣମ୍ ।

ଏହି ପଦ୍ମର ଊର୍ଦ୍ଧ୍ୱରେ ନାଭିଦେଶରେ ମଣିପୁର ନାମରେ ଅତ୍ୟୁଜ୍ଜ୍ୱଳକାନ୍ତି ଦଶଦଳ ପଦ୍ମ ଅଛି । ଏହି ପଦ୍ମର ବର୍ଣ୍ଣ ମେଘ ଓ ବିଦ୍ୟୁତ୍ ପରି ବହୁ ତେଜୋମୟ । ମଣିପରି ଏହି ପଦ୍ମର ବର୍ଣ୍ଣ ଦିଶୁଥିବାରୁ ଏହାର ନାମ ମଣିପୁର ।

ଏହି ପଦ୍ମର ଦଶଟି ଦଳ । ସେହି ଦଶ ଦଳରେ ଡ, ଢ, ଣ, ତ, ଥ, ଦ, ଧ, ନ, ପ, ଫ, ଏହି ଦଶଟି ବର୍ଣ୍ଣ ବିଦ୍ୟମାନ । ଶିବ ଏହି ପଦ୍ମରେ ଅଧିଷ୍ଠାନ କରି ଅଛନ୍ତି ବୋଲି ଏହି ପଦ୍ମ ନିଖିଳ ଜଗତର ଏକମାତ୍ର କାରଣ ।

## ୪—ଅନାହତ ଚକ୍ର

ତଦୂର୍ଦ୍ଧ୍ୱେଽନାହତଂ ପଦ୍ମ ମୁଦ୍ୟଦାଦିତ୍ୟ ସନ୍ନିଭମ୍
କାଦି ଠାନ୍ତାକ୍ଷରୈରର୍କପତ୍ରନିଷ୍ଟ ସମଧିଷ୍ଠିତମ୍ ।
ତନ୍ମଧ୍ୟେ ବାଣ ଲିଙ୍ଗନ୍ତୁ ସୂର୍ଯ୍ୟାୟୁତ ସମପ୍ରଭମ୍
ଶବ୍ଦ ବ୍ରହ୍ମମୟଂ ଶବ୍ଦୋଽନାହତସ୍ତତ୍ର ଦୃଶ୍ୟତେ ।
ଅନାହତାଖ୍ୟଂ ପଦ୍ମଂ ତନ୍ମୁନିଭିଃପରିକୀର୍ତ୍ତ୍ୟତେ ।

ଏହି ମଣିପୁରର ଊର୍ଦ୍ଧ୍ୱରେ ଅନାହତ ପଦ୍ମ, ଉଦୀୟମାନ ସୂର୍ଯ୍ୟପରି ଏହାର କାନ୍ତି, ଏହାର ଦ୍ୱାଦଶଟି ଦଳ, ଏହି ଦ୍ୱାଦଶ ଦଳରେ କ, ଖ, ଗ, ଘ, ଙ, ଚ, ଛ, ଜ, ଝ, ଞ, ଟ, ଠ, ଏହି



Digitized by srujanika@gmail.com

ଦ୍ୱାଦଶ ବର୍ଣ୍ଣ ରହିଅଛି । ଏହି ଅନାହତ ପଦ୍ମ ମଧ୍ୟରେ ଅଯୁତ ସୂର୍ଯ୍ୟପରି କାନ୍ତି ସମ୍ପନ୍ନ ଶବ୍ଦବ୍ରହ୍ମମୟ ବାଣ ଲିଙ୍ଗ ବିରାଜମାନ ଏହି ପଦ୍ମରେ ଅନାହତ ଶବ୍ଦ ପରିଲକ୍ଷିତ ହୁଏ ବୋଲି ଏହାକୁ ଅନାହତ ପଦ୍ମ କୁହାଯାଏ ।

ଆନନ୍ଦ ସଦନଂ ତତ୍ତୁ ପୁରୁଷାଧିଷ୍ଠିତଂ ପରଂ ।

ଏହି ଅନାହତ ପଦ୍ମରେ ପରମ ପୁରୁଷ ଅଧିଷ୍ଠାନ କରନ୍ତି ବୋଲି ଏହା ଆନନ୍ଦ ଭବନ ।

## ୫—ବିଶୁଦ୍ଧ ଚକ୍ର

ତଦୂର୍ଦ୍ଧ୍ୱନ୍ତୁ ବିଶୁଦ୍ଧାଖ୍ୟଂ ଦଳଂ ଷୋଡ଼ଶ ପଙ୍କଜଂ
ସ୍ୱରୈଃ ଷୋଡ଼ଶକୈ ର୍ଯୁକ୍ତଂ ଧୂମ୍ରବର୍ଣ୍ଣଂ ମହତ୍ ପ୍ରଭମ୍ ।
ବିଶୁଦ୍ଧିଂ ତନୁତେ ଯସ୍ମାତ୍ ଜୀବସ୍ୟ ହଂସ ଲୋକନାତ୍ ।
ବିଶୁଦ୍ଧଂ ପଦ୍ମମାଖ୍ୟାତମାକାଶାଖ୍ୟଂ ମହାଦ୍ଭୁତମ୍ ।

ଏହାର ଊର୍ଦ୍ଧରେ ବିଶୁଦ୍ଧ ନାମକ ଷୋଡ଼ଶ ଦଳପଦ୍ମ । ଏହି ବୃହତ୍ ପଦ୍ମ ଧୂମ୍ରବର୍ଣ୍ଣ, ଏହି ପଦ୍ମର ଷୋଡ଼ଶ ଦଳରେ ଅକାରାଦି ଷୋଡ଼ଶ ସ୍ୱରବର୍ଣ୍ଣ ବିଦ୍ୟମାନ । ଏହି ପଦ୍ମରେ 'ହଂସଃ' (ପରମଶିବ) ଦର୍ଶନ ହେବାରୁ ଜୀବ ବିଶୁଦ୍ଧି ଲାଭ କରେ । ଏହି କାରଣରୁ ଏହି ପଦ୍ମକୁ ବିଶୁଦ୍ଧ ପଦ୍ମ କୁହାଯାଏ । ଏହି ଅଦ୍ଭୁତ ପଦ୍ମର ନାମ ଆକାଶ ।

## ୬—ଆଜ୍ଞାଚକ୍ର

ଆଜ୍ଞାଚକ୍ରଂ ତଦୁର୍ଦ୍ଧ୍ୱେତୁ ଆତ୍ମନାଧିଷ୍ଠିତଃ ପରମ୍
ଆଜ୍ଞା ସଂକ୍ରମଣଂ ତତ୍ର ଗୁରୋରାଜ୍ଞେତି କୀର୍ତ୍ତିତମ୍ ।

ଏହି ପଦ୍ମର ଊର୍ଦ୍ଧ୍ୱଦେଶରେ ଆଜ୍ଞାଚକ୍ର, ଏହି ଚକ୍ରରେ ଆତ୍ମା ଅଧିଷ୍ଠାନ କରିଅଛନ୍ତି, ( ଏହି ପଦ୍ମ ଶ୍ୱେତବର୍ଣ୍ଣ ଏହାର ଦୁଇଟି

Digitized by srujanika@gmail.com

ଦଳ, ଦୁଇଦଳରେ ହ, କ୍ଷ, ଏହି ଦୁଇବର୍ଣ୍ଣ ବିରାଜିତ ) ଗୁରୁଙ୍କ ଆଜ୍ଞାରେ ଏହି ଚକ୍ରରୁ ଆଜ୍ଞା ସଂକ୍ରମିତ ହୁଏ ଅର୍ଥାତ୍ ବାକ୍‌ସିଦ୍ଧ ହୁଏ ବୋଲି ଏହି ଚକ୍ରକୁ ଆଜ୍ଞାଚକ୍ର କୁହାଯାଏ ।

## ସାରାଂଶ

ସହସ୍ରାରମ୍ବୁଜଂ ବିନ୍ଦୁ ସ୍ଥାନଂ ତଦୂର୍ଦ୍ଧ୍ୱମୀରିତମ୍ ।

ଏହାର ଊର୍ଦ୍ଧ୍ୱଦେଶରେ ସହସ୍ରାରପଦ୍ମ ଓ ବିନ୍ଦୁ ସ୍ଥାନ ଅବସ୍ଥିତ । ପ୍ରଥମରେ ପୂରକ ଦ୍ୱାରା ମୂଳାଧାର ଚକ୍ରରେ ମନଃ ସଂଯୋଗ କରିବ । ଗୁହ୍ୟଦେଶ ଓ ମେଢ୍ରଦେଶର ମଧ୍ୟସ୍ଥଳରେ ଯେ କୁଣ୍ଡଳିନୀ ଶକ୍ତି ରହିଅଛି, ଏହି ଶକ୍ତିକୁ ଅକୁଞ୍ଚିତ କରି ଜାଗ୍ରତ କରିବ । ପରେ ବ୍ରହ୍ମଗ୍ରନ୍ଥି, ରୁଦ୍ରଗ୍ରନ୍ଥି ଭେଦ ପୂର୍ବକ ସ୍ୱୟମ୍ଭୂଲିଙ୍ଗ, ବାଣଲିଙ୍ଗ ଓ ଇତରଲିଙ୍ଗ ଭେଦକରି ଏହି କୁଣ୍ଡଳିନୀ ଶକ୍ତିକୁ ବିନ୍ଦୁଚକ୍ରକୁ ନେଇଯିବ । ଏହାପରେ କୁଣ୍ଡଳିନୀକୁ ପରଶିବଙ୍କ ସହିତ ଏକୀଭୂତ ଚିନ୍ତା କରିବ । ଉଭୟଙ୍କ ସଂଯୋଗରେ ଗଳିତ ଲକ୍ଷାରସ ସଦୃଶ ଯେ ଅମୃତ ରସ ଉତ୍ପନ୍ନ ହେବ ସେହି ଅମୃତ ରସ ଅଗ୍ରାଧ ଦେବତା ଯୋଗସିଦ୍ଧି ଦାୟିନୀ କୁଣ୍ଡଳିନୀକୁ ପାନ କରାଇ ଅର୍ଥାତ୍ ସେହି ଦେବୀର ତର୍ପଣ କରି ବିଗଳିତ ସେହି ଅମୃତ ଧାରାଦ୍ୱାରା ଷଟ୍‌ଚକ୍ର ଦେବତା ରୁଦ୍ର, ଈଶ୍ୱର, ସଦାଶିବ, ପରଶିବ, ସାବିତ୍ରୀ, ମହାଲକ୍ଷ୍ମୀ, ଭଦ୍ରକାଳୀ, ଭୁବନେଶ୍ୱରୀ, ବ୍ରହ୍ମା, ବିଷ୍ଣୁ ପ୍ରଭୃତିଙ୍କର ତର୍ପଣ କରିବ, ତାହା ପରେ ଯୋଗୀ ସୁଷୁମ୍ନା ପଥଦ୍ୱାରା କୁଳ-କୁଣ୍ଡଳିନୀକୁ ପୁନର୍ବାର ମୂଳାଧାରକୁ ଆଣିବ । ଏହିପରି ପ୍ରତିଦିନ ଅଭ୍ୟାସ କଲେ ସାଧକ ସଂସାର ବନ୍ଧନରୁ ମୁକ୍ତ ହୋଇ ପାରିବେ ମଧ୍ୟ ସମସ୍ତ ଜରା ପ୍ରଭୃତି ଦୁଃଖରୁ ମୁକ୍ତ ହୋଇ ପାରିବେ ।

Digitized by srujanika@gmail.com

## ହଂସତନ୍ତ୍ର

ମନୁଷ୍ୟ ଦେହର ଅଭ୍ୟନ୍ତରରେ ଅନାହତ ନାମକ ପଦ୍ମରେ ତ୍ରିକୋଣାକାରପୀଠରେ ବାୟୁବୀଜ 'ଯ' ଅଛି । ଏହି ବାୟୁମଣ୍ଡଳ ମଧ୍ୟରେ କାମକଳାରୂପ ତେଜୋମୟ ରକ୍ତବର୍ଣ୍ଣ ପୀଠରେ କୋଟି ବିଦ୍ୟୁତ୍ ସଦୃଶ ଭାସ୍ୱର ସୁବର୍ଣ୍ଣ ବର୍ଣ୍ଣ ବାଣଲିଙ୍ଗ ଶିବ ଅଛନ୍ତି । ତାଙ୍କ ମସ୍ତକରେ ଶ୍ୱେତବର୍ଣ୍ଣ ତେଜୋମୟ ଅତି ସୂକ୍ଷ୍ମ ଗୋଟିଏ ମଣି ଅଛି । ତାହା ମଧ୍ୟରେ ନିର୍ବାତ ଦୀପ କଳିକା ପରି ହଂସ ବୀଜ ପ୍ରତିପାଦ୍ୟ ତେଜୋ ବିଶେଷ ଅଛି, ଏ ହେଉଛନ୍ତି ଜୀବର ଜୀବାତ୍ମା । ଅହଂଭାବ ଆଶ୍ରୟକରି ଏହି ଜୀବାତ୍ମା ମାନବ ହୃଦୟରେ ଅଛନ୍ତି ।

ସୋଽହଂ—ହଂସଃ ପଦେନୈବ ଜୀବୋ ଜପତି ସର୍ବଦା ।

ହଂସର ବିପରୀତ "ସୋଽହଂ" ଜୀବ ସର୍ବଦା ଜପ କରୁଅଛି । ଶ୍ୱାସ ପ୍ରଶ୍ୱାସରେ 'ହଂସ' ଉଚ୍ଚାରିତ ହୁଏ । ଶ୍ୱାସ ବାୟୁର ନିର୍ଗମନ ସମୟରେ 'ହଂ' ଓ ଗ୍ରହଣ ସମୟରେ 'ସଃ' ଏହି ଶବ୍ଦ ଉଚ୍ଚାରିତ ହୁଏ । 'ହଂ' ଶିବ ସ୍ୱରୂପ ଏବଂ 'ସଃ' ଶକ୍ତି ସ୍ୱରୂପିଣୀ ।

ହଂ କାରେ ନିର୍ଗମେ ପ୍ରୋକ୍ତଃ ସକାରସ୍ତୁ ପ୍ରବେଶନେ
ହଂ କାରଃ ଶିବ ରୂପେଣ ସକାରଃ ଶକ୍ତିରୁଚ୍ୟତେ ।

ଶ୍ୱାସ ପରିତ୍ୟାଗ କରି ଯଦି ଗ୍ରହଣ ନ କରାଯାଏ ତେବେ ତହିଁରେ ମୃତ୍ୟୁର ସମ୍ଭାବନା । ଅତଏବ 'ହଂ' ଶିବ ସ୍ୱରୂପ ବା ମୃତ୍ୟୁ। ସଃକାର ଗ୍ରହଣ, ଏହା ଶକ୍ତି ସ୍ୱରୂପ । ଅତଏବ ଏହି ଶ୍ୱାସ ପ୍ରଶ୍ୱାସରେ ଜୀବର ଜୀବନ; ଶ୍ୱାସ ରୋଧ ହେଲେ ମୃତ୍ୟୁ, ସୁତରାଂ 'ହଂ ସଃ' କେବଳ ଜୀବର ଜୀବାତ୍ମା ।

Digitized by srujanika@gmail.com

## ପ୍ରଣବତତ୍ତ୍ୱ

ଅନାହତ ଚକ୍ରର ପୂର୍ବୋକ୍ତ "ହଂସଃ" ଧ୍ୱନିକୁ ପ୍ରଣବ ଧ୍ୱନି କୁହାଯାଏ । ଯଥା :—

ଶବ୍ଦ ବ୍ରହ୍ମେତିତାଂ ପ୍ରାହ ସାକ୍ଷାଦ୍ଦେବଃ ସଦାଶିବଃ ।
ଅନାହତେଷୁ ଚକ୍ରେଷୁ ସ ଶବ୍ଦଃ ପରିକୀର୍ତ୍ତିତଃ ॥

ଅର୍ଥାତ୍ ଶବ୍ଦ ବ୍ରହ୍ମ । ତାହା ସାକ୍ଷାତ୍ ଦେବତା ସଦାଶିବ । ସେହି ଶବ୍ଦ ଅନାହତ ଚକ୍ରରେ ଅଛି, ଅନାହତ ଚକ୍ରରେ ହଂସଃ ଉଚ୍ଚାରିତ ହୁଏ । ସେହି 'ହଂସଃ' କେବଳ ପ୍ରଣବ ବା ଓଁକାର ।

ହକାରଂ ଚ ସକାରଂଚ ଲୋପୟିତ୍ୱା ତତଃପରଂ
ସନ୍ଧିଂ କୁର୍ଯ୍ୟାତ୍ ତତଃ ପଶ୍ଚାତ୍ ପ୍ରଣବୋଽସୌ ମହାମନୁଃ ।

ଅର୍ଥାତ୍ "ହଂସଃ" ବିପରୀତ "ସୋଽହଂ" ହୁଏ, କିନ୍ତୁ 'ସଃ' ଅଉ ହ ଲୋପକଲେ କେବଳ "ଓଁ" ରହେ । ଏହା କେବଳ ହୃଦୟସ୍ଥ ଶବ୍ଦବ୍ରହ୍ମରୂପ ଓଁକାର । ଓଁକାର ପ୍ରଣବର ନାମାନ୍ତର ମାତ୍ର । ଓଁକାରର ତିନିରୂପ ଶ୍ୱେତ, ପୀତ ଓ ଲୋହିତ । ଅ, ଉ, ମ ଯୋଗରେ ପ୍ରଣବ ହୋଇଅଛି ଏବଂ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ପ୍ରଣବରେ ପ୍ରତିଷ୍ଠିତ ହୋଇ ଅଛନ୍ତି । ଯଥା :—

ଶିବୋ ବ୍ରହ୍ମା ତଥା ବିଷ୍ଣୁର୍ଓଁକାରେଚ ପ୍ରତିଷ୍ଠିତଃ ।
ଅକାରଶ୍ଚ ଭବେତ୍ ବ୍ରହ୍ମା ଉକାରଃ ସଚ୍ଚିଦାତ୍ମକଃ ॥
ମକାରୋରୁଦ୍ର ଇତ୍ୟୁକ୍ତଃ

ଅକାର ବ୍ରହ୍ମା, ଉକାର ବିଷ୍ଣୁ, ମକାର ମହେଶ୍ୱର, ସୁତରାଂ ପ୍ରଣବରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ତିନି ଦେବତା ଇଚ୍ଛା, କ୍ରିୟା, ଓ ଜ୍ଞାନ ଏହି ତିନିଶକ୍ତି ଏବଂ ସତ୍ତ୍ୱ, ରଜଃ ଓ ତମଃ ଏହି ତିନିଗୁଣ ପ୍ରତିଷ୍ଠିତ, ତେଣୁ ପ୍ରଣବକୁ ତ୍ରୟୀ କହନ୍ତି ।

Digitized by srujanika@gmail.com

## କୁଳ କୁଣ୍ଡଳିନୀ-ତତ୍ତ୍ୱ

ଗୁହ୍ୟ ଦେଶରୁ ଦୁଇ ଅଙ୍ଗୁଳି ଊର୍ଦ୍ଧ୍ୱକୁ, ଲିଙ୍ଗ ମୂଳରୁ ଦୁଇ ଅଙ୍ଗୁଳି ନିମ୍ନକୁ ଏପରି ଚାରି ଅଙ୍ଗୁଳି ବିସ୍ତୃତ ମୂଳାଧାର ପଦ୍ମ ଅଛି, ତା ମଧ୍ୟରେ ପୂର୍ବୋକ୍ତ ବ୍ରହ୍ମନାଡ଼ୀ ମୁଖରେ ସ୍ୱୟଂଭୁ ଲିଙ୍ଗ ଅଛି । ତାହାର ଶରୀରରେ ଦକ୍ଷିଣାବର୍ତ୍ତି ଭାବେ ତିନିବାର ବେଷ୍ଟନ କରି କୁଣ୍ଡଳିନୀ ଶକ୍ତି ଅଛି ।

ପଶ୍ଚିମାଭିମୁଖୀ ଯୋନିର୍ଗୁଦ ମେଢ୍ରାନ୍ତରାଳଗା,
ତତ୍ର କନ୍ଦଂ ସମାଖ୍ୟାତଂ ତତ୍ରାସ୍ତେ କୁଣ୍ଡଳୀ ସଦା ।

ଶିବସଂହିତା

ଗୁହ୍ୟ ଓ ଲିଙ୍ଗ ଏହି ଦୁଇଟି ମଧ୍ୟ ସ୍ଥାନରେ ପଶ୍ଚାଦଭିମୁଖୀ ଯୋନିମଣ୍ଡଳ ଅଛି । ସେହି ଯୋନି ମଣ୍ଡଳକୁ କନ୍ଦ କୁହାଯାଏ, ଯୋନି ମଣ୍ଡଳର ମଧ୍ୟରେ କୁଣ୍ଡଳିନୀ ଶକ୍ତି ନାଡ଼ୀ ସକଳକୁ ବେଷ୍ଟନକରି ସାର୍ଦ୍ଧ ତ୍ରିକୁଟିଳାକାର ସର୍ପ ରୂପେ ଆତ୍ମ ପୁଚ୍ଛ ମୁଖରେ ଦେଇ ସୁଷୁମ୍ନା ଛିଦ୍ରକୁ ଅବରୋଧ କରି ରହିଅଛି ।

ଏହି କୁଣ୍ଡଳିନୀ କେବଳ ନିତ୍ୟାନନ୍ଦ ସ୍ୱରୂପା ପରମା ପ୍ରକୃତି; ତାହାର ଦୁଇମୁଖ, ବିଦ୍ୟୁତ୍ ଲତାକାର ଓ ଅତି ସୂକ୍ଷ୍ମ, ଦେଖିବାକୁ ଅର୍ଦ୍ଧ ଓଁକାର ସଦୃଶ ସମସ୍ତ ପ୍ରାଣୀମାନଙ୍କ ଶରୀରରେ କୁଣ୍ଡଳିନୀ ବିରାଜମାନ କରିଅଛି ।

ଏହି କୁଣ୍ଡଳିନୀର ଭିତରେ କଦଳୀ କୋଷପରି ଅତ୍ୟନ୍ତ କୋମଳ ମୂଳାଧାରରେ ଚିତ୍‌ଶକ୍ତି ବିରାଜିତ । ତାହାର ଗତି ଅତି ଦୁର୍ଲକ୍ଷ ।

କୁଣ୍ଡଳିନୀ ଶକ୍ତି ପ୍ରଚଣ୍ଡ ସ୍ୱର୍ଣ୍ଣବର୍ଣ୍ଣ ତେଜଃ ସ୍ୱରୂପ ଦୀପ୍ତିମତୀ, ଏବଂ ସତ୍ତ୍ୱ, ରଜଃ ଓ ତମଃ ଏହି ତିନିଗୁଣର ପ୍ରସୂତି ବ୍ରହ୍ମଶକ୍ତି, ଏହି କୁଣ୍ଡଳିନୀ ଶକ୍ତି ଇଚ୍ଛା, କ୍ରିୟା ଓ ଜ୍ଞାନ ଏହି ତିନି ନାମରେ

Digitized by srujanika@gmail.com

ବିଭକ୍ତ ହୋଇ ସର୍ବ ଶରୀରସ୍ଥ ପ୍ରତ୍ୟେକ ଚକ୍ରରେ ଭ୍ରମଣ କରେ । ଏହି ଶକ୍ତି ସମସ୍ତ ଲୋକମାନଙ୍କର ଜୀବନୀ ଶକ୍ତି । ଏହି ଶକ୍ତିକୁ ଆୟତ୍ତ ନ କଲା ପର୍ଯ୍ୟନ୍ତ ଯୋଗ ସାଧନ ହୋଇ ନ ପାରେ ।

ଏହି କୁଣ୍ଡଳିନୀ ଶକ୍ତି ଜୀବାତ୍ମାର ପ୍ରାଣ ସ୍ୱରୂପ କିନ୍ତୁ ଏହି ଶକ୍ତି ଅଜ୍ଞାନ ମାୟାଚ୍ଛନ୍ନ ହୋଇ ସୁଖ ଦୁଃଖାଦି ଭ୍ରାନ୍ତ ଜ୍ଞାନରେ କର୍ମଫଳ ଭୋଗକରେ, କୁଣ୍ଡଳିନୀ ଶକ୍ତି ଜାଗ୍ରତ ନ ହେଲେ ଶତ ଶତ ଶାସ୍ତ୍ର ପାଠ ବା ସାଧୁ ଉପଦେଶ ସମସ୍ତ ଜ୍ଞାନ ବିଫଳ ହୁଏ ।

ମୂଳପଦ୍ମେ କୁଣ୍ଡଳିନୀ ଯାବନ୍ନିଦ୍ରାୟିତା ପ୍ରଭୋ
ତାବତ୍ କିଂଚିତ୍ ନସିଦ୍ଧ୍ୟେତ ମନ୍ତ୍ର ଯନ୍ତ୍ରାର୍ଚ୍ଚନାଦିକମ୍
ଜାଗର୍ତ୍ତି ଯଦି ସା ଦେବୀ ବହୁଭିଃ ପୁଣ୍ୟ ସଂଚୟୈଃ
ତଦା ପ୍ରସାଦମାୟାତି ମନ୍ତ୍ର ଯନ୍ତ୍ରାର୍ଚ୍ଚନାଦିକମ୍ ॥

ଗୌତମୀୟ ତନ୍ତ୍ରେ

ମୂଳାଧାର ସ୍ଥିତ କୁଣ୍ଡଳିନୀ ଶକ୍ତି ଯେତେବେଳ ପର୍ଯ୍ୟନ୍ତ ଜାଗରିତ ନ ହେବ ସେତେବେଳ ପର୍ଯ୍ୟନ୍ତ ମନ୍ତ୍ର ଜପ ଓ ଯନ୍ତ୍ରାଦିଦ୍ୱାରା ପୂଜା ଅର୍ଚ୍ଚନା ବିଫଳ ହେବ ଯଦି କୌଣସି ପୁଣ୍ୟବଳରୁ ସେହି ଶକ୍ତି ଜାଗରିତା ହୁଏ ତେବେ ମନ୍ତ୍ର ଯନ୍ତ୍ର ଜପାଦିର ଫଳ ସିଦ୍ଧ ହେବ । ଅତଏବ ଯୋଗାନୁଷ୍ଠାନ ଦ୍ୱାରା କୁଣ୍ଡଳିନୀର ଚୈତନ୍ୟ ସମ୍ପାଦନ ସାଧକର କର୍ତ୍ତବ୍ୟ ।

## ଆଚାର

ବାମାଚାର ଓ କୁଳାଚାର ରୂପେ ଏହି ତନ୍ତ୍ର ପ୍ରାୟ ଦୁଇ ଭାଗରେ ବିଭକ୍ତ । ବାମାଚାର—ଯେଉଁମାନେ ଦିବସରେ ବ୍ରହ୍ମଚାରୀ, ରାତିରେ ପଞ୍ଚତତ୍ତ୍ୱ ଏବଂ ସ୍ୱୟଂଭୂ, କୁଣ୍ଡ, ଗୋଳକ ଓ ବଜ୍ରପୁଷ୍ପ ଦ୍ୱାରା କୁଳସ୍ତ୍ରୀର ପୂଜା କରନ୍ତି ସେହିମାନେ ବାମାଚାରୀ (ବାମାମାନେ ସ୍ତ୍ରୀ)

Digitized by srujanika@gmail.com

ସ୍ୱରୂପା ହୋଇ ପରମା ପ୍ରକୃତିର ପୂଜା ଯେଉଁମାନେ କରୁଥାନ୍ତି ସେମାନଙ୍କୁ ବାମାଚାରୀ କହନ୍ତି । ବାମାଚାର କ୍ରିୟା ସର୍ବଦା ଗୋପନୀୟ ।

କୌଳାଚାର—କୌଳାଚାରୀ ବ୍ୟକ୍ତିର ମହାମନ୍ତ୍ର ସାଧନାରେ ଦିକ୍ ଓ କାଳର କୌଣସି ନିୟମ ନ ଥାଏ । କୌଣସିଠାରେ ଶିଷ୍ଟ ବା କୌଣସି ସ୍ଥାନରେ ଭ୍ରଷ୍ଟ କୌଣସି ସ୍ଥାନରେ ଭୂତ ବା କୌଣସି ସ୍ଥାନରେ ପିଶାଚ ତୁଲ୍ୟ ହୋଇ, ନାନା ବେଶ ଧାରଣ ପୂର୍ବକ କୌଳବ୍ୟକ୍ତି ଭୂମଣ୍ଡଳରେ ବିଚରଣ କରେ । କୌଳାଚାରୀ ବ୍ୟକ୍ତିର କୌଣସି ନିର୍ଦ୍ଦିଷ୍ଟ ନିୟମ ନ ଥାଏ । ସ୍ଥାନାସ୍ଥାନ, କାଳାକାଳ, କର୍ମାକର୍ମ ଇତ୍ୟାଦି କୌଣସି ମାନ ବିଚାର ନ ଥାଏ । ପୃଥିବୀର ସବୁ ପଦାର୍ଥ ଉପରେ ସମାନ ଜ୍ଞାନ ଥାଏ । ତାହାର ଶତ୍ରୁ ମିତ୍ର ସମାନ ଜ୍ଞାନ. ଶ୍ମଶାନ ଓ ଗୃହରେ ସମାନ ଜ୍ଞାନ, କାଞ୍ଚନ ଓ ତୃଣରେ ସମାନ ଜ୍ଞାନ—କୌଳାଚାରୀ ବ୍ୟକ୍ତି ପ୍ରକୃତ ଜିତେନ୍ଦ୍ରିୟ । ସେ କେବଳ ଶେଷ ତତ୍ତ୍ୱ ସାଧନାର ଅଧିକାରୀ, ନିସ୍ପୃହ, ଉଦାସୀନ, ପରମଯୋଗୀ ପୁରୁଷ ଅଟେ ।

ଅନ୍ତଃ ଶାକ୍ତାଃ ବହିଃ ଶୈବାଃ ସଭାୟାଂ ବୈଷ୍ଣବା ମତାଃ
ନାନା ବେଶଧରାଃ କୌଳାଃ ବିଚରନ୍ତି ମହୀତଳେ

ଅନ୍ତରେ ଶାକ୍ତ, ବାହାରେ ଶୈବ, ସଭାରେ ବୈଷ୍ଣବ, ଏହିପରି ନାନାରୂପ ଧାରଣ କରି କୌଳ ସମସ୍ତ ଜଗତରେ ଭ୍ରମଣ କରନ୍ତି ।

## ତନ୍ତ୍ରର ବ୍ରହ୍ମବାଦ

ଶିବ କେବଳ ପରମ ପୁରୁଷ ଏବଂ ଶକ୍ତି କେବଳ ପରମା ପ୍ରକୃତି । ତତ୍ତ୍ୱଦର୍ଶୀ ଯୋଗୀମାନେ ପ୍ରକୃତି ପୁରୁଷର ଏକତାକୁ ବ୍ରହ୍ମ ବୋଲି କହନ୍ତି । ସେହି ଅଦ୍ୱିତୀୟ ପରମାତ୍ମା କେବଳ ଶିବ ଓ ଶକ୍ତି

Digitized by srujanika@gmail.com

ଭେଦରେ ଦ୍ୱିଧା ଭାବାପନ୍ନ ହୋଇ ଅଛନ୍ତି । ସୃଷ୍ଟିର ପୂର୍ବେ ଏହି ଜଗତ୍ କେବଳ ସତ୍ ମାତ୍ର ଥିଲା । ସେହି ଏକ ଓ ଅଦ୍ୱିତୀୟ । ସେ ଆଲୋଚନା କଲେ ଯେ, ମୁଁ ପ୍ରଜା ରୂପରେ ବହୁତ ହେବ ।

ଏହି ବିଷୟରେ ନିର୍ବାଣ ତନ୍ତ୍ରରେ କହି ଅଛନ୍ତି—

ସତ୍ୟଲୋକେ ନିରାକାର ମହାଜ୍ୟୋତିଃ ସ୍ୱରୂପିଣୀ,
ମାୟାଚ୍ଛାଦିତାତ୍ମନା ଚଣକାକାର ରୂପିଣୀ ।
ମାୟା-ବଲ୍କଲଂ ସତ୍ୟଜ୍ୟ ଦ୍ୱିଧାଭିନ୍ନା ଯଦୋନ୍ମୁଖୀ,
ଶିବ-ଶକ୍ତି-ବିଭାଗେନ ଜାୟତେ ସୃଷ୍ଟିକଳ୍ପନା ।

ସତ୍ୟ ଲୋକରେ ଆକାର ରହିତ ମହାଜ୍ୟୋତିଃ ସ୍ୱରୂପ ପରବ୍ରହ୍ମ ମାହା ଜ୍ୟୋତିଃ ସ୍ୱରୂପା ନିଜ ମାୟାଦ୍ୱାରା ନିଜେ ଆବୃତ ହୋଇ 'ଚଣକ' ଭଳିଆ ଗୋଟିଏ ଭାବରେ ବିରାଜିତ ଅଛନ୍ତି, ଚଣକ (ବୋଠ) ଯେପରି ଗୋଟିଏ ଆବରଣ (ଖୋଳ) ମଧ୍ୟରେ ଅଙ୍କୁର ସହିତ ଦୁଇଟି ଦଳ ଏକତ୍ର ଆବଦ୍ଧ ଥାଏ ।

ସେହିପରି ପ୍ରକୃତି ଓ ପୁରୁଷ ବ୍ରହ୍ମଚୈତନ୍ୟ ସହ ମାୟାରୂପ ଆଚ୍ଛାଦନରେ ଆବୃତ ଥାଏ । ସେହି ମାୟାରୂପ ବଲ୍କଳ (ଖୋଳ) ଭେଦକରି ସେ ଶିବ ଶକ୍ତିରୂପେ ପ୍ରକାଶିତ ହୋଇ ଅଛନ୍ତି । ପ୍ରକୃତି ପୁରୁଷକୁ "ବ୍ରହ୍ମଚୈତନ୍ୟ ସହ" କହିବାର ପ୍ରୟୋଜନ ଏହି ଯେ, ପ୍ରକୃତି ପୁରୁଷାତ୍ମକ ଜୀବଦେହ ବ୍ରହ୍ମଚୈତନ୍ୟ ଦ୍ୱାରା କେବଳ ସଚେତନ ହୁଏ । ବ୍ରହ୍ମଚୈତନ୍ୟ ପରିତ୍ୟକ୍ତ ହେଲେ ଜୀବ ଶରୀରରେ କେବଳ ଜଡ଼ ମାତ୍ର ଅବଶିଷ୍ଟ ରହେ ।

ବ୍ରହ୍ମବୈବର୍ତ୍ତ ପୁରାଣରେ—

ଯୋଗେନାତ୍ମା ସୃଷ୍ଟିବିଧୌ ଦ୍ୱିଧାରୂପୋ ବଭୂବ ସଃ,
ପୁମାଂଶ୍ଚ ଦକ୍ଷିଣାର୍ଦ୍ଧାଙ୍ଗ ବାମାଙ୍ଗ ପ୍ରକୃତିଃ ସ୍ମୃତା ।

Digitized by srujanika@gmail.com

ସା ଚ ବ୍ରହ୍ମ ସ୍ୱରୂପା ଚ ମାୟା ନିତ୍ୟା ସନାତନୀ,
ଯଥାତ୍ମାଚ ତଥା ଶକ୍ତିଃ ଯଥାଗ୍ନୌ ଦାହିକା ସ୍ମୃତା ॥

ପରମାତ୍ମା ସ୍ୱରୂପ ଭଗବାନ୍ ସୃଷ୍ଟି କରିବା ପାଇଁ ଯୋଗ ଆଶ୍ରୟ କରି ନିଜକୁ ଦୁଇଭାଗରେ ବିଭକ୍ତ କଲେ । ଏହି ଦୁଇଟି ଭାଗ ମଧ୍ୟରୁ ଦକ୍ଷିଣ ଅର୍ଦ୍ଧାଙ୍ଗ ପୁରୁଷ ଓ ବାମ ଅର୍ଦ୍ଧାଙ୍ଗ ପ୍ରକୃତି ।

ସେହି ପ୍ରକୃତି ବ୍ରହ୍ମ ସ୍ୱରୂପିଣୀ, ମାୟାମୟୀ ନିତ୍ୟା ଓ ସନାତନୀ, ଯେପରି ଅଗ୍ନି ରହିଲେ ତାହାର ଦାହିକା ଶକ୍ତି ତାହାଠାରେ ଥାଏ, ସେହିପରି ଯେଉଁଠାରେ ଆତ୍ମା ସେହି ସ୍ଥାନରେ ଶକ୍ତି ଏବଂ ଯେଉଁ ସ୍ଥାନରେ ପୁରୁଷ, ସେହି ସ୍ଥାନରେ ପ୍ରକୃତି । କାରଣ—

ଶକ୍ତି ଶକ୍ତିମତୋଶ୍ଚାପି ନ ବିଭେଦଃ କଥଂ ଚ ନ ।

ଶକ୍ତିମାନ୍‌ଠାରୁ ଶକ୍ତି କେତେବେଳେ ହେଲେ ଭିନ୍ନ ହୋଇ ନ ପାରେ ।

ଯଥା ଶିବଃ ତଥା ଦେବୀ ଯଥା ଦେବୀ ତଥା ଶିବଃ,
ନାନୟୋରନ୍ତରଂ ବିଦ୍ୟାତ୍ ଚନ୍ଦ୍ର ଚନ୍ଦ୍ରିକୟୋର୍ଯଥା ।

ବାୟୁପୁରାଣରେ କହିଛନ୍ତି—

ଚନ୍ଦ୍ର ଠାରୁ ଚନ୍ଦ୍ର କିରଣର ଯେପରି ପୃଥକ୍ ସତ୍ତା ନ ଥାଏ ସେହିପରି ଶିବଙ୍କଠାରୁ ଶକ୍ତିର ପୃଥକ୍ ସତ୍ତା ନାହିଁ । ଏଥିପାଇଁ ଯେଉଁଠାରେ ଶିବ ସେଠାରେ ଶକ୍ତି ଏବଂ ଯେଉଁଠାରେ ଶକ୍ତି ସେହିଠାରେ ଶିବ ।

ସାଂଖ୍ୟ ମଧ୍ୟ କହି ଅଛନ୍ତି—

ପୁରୁଷସ୍ୟ ଦର୍ଶନାର୍ଥଂ କୈବଲ୍ୟାର୍ଥଂ ତଥା ପ୍ରଧାନସ୍ୟ,
ପଙ୍ଗ୍ୱନ୍ଧବତ୍ ଉଭୟୋରପି ସଂଯୋଗସ୍ତତ୍ କୃତଃ ସର୍ଗଃ ।

Digitized by srujanika@gmail.com

• ପ୍ରକୃତି ଅଚେତନ, ସୁତରାଂ ଅନ୍ଧ ସ୍ଥାନୀୟ; ପୁରୁଷ ଅକର୍ତ୍ତା, ସୁତରାଂ ପଙ୍ଗୁ ସ୍ଥାନୀୟ; ଉଭୟ ସଂଯୁକ୍ତ ହୋଇ ଜଣେ ଜଣକର ଅଭାବ ପୂରଣ କରେ ।

ଯେପରି ଅନ୍ଧ ଦେଖି ପାରେ ନାହିଁ ଏବଂ ଛୋଟା ଚାଲି ପାରେ ନାହିଁ, କିନ୍ତୁ ଅନ୍ଧ କାନ୍ଧରେ ଛୋଟା ବସିଲେ ଛୋଟା ରାସ୍ତା ଦେଖାଏ, ଅନ୍ଧ ତାକୁ କାନ୍ଧରେ ଧରି ଚାଲିଯାଏ, ସେହିପରି ପ୍ରକୃତି ଓ ପୁରୁଷର ସଂଯୋଗରେ ଏକର ଅଭାବ ଅନ୍ୟ ପୂରଣ କରେ; ତାହା ସଂଯୋଗ ଫଳରେ ସୃଷ୍ଟି ସାଧିତ ହୁଏ ।

ଏହି ପ୍ରକୃତି ଓ ପୁରୁଷ ଉଭୟାତ୍ମକ ବ୍ରହ୍ମ, କେବଳ ତନ୍ତ୍ରର ଶିବ ଶକ୍ତି ।

"ଶବରୂପୋ ମହାଦେବ ହୃଦୟୋ ପରିସଂସ୍ଥିତା"

ଶବରୂପ ମହାଦେବ କେବଳ ନିଷ୍କ୍ରିୟ ପରବ୍ରହ୍ମ, ତାହାଙ୍କୁ ଆଶ୍ରୟ କରି ବ୍ରହ୍ମଶକ୍ତି କ୍ରିୟାଶିଳା, ସେଥିପାଇଁ ମହାକାଳୀ, ତାସ୍ତ ପ୍ରଭୃତି ଶିବଙ୍କ ଉପରେ ଦଣ୍ଡାୟମାନ ହୋଇ ସଂସାର ସୃଷ୍ଟି ସ୍ଥିତି ଲୟ କାର୍ଯ୍ୟ ସମ୍ପନ୍ନ କରୁ ଅଛନ୍ତି ।

ମହାମନୀଷୀ ଶଙ୍କରାଚାର୍ଯ୍ୟ କହିଅଛନ୍ତି :—

"ଶିବଃ ଶକ୍ତ୍ୟାଯୁକ୍ତୋ ଯଦି ଭବତି ଶକ୍ତଃ ପ୍ରଭବିତୁମ୍ ।"

ଶିବ ଯଦି ଶକ୍ତିଯୁକ୍ତ ହୁଅନ୍ତି, ତାହା ହେଲେ ସଂସାର ନିର୍ମାଣାଦି କାର୍ଯ୍ୟ କରିବାକୁ ସମର୍ଥ ହୁଅନ୍ତି, ନଚେତ୍ ସେ କିଛି କରି ପାରନ୍ତି ନାହିଁ; ଯେହେତୁ ସେ ନିଷ୍କ୍ରିୟ ଓ ନିର୍ଗୁଣ, ବ୍ରହ୍ମ ନିର୍ଗୁଣ, ନିର୍ଗୁଣର ଉପାସନା ସମ୍ଭବ ହୁଏ ନାହିଁ । ଅତଏବ ଶକ୍ତି ସହିତ ତାହାଙ୍କର ଉପାସନା କରିବାକୁ ହୁଏ । ଅତଏବ ତାନ୍ତ୍ରିକମାନଙ୍କର ଶକ୍ତି ଉପାସନା ସଗୁଣ ବ୍ରହ୍ମର ଉପାସନା ମାତ୍ର ।

Digitized by srujanika@gmail.com

ଆଦ୍ୟାଶକ୍ତି ମହାମାୟା କେବଳ ସଗୁଣ ବ୍ରହ୍ମ, ଶବରୂପ ଶିବ ଅବଲମ୍ବନ ମାତ୍ର । ତାନ୍ତ୍ରିକ ସାଧକମାନେ ସଚ୍ଚିଦାନନ୍ଦମୟୀ ପରାଶକ୍ତି ଦେବୀଙ୍କୁ ପରଂବ୍ରହ୍ମରୂପିଣୀ ଜ୍ଞାନରେ ଉପାସନା କରନ୍ତି । ଶକ୍ତିର ଅବଲମ୍ବନ ପାଇଁ ଶବରୂପ ମହାଦେବଙ୍କୁ ସଂଯୁକ୍ତ କରି କାଳୀଙ୍କର ଉପାସନା କରୁଥାନ୍ତି । ଅତଏବ ତନ୍ତ୍ର ଶାସ୍ତ୍ର ମତରେ ପ୍ରକୃତି ପୁରୁଷାତ୍ମକ ଶିବଶକ୍ତି କେବଳ ପରଂବ୍ରହ୍ମ ଏବଂ ତାଙ୍କର ଉପାସନା କେବଳ ବ୍ରହ୍ମ ଉପାସନା । ମହତ୍ ତତ୍ତ୍ୱଠାରୁ ଆରମ୍ଭ କରି ମହାଭୂତ ପର୍ଯ୍ୟନ୍ତ ସମଗ୍ର ଜଗତ ପ୍ରକୃତିଠାରୁ ସୃଷ୍ଟି । ସମସ୍ତ କାରଣର କାରଣ ପରଂବ୍ରହ୍ମ କେବଳ ନିମିତ୍ତ ମାତ୍ର । ବ୍ରହ୍ମ ସତ୍ ସ୍ୱରୂପ ଏବଂ ସର୍ବବ୍ୟାପୀ; ସେ ସମଗ୍ର ଜଗତକୁ ଆବୃତ କରି ରହି ଅଛନ୍ତି । ସେ ସର୍ବଦା ଏକଭାବେ ଅବସ୍ଥିତ, ସେ ଚିନ୍ମୟ ସମସ୍ତ ପଦାର୍ଥରେ ନିର୍ଲିପ୍ତ । ସେ କିଛି କରନ୍ତି ନାହିଁ । ସେ ସତ୍ୟ ଓ ଜ୍ଞାନସ୍ୱରୂପ, ଆଦ୍ୟନ୍ତ ବର୍ଜିତ ଏବଂ ବାକ୍ୟ ଓ ମନର ଅଗୋଚର । ପ୍ରକୃତି ପରାତ୍ପରା ମହାଯୋଗିନୀ । ସେହି ପ୍ରକୃତି ସେହି ବ୍ରହ୍ମଙ୍କର ଇଚ୍ଛା ମାତ୍ର ଅବଲମ୍ବନ କରି ଏହି ଚରାଚର ଜଗତ୍ ସୃଜନ ପାଳନ ଓ ସଂହାର କରୁଥାନ୍ତି ।

ଏହି କଥା ମହାନିର୍ବାଣ ତନ୍ତ୍ରର ଚତୁର୍ଥ ଉଲ୍ଲାସରେ ଲେଖି ଅଛନ୍ତି :—

ଶୃଣୁ ଦେବି ମହାଭାଗେ ତବାରାଧନ-କାରଣମ୍
ତବ ସାଧନତୋ ଯେନ ବ୍ରହ୍ମସାଯୁଜ୍ୟମଶ୍ନୁତେ ।
ତ୍ୱଂ ପରା ପ୍ରକୃତିଃ ସାକ୍ଷାତ୍ ବ୍ରହ୍ମଣଃ ପରମାତ୍ମନଃ
ତ୍ୱତ୍ତୋ ଜାତଂ ଜଗତ୍ ସର୍ବଂ ତ୍ୱଂ ଜଗତ୍ ଜନନୀ ଶିବେ ।
ମହଦାଦ୍ୟଣୁ ପର୍ଯ୍ୟନ୍ତଂ ଯଦେତତ୍ ସଚରାଚରମ୍
ତ୍ୱୟୈବୋତ୍ପାଦିତଂ ଭଦ୍ରେ । ତ୍ୱଦଧୀନମିଦଂ ଜଗତ୍ ।

Digitized by srujanika@gmail.com

ତ୍ୱମାଦ୍ୟା ସର୍ବଭୂତାନାମସ୍ମାକମପି ଜନ୍ମଭୂଃ
ତ୍ୱଂ ଜାନାସି ଜଗତ୍ ସର୍ବଂ ନ ତ୍ୱାଂ ଜାନାତିକଶ୍ଚନ ।

ଏହି ମହାଶକ୍ତି ପ୍ରକୃତି, ବିଦ୍ୟା ଓ ଅବିଦ୍ୟାରୂପରେ ମୁକ୍ତି ଏବଂ ବନ୍ଧନର କାରଣ ହୋଇଥାଏ । ଏହି ବିଷୟରେ ସାଂଖ୍ୟ ସୂତ୍ରରେ କହି ଅଛନ୍ତି :—

ରୂପୈଃ ସପ୍ତଭିରେବତୁବଧ୍ନାତି ଅତ୍ମାନମାତ୍ମନା ପ୍ରକୃତିଃ
ସୈବ ଚ ପୁରୁଷାର୍ଥଂ ପ୍ରତି ବିମୋଚୟତ୍ୟେକ ରୂପେଣ ।

ଚଣ୍ଡୀରେ କହି ଅଛନ୍ତି :—

ନିତ୍ୟୈବ ସା ଜଗନ୍ମୂର୍ତ୍ତି ସ୍ତୟା ସଂମୋହ୍ୟତେ ଜଗତ୍
ସୈବ ପ୍ରସନ୍ନା ବରଦା ନୃଣାଂ ଭବତି ମୁକ୍ତୟେ ।
ସା ବିଦ୍ୟା ପରମମୁକ୍ତେ ର୍ହେତୁଭୂତା ସନାତନୀ
ସଂସାର-ବନ୍ଧ ହେତୁଶ୍ଚ ସୈବ ସର୍ବେଶ୍ୱରେଶ୍ୱରୀ ।

ସେହି ମୂଳ ପ୍ରକୃତି, ମହାଶକ୍ତି, ନିତ୍ୟା । ସେହି ଜଗନ୍ମୂର୍ତ୍ତି ଏବଂ ସେ ସମସ୍ତ ଜଗତ୍ ମୁଗ୍ଧ କରି ରଖି ଅଛନ୍ତି । ସେ ପ୍ରସନ୍ନା ହେଲେ, ମନୁଷ୍ୟମାନଙ୍କୁ ସଂସାର ବନ୍ଧନରୁ ମୁକ୍ତ କରେଇ ପାରନ୍ତି । ସେ ବିଦ୍ୟା, ସନାତନୀ ଓ ସମସ୍ତଙ୍କର ଈଶ୍ୱରୀ ଏବଂ ମୁକ୍ତି ଓ ବନ୍ଧନର ହେତୁ ଅଟନ୍ତି ।

---

Digitized by srujanika@gmail.com

# 'ଭୂ' ଭ୍ରମଣ, ଗ୍ରହଣ ଓ ପରାଗ

କେତେକ ଆଧୁନିକ ଶିକ୍ଷିତମାନଙ୍କର ବିଶ୍ୱାସ ଯେ, ଭାରତୀୟ ଆର୍ଯ୍ୟଗଣ ଭୂଗୋଳ, ପଦାର୍ଥବିଦ୍ୟା, ଓ 'ରସାୟନାଦି ବିଦ୍ୟା' କିଛିହେଲେ ଜାଣି ନ ଥିଲେ, କିନ୍ତୁ ଆମ୍ଭମାନଙ୍କର ବେଦଶାସ୍ତ୍ରରେ ତାହା ଲୁକ୍‌କାୟିତ ଭାବରେ ରହିଅଛି । ବର୍ତ୍ତମାନ୍ ପୃଥିବୀର ଗୋଲତ୍ୱ ବିଷୟରେ କେତେକ ପ୍ରମାଣ ଦିଆ ଯାଉଅଛି ।

ଚନ୍ଦ୍ର ଗ୍ରହଣ ସମୟରେ ପୃଥିବୀର ଛାୟା ଚନ୍ଦ୍ରଙ୍କଠାରେ ସଂକ୍ରମିତ ହୋଇ ଚନ୍ଦ୍ରଙ୍କୁ ଆଚ୍ଛାଦନ କରେ, ଏହା ହେଉଅଛି ଗ୍ରହଣ ପଦବାଚ୍ୟ । ଏହି ବିଷୟଟି ଭାରତୀୟ ଆର୍ଯ୍ୟ ଜ୍ୟୋତିର୍ବିଦ୍-ଗଣ ବିଶେଷଭାବେ ବୁଝିପାରିଥିଲେ ।

କେହି କେହି କହନ୍ତି ଯେ, ରାହୁ ଓ କେତୁ ଗ୍ରହ, ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ଗ୍ରହଣ କରନ୍ତି । ସେହିହେତୁ ପୂର୍ଣ୍ଣିମା ତିଥିରେ ଚନ୍ଦ୍ର ଗ୍ରହଣ ଓ ଅମାବାସ୍ୟା ତିଥିରେ ସୂର୍ଯ୍ୟଗ୍ରହଣ ବା ପରାଗ ହୁଏ । ପୁଣି ସେମାନେ କହନ୍ତି ଯେ, ଏହି ଦୁଇ ଗ୍ରହ ଅସୁର ବିଶେଷ । ଋଷିମାନେ କହି ଅଛନ୍ତି ଯେ, ପୃଥିବୀର ଛାୟା ରାହୁ ଓ କେତୁ ନାମରେ ଖ୍ୟାତ ହୋଇଅଛି । ଚନ୍ଦ୍ର ଗ୍ରହଣ ସମୟରେ ପୃଥିବୀର ଛାୟା ଚନ୍ଦ୍ରଙ୍କଠାରେ ପତିତ ହୁଏ, ସୂର୍ଯ୍ୟ ଗ୍ରହଣ ବା ପରାଗ ସମୟରେ ଚନ୍ଦ୍ରଙ୍କ ଛାୟା ସୂର୍ଯ୍ୟଙ୍କଠାରେ ପତିତ ହୁଏ, ଏହା ହେଉଅଛି ରାହୁ କେତୁଙ୍କର ଗ୍ରାସ ବା ଗ୍ରହଣ ପଦବାଚ୍ୟ ।

ପୂର୍ବାଚାର୍ଯ୍ୟମାନେ ରାହୁ ଓ କେତୁଙ୍କୁ ଛାୟା ଅର୍ଥାତ୍ ତମଃ ବୋଲି ନିର୍ଦ୍ଦେଶ କରି ଅଛନ୍ତି । ଏହି ତମଃ ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ଆଚ୍ଛାଦନ କଲେ ଚନ୍ଦ୍ର ଓ ସୂର୍ଯ୍ୟଙ୍କର ଗ୍ରହଣ ବୋଲି ଧରାଯାଏ । ଚନ୍ଦ୍ରଗ୍ରହଣ ସମୟରେ ପୃଥିବୀର ଛାୟା ବକ୍ର ଭାବରେ (ନିମ୍ନରୁ ଊର୍ଦ୍ଧ୍ୱକୁ)

Digitized by srujanika@gmail.com

ଚନ୍ଦ୍ରଙ୍କୁ ଅତିକ୍ରମଣ କରେ । ସୂର୍ଯ୍ୟ ଗ୍ରହଣ ସମୟରେ ଚନ୍ଦ୍ରଙ୍କର ଛାୟା ବକ୍ର ଭାବରେ ସୂର୍ଯ୍ୟଙ୍କୁ ଅତିକ୍ରମଣ କରେ ।

ପୌରାଣିକ ଉକ୍ତି ସହିତ ଏହି ଉକ୍ତିର ସାମଞ୍ଜସ୍ୟ ଦେଖିବାକୁ ମିଳେ ।

ବ୍ରହ୍ମପୁରାଣ ପାଠକଲେ ଏହା ଜଣାଯାଏ ଯେ, କେତୁ ନାରାୟଣଙ୍କ କର୍ତ୍ତୃକ ଏପରି ଅଭିଶପ୍ତ ହେଲେ ଯେ, ଚନ୍ଦ୍ର ଗ୍ରହଣ ସମୟରେ ପୃଥିବୀର ଛାୟାଗାମୀ ହୋଇ ସେ ଚନ୍ଦ୍ରଙ୍କୁ ଏବଂ ସୂର୍ଯ୍ୟ ଗ୍ରହଣ ସମୟରେ ଚନ୍ଦ୍ରର ଛାୟାଗାମୀ ହୋଇ ସୂର୍ଯ୍ୟଙ୍କୁ ଆଚ୍ଛାଦନ କରୁଥିବ । ଅନ୍ୟମଧ୍ୟ ସୂର୍ଯ୍ୟ ସିଦ୍ଧାନ୍ତ, କାବ୍ୟ, ଅମର କୋଷ ପ୍ରଭୃତିରେ ଏହି ଉକ୍ତିର ସାମଞ୍ଜସ୍ୟ ଦେଖିବାକୁ ମିଳେ । ଯଥା—

"ପୂର୍ବ କାଲେତୁ ସଂପ୍ରାପ୍ତେ ଚନ୍ଦ୍ରାର୍କୌ ଛାଦୟିଷ୍ୟସି
ଭୂମିଚ୍ଛାୟାଗତଶ୍ଚନ୍ଦ୍ରଂ ଚନ୍ଦ୍ରଗୋଽର୍କଂ କଦାଚନ ।" ସୂର୍ଯ୍ୟସିଦ୍ଧାନ୍ତ ।

ଅବୈମି ଚୈନାମନଘେତି କିନ୍ତୁ ଲୋକାପବାଦୋ
ବଲବାନ୍ମତୋମେ,
ଛାୟାହି ଭୂମେଃ ଶଶିନୋ ମଲତ୍ୱେ ନା ରୋପିତା
ଶୁଦ୍ଧିମତଃ ପ୍ରଜାଭିଃ । ରଘୁ ।

ତମସ୍ତୁ ରାହୁଃସ୍ୱର୍ଭାନୁଃ ସୈଂହିକେୟୋ ବିଧୁନ୍ତୁଦଃ । ଅମରକୋଷ ।

ପୌରାଣିକମାନଙ୍କର ମତ ଯେ, ରାହୁ ନାରାୟଣଙ୍କ କର୍ତ୍ତୃକ ଦ୍ୱିଖଣ୍ଡିତ ହୋଇ ଶିରୋଭାଗର ନାମ ରାହୁ ଓ କବନ୍ଧ ଭାଗର ନାମ କେତୁ । ରାହୁ ଓ କେତୁ ଉଭୟ ଏକପଦାର୍ଥ ।

ଏହା ବର୍ତ୍ତମାନ ଜାଣିମା ଉଚିତ ଯେ, ପୃଥିବୀର ଛାୟା ଓ ଚନ୍ଦ୍ରଙ୍କର ଛାୟା କିପ୍ରକାର ଯଥାକ୍ରମେ ଚନ୍ଦ୍ର ଓ ସୂର୍ଯ୍ୟଙ୍କ ଉପରେ ପତିତ ହୁଏ । ଚନ୍ଦ୍ରଗ୍ରହଣ ସମୟରେ ପୃଥିବୀ, ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ମଧ୍ୟରେ ରହେ । ସୁତରାଂ ପୃଥିବୀକୁ ସୂର୍ଯ୍ୟଙ୍କ ଅଧୋଭାଗେ ଅବସ୍ଥାନ କରିବାକୁ

Digitized by srujanika@gmail.com

ହୁଏ । ଚନ୍ଦ୍ର ପୃଥିବୀରେ କ୍ରମଶଃ ଉର୍ଦ୍ଧ୍ବମଧ୍ୟବର୍ତ୍ତୀ ହୋଇ ଅବସ୍ଥିତ କରେ ଅର୍ଥାତ୍ ଏହି ତିନିଟିରୁ କେହି ହେଲେ ସମ ସୂତ୍ରପାତ ତ୍ୟାଗ କରନ୍ତି ନାହିଁ ସୁତରାଂ ଚନ୍ଦ୍ରଗ୍ରହଣ ସମୟରେ ଭୂମିର ଛାୟା ନିମ୍ନରୁ ଊର୍ଦ୍ଧ୍ୱକୁ ପ୍ରବେଶ କରେ; ଏତଦ୍ଦ୍ୱାରା ଚନ୍ଦ୍ର ଆଚ୍ଛାଦିତ ହୁଏ । ଏହି ଅଚ୍ଛାଦନକୁ ଗ୍ରାସ ଶବ୍ଦରେ ନିର୍ଦ୍ଦେଶ କରାଯାଏ ।

କେହି କେହି କହନ୍ତି ଅବନୀମଣ୍ଡଳ ହ୍ରଦ, ନଦୀ, ବନ, ଉପବନ, ପର୍ବତ, ସାଗର ପ୍ରଭୃତି ଦ୍ୱାରା ଅସମତଳ ହୋଇ ରହିଅଛି । ତାହା ହେଲେ ଏହା କି ପ୍ରକାର ସର୍ବତୋଭାବେ ଗୋଲ ହୋଇପାରେ ? ଏହାର ପ୍ରମାଣ ପାଇଁ ଜ୍ୟୋତିର୍ବିଦ୍ ପଣ୍ଡିତମାନେ କହିଅଛନ୍ତି ଯେ, କଦମ୍ବ ପୁଷ୍ପ ଯେପରି ଅସଂଖ୍ୟ କ୍ଷୁଦ୍ର ଓ ବୃହତ୍ କେଶର ଦ୍ୱାରା ପରିବୃତ ଓ ମଧ୍ୟରେ ଆବୃତ ଶୂନ୍ୟ ହେଲେ ମଧ୍ୟ ସଂପୂର୍ଣ୍ଣ ଗୋଲ ବ୍ୟତୀତ ଅନ୍ୟ କୌଣସି ଆକାର ବୋଧ ହୁଏ ନାହିଁ, ସେହିପରି ଅବନୀମଣ୍ଡଳ ଅସଂଖ୍ୟ ପର୍ବତ, ସମୁଦ୍ର, ଅରଣ୍ୟ ଓ ଗଡ଼ି ଦ୍ୱାରା ପରିବେଷ୍ଟିତ ହେଲେ ମଧ୍ୟ ସର୍ବତୋ ଭାବେ ଗୋଲାକାର । ଯଥା—

ଛାଦକୋ ଭାସ୍କରସ୍ୟେନ୍ଦୁରଧସ୍ଥଃ ଘନବତ୍ ଭବେତ୍,
ଭୂଚ୍ଛାୟା ପ୍ରାଙ୍ମୁଖଶ୍ଚନ୍ଦ୍ରୋ ବିଶତ୍ୟର୍ଥୋ ଭବେଦସୌ ।

ସୂର୍ଯ୍ୟସିଦ୍ଧାନ୍ତ

ସର୍ବତଃ ପର୍ବତାରାମ ଗ୍ରାମଚୈତ୍ୟଚୟୈଶ୍ଚିତଃ,
କଦମ୍ବ କୁସୁମାକାରଃ କେଶର ପ୍ରକରୈରିବ ॥

ଜ୍ୟୋତିର୍ମତେ ଗ୍ରହଣ ସ୍ୱରୂପଂ ରାହୁଃ ପୃଥିବୀଚ୍ଛାୟାଂସମାଶ୍ରିତ୍ୟ ଚନ୍ଦ୍ରଂ, ଚନ୍ଦ୍ରମାଶ୍ରିତ୍ୟ ରବିଂ, ଯଦାଚ୍ଛାଦୟତି ତଦ୍ ଗ୍ରାସାଖ୍ୟଂ, କିନ୍ତୁ ରବିଚନ୍ଦ୍ରୟୋଃ ନଗତ ବେଧକ ସ୍ୱରୂପୋ ଗ୍ରାସଃ । ଜ୍ୟୋତିଷେ

Digitized by srujanika@gmail.com

• କେହି କେହି ପୃଥିବୀର ଗୋଲତ୍ୱ ବିଷୟରେ ସ୍ୱୀକାର କରି ପୁଣି ପୃଥିବୀର ଉତ୍ତର ଦକ୍ଷିଣରେ ଯେ, କଞ୍ଚିତ୍ ଗୃପ୍ୟ, ସେ ବିଷୟରେ ପୂର୍ବାଗ୍ରହୀମାନେ କିଛି ସ୍ଥିର କରି ପାରି ନାହାନ୍ତି ବୋଲି ଭ୍ରମରେ ପଡ଼ିଥାନ୍ତି । ଏ ବିଷୟରେ ପ୍ରମାଣ ପାଇଁ ଜ୍ୟୋତିର୍ବିଦ୍ ପଣ୍ଡିତମାନେ କହିଅଛନ୍ତି ଯେ, ପୃଥିବୀର ଉତ୍ତର ଓ ଦକ୍ଷିଣ ପ୍ରାନ୍ତ କପିତ୍ଥ ଫଳ ତୁଲ୍ୟ, ଅର୍ଥାତ୍ କପିତ୍ଥ ଫଳ ଯେପରି ବୃନ୍ତର ନିମ୍ନରେ ଓ ଫଳର ଅଧୋଭାଗରେ ନାଭି ବିଶିଷ୍ଟ, ପୃଥିବୀ ମଧ୍ୟ ସେହିପରି ଉତ୍ତର ଓ ଦକ୍ଷିଣ ପ୍ରାନ୍ତରେ କଞ୍ଚିତ୍ ନିମ୍ନତଳ । ଏ ବିଷୟରେ ପ୍ରମାଣ ଯଥା:—

"କପିତ୍ଥ ଫଳବତ୍ ବିଶ୍ୱଂ ଦକ୍ଷିଣୋତ୍ତରୟୋଃ ସମମ୍ ।"

ନାକ୍ଷନାଦୀକେଲ୍ୟେ ।

ଭାରତୀୟ ଆର୍ଯ୍ୟଗଣ ପ୍ରଥମେ ଅହୋରାତ୍ର, ପକ୍ଷ, ମାସ, ଋତୁ, ଅୟନ, ବର୍ଷ, ଯୁଗ, ଯୁଗାନ୍ତର, କଳ୍ପ, ସୃଷ୍ଟି, ସ୍ଥିତି ଓ ପ୍ରଳୟାଦିର କାରଣ ନିର୍ଣ୍ଣୟ କରିବାକୁ ସମର୍ଥ ଥିଲେ ଏବଂ ଉତ୍ତରାୟଣ ଓ ଦକ୍ଷିଣାୟନ ହେତୁ ଶୀତ ଓ ଆତପର ଯେ ପରିବର୍ତ୍ତନ ହୁଏ, ଏହା ମଧ୍ୟ ଜାଣିଥିଲେ । ବର୍ତ୍ତମାନ ଅୟନ ଶବ୍ଦର ଅର୍ଥ ବୁଝା ଯାଉ । ଅୟନ ଅର୍ଥାତ୍ ଗତି, ଉତ୍ତର ଦିଗରେ ଅୟନ (ଗତି) ଉତ୍ତରାୟଣ, ଦକ୍ଷିଣ ଦିଗରେ ଅୟନ (ଗତି) ଦକ୍ଷିଣାୟନ । କାହାର ଅୟନ ବୁଝିବାକୁ ହେବ ? ପୃଥିବୀର । ପୃଥିବୀ ସୂର୍ଯ୍ୟଙ୍କର ପୁରୋଭାଗେ ପ୍ରତ୍ୟହ ପଶ୍ଚିମରୁ ପୂର୍ବାଭିମୁଖେ ଆବର୍ତ୍ତନ କରେ । ଏହି ଆବର୍ତ୍ତନ ସମୟରେ ପୃଥିବୀ ନିଜ ମେରୁଦଣ୍ଡ ଉପରେ ଅବସ୍ଥାନ ପୂର୍ବକ ସର୍ବଦା ମେରୁକୁ ଦକ୍ଷିଣ ଦିଗକୁ ରଖି ପର୍ଯ୍ୟାୟ କ୍ରମେ କୁଞ୍ଚିତ ଅବନତ ଭାବେ ଈଷଦ୍ ବକ୍ର ଗତିରେ ତିନିଶହ ପଞ୍ଚଷଷ୍ଠି ଦିନରେ ସୂର୍ଯ୍ୟଙ୍କୁ ଥରେ ପ୍ରଦକ୍ଷିଣ କରେ । ଯଥା—



Digitized by srujanika@gmail.com

"ମେରୁଂ ପ୍ରଦକ୍ଷିଣୀ କୁର୍ବନ୍ତ ସୂର୍ଯ୍ୟଂ ଯେ ଯତ୍ର ପଶ୍ୟନ୍ତି ସ୍ମ ଚ ତେଷାଂ ପ୍ରାଚୀ, ତେଷାଂ ଚ ବାମଭାଗେ ଏବ ମେରୁଃ । ଅତଃ ସର୍ବେଷାଂ ସର୍ବଦା ମେରୁରୁତ୍ତରତଃ ଏବ ଦକ୍ଷିଣଭାଗେ ଲୋକାଲୋକ ଚଳଃ, ତସ୍ମାତ୍ ଉତ୍ତରସ୍ୟାଂ ଦଶି ସଦାରାତ୍ରିଃ, ଦକ୍ଷିଣସ୍ୟାଂ ଚ ସଦା ଦିନମ୍ ।" ଜ୍ୟୋତିଃ ଶାସ୍ତ୍ରେ ।

ଦିବସସ୍ୟ ରବର୍ମଧ୍ୟେ ସର୍ବକାଳଂ ବ୍ୟବସ୍ଥିତଃ,
ସର୍ବଦ୍ୱୀପେଷୁ ମୈତ୍ରେୟ୍ ନିଶାର୍ଦ୍ଧସ୍ୟ ଚ ସମ୍ମୁଖଃ ।
ଉଦୟାସ୍ତମନେ ଚୈବ ସର୍ବକାଳସ୍ତୁ ସମ୍ମୁଖେ,
ଦିଶାସ୍ୱଶେଷାସୁ ତଥା ମୈତ୍ରେୟ୍ ବିଦିଶାସୁ ଚ ॥

"ଯୈ ର୍ଯତ୍ର ଦୃଶ୍ୟତେ ଭାସ୍ୱାନ୍ ସ ତେଷାମୁଦୟଃ ସ୍ମୃତଃ
ତିରୋଭାବଞ୍ଚ ଯତ୍ରୈତି ତତ୍ରୈବାସ୍ତମୟଂ ରବେଃ ।
ନୈବାସ୍ତମନମର୍କସ୍ୟ ନୋଦୟଃ ସର୍ବଦା ସ୍ୱତଃ
ଉଦୟାସ୍ତମନାଖ୍ୟୋହି ଦର୍ଶନାଦର୍ଶନ ରବେଃ ।" ବିଷ୍ଣୁ ପୁରାଣ

ପୃଥିବୀର ଏହି ବାର୍ଷିକ ଗତିଦ୍ୱାରା ମନୁଷ୍ୟମାନଙ୍କର ଏକ ବର୍ଷ ହୁଏ । ବର୍ଷ ମଧ୍ୟରେ ଏହି ଦୁଇଟି ଅୟନ ଅଛି । ଦକ୍ଷିଣାୟନରେ ବିଷୁବ ରେଖାର ଉତ୍ତର ଦିଗସ୍ଥ ଭୂଭାଗରେ ଦିବାମାନର ହ୍ରାସ । ରାତ୍ରିମାନର ବୃଦ୍ଧି ଓ ଉତ୍ତରାୟଣରେ ଦିବାମାନର ବୃଦ୍ଧି ଓ ରାତ୍ରିମାନର ହ୍ରାସ ହୋଇଥାଏ । ଏହିପରି ଏକ ବର୍ଷରେ ଦୁଇଦିନ ସମ ଦିବାରାତ୍ର ହୁଏ । ଉତ୍ତରାୟଣ ଦେବତାମାନଙ୍କର ଦିନ ଓ ଦକ୍ଷିଣାୟନ ସେମାନଙ୍କର ରାତ୍ରି ।

ପ୍ରମାଣ

"ଦୈବେ ରାତ୍ର୍ୟହନୀବର୍ଷଂ ପ୍ରବିଭାଗସ୍ତୟୋଃପୁନଃ
ଅହସ୍ତତ୍ରୋଦଗୟନଂ ରାତ୍ରିଃସ୍ୟାଦ୍ ଦକ୍ଷିଣାୟନମ୍ ।"

ମନୁଃ—

Digitized by srujanika@gmail.com

ଦେବ ଓ ଋଷିଗଣ ସୁମେରୁରେ ବାସ କରନ୍ତି । ପୃଥିବୀର ଉତ୍ତର ପ୍ରାନ୍ତ ସୁମେରୁ, ଦକ୍ଷିଣ ପ୍ରାନ୍ତ କୁମେରୁ ନାମରେ ଖ୍ୟାତ । ଉତ୍ତରାୟଣରେ ପୃଥିବୀର ଉତ୍ତରାଂଶ ଅର୍ଥାତ୍ ଉତ୍ତରମେରୁ ଆଲୋକମୟ ହୋଇଥାଏ । ସେହି ସମୟରେ ଦକ୍ଷିଣ ପ୍ରାନ୍ତ ଅନ୍ଧ ତମସାଚ୍ଛନ୍ନ ହୋଇଥାଏ । ଏହାପରେ ଦକ୍ଷିଣାୟନରେ ପୃଥିବୀର ଦକ୍ଷିଣ ପ୍ରାନ୍ତ ଆଲୋକିତ ହୁଏ । ଅତଏବ ଏହା ଏକପ୍ରକାର ସ୍ଥିର ସିଦ୍ଧାନ୍ତ ଯେ, ପୃଥିବୀର ଉତ୍ତର ଓ ଦକ୍ଷିଣ ପ୍ରାନ୍ତରେ ଛଅମାସ ଦିନ ଓ ଛଅମାସ ରାତି ହୁଏ । ସୁତରାଂ ଏଥିରୁ ସ୍ପଷ୍ଟ ଜଣା ଯାଉଅଛି ଯେ, ପୃଥିବୀର ଦକ୍ଷିଣ ଓ ଉତ୍ତର ପ୍ରାନ୍ତ କିଞ୍ଚିତ୍ ଚାପ୍ୟ । ନ ହେଲେ ବର୍ଷକୁ ରାତି ଓ ଦିନରେ କାହିଁକି ବିଭକ୍ତ କରିଥାନ୍ତେ; ପୁଣି ସୂର୍ଯ୍ୟଙ୍କର ଉଦୟ ଓ ଅସ୍ତ ନାହିଁ । ଯେଉଁ ସ୍ଥାନରେ ଯେତେବେଳେ ସୂର୍ଯ୍ୟ ପ୍ରଥମେ ଦୃଷ୍ଟିଗୋଚର ହୁଅନ୍ତି, ସେହି ସମୟକୁ ଉଦୟ ଓ ଯେଉଁ ସ୍ଥାନରେ ଯେତେବେଳେ ସୂର୍ଯ୍ୟ ଦୃଷ୍ଟିଗୋଚର ନ ହୁଅନ୍ତି, ସେହି ସମୟକୁ ଅସ୍ତ ଧରନ୍ତି । ମହର୍ଷିଗଣ, ଏହି ରୂପରେ ପୃଥିବୀର ଆକାର, ପ୍ରକୃତି, ଗତି, ମାଧ୍ୟାକର୍ଷଣାଦିର ନିୟମ ନିର୍ଦ୍ଧାରଣ କରି ଅଛନ୍ତି ।

କେତେକ ପୂର୍ବାଚାର୍ଯ୍ୟଙ୍କ ମତରେ ପୃଥିବୀ ନିଶ୍ଚଳା । ତଦନୁସାରେ ପୃଥିବୀର ନାମ ଅଚଳା, ସ୍ଥିର ହୋଇଅଛି ।

ସୂର୍ଯ୍ୟ ସଚଳ ପଦାର୍ଥ, ବ୍ୟୁତ୍ପତ୍ତିଲଭ୍ୟ ଅର୍ଥ ଦ୍ୱାରା ଏହା ବୁଝାଯାଏ ଯେ, ଯେ ସରେ ଅର୍ଥାତ୍ ଗମନ କରେ ସେ ସୂର୍ଯ୍ୟ "ସରତୀତି ସୂର୍ଯ୍ୟଃ ।" କିନ୍ତୁ ଭାରତୀୟ ବଶିଷ୍ଠ ଆର୍ଯ୍ୟଗଣଙ୍କ ମତରେ ପୃଥିବୀ ଚଳା । ସୂର୍ଯ୍ୟ ନିଶ୍ଚଳ । ଅଧିକାଂଶ ଜ୍ୟୋତିର୍ବିଦ୍‌ଗଣ ଏହି ମତର ସପକ୍ଷ । ବିପକ୍ଷମାନେ ଏହି ଆପତ୍ତି କରନ୍ତି ଯଦି ପୃଥିବୀ ସଚଳା ତେବେ ପ୍ରାଣୀମାନେ କାହିଁକି ପଡ଼ିଯାଉ ନାହାନ୍ତି ଏବଂ କି

Digitized by srujanika@gmail.com

କାରଣରୁ ବା ସୂର୍ଯ୍ୟଙ୍କ ପୂର୍ବଦିଗରେ ଉଦିତ ଓ ପଶ୍ଚିମ ଦିଗରେ ଅସ୍ତମିତ ହେବାର ଦେଖା ଯାଉଅଛି । ତାହାର ଉତ୍ତର ନିମ୍ନରେ ଦିଆଗଲା—

ମନୁଷ୍ୟଗଣ ଯେତେବେଳେ ଅତି ଦ୍ରୁତଗାମୀ ନୌକାରୋହଣ ପୂର୍ବ୍ବକ ନଦୀରେ ଭ୍ରମଣ କରନ୍ତି, ସେତେବେଳେ ସେ ସ୍ୱକୀୟ ଗମନ ଲକ୍ଷ୍ୟକରି ପାରନ୍ତି ନାହିଁ ଏବଂ ତାହାର ସମ୍ମୁଖସ୍ଥ ଓ ପାର୍ଶ୍ୱସ୍ଥ ବୃକ୍ଷଶ୍ରେଣୀ ଓ ତଟଭାଗକୁ ଅତିଦ୍ରୁତ ବେଗରେ ପଶ୍ଚାତ୍‌ବର୍ତ୍ତୀଭାବେ ଦେଖନ୍ତି ।

ବାସ୍ତବିକ୍ ନୌକାର ଗତିଦ୍ୱାରା ଆରୋହୀର ଗତି ହୁଏ ନାହିଁ । ଗତିଶୀଳ ନୌକାରେ ଅବସ୍ଥାନ କରି ଆରୋହୀ ତଟସ୍ଥିତ ନିଶ୍ଚଳ ବୃକ୍ଷମାନଙ୍କୁ ଦ୍ରୁତ ଗତିରେ ପଶ୍ଚାତ୍ ଭାଗକୁ ଧାବମାନ ହେଉଥିବାର ଦେଖେ । ଏହା ତାହାର ଭ୍ରମାତ୍ମକ ନିରୀକ୍ଷଣର କାରଣ । ସେହି କାରଣରୁ ଭ୍ରାମ୍ୟମାଣ ପୃଥିବୀ ପୃଷ୍ଠରେ ବାସକରି ଆମ୍ଭେ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ସୂର୍ଯ୍ୟଙ୍କର ଗତିଦ୍ୱାରା ହୁଏ ବୋଲି ବିଶ୍ୱାସ କରୁଁ । ମାତ୍ର ତାହା ଭ୍ରମାତ୍ମକ । ବାସ୍ତବିକ୍ ପୃଥିବୀର ଗତିଦ୍ୱାରା ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ହୁଏ ।

ଏ ବିଷୟରେ ଆର୍ଯ୍ୟ ଭଟ୍ଟ କହି ଅଛନ୍ତି, "ଚଳା ପୃଥିବୀ ସ୍ଥିରାଭାତି ।" ଉପଞ୍ଜରଃ ସ୍ଥିରୋ ଭୂରେବାବୃତ୍ୟାବୃତ୍ୟ ପ୍ରାତି ଦୈବସିକୌ ଉଦୟାସ୍ତମୟୌ ସମ୍ପାଦୟତି ନକ୍ଷତ୍ରଗ୍ରହାଣାମ୍ ।

ନୌସ୍ଥୋ ବିଲୋମ ଗମନାଦଚଳଂ ଯଥା ନ
ଗୃହ୍ନାତ୍ୟଚେ ଚଳତନୈବ ନିଜଭ୍ରମେଣ ।
'ଲଙ୍କା ସମାପରିଗତ ପ୍ରଚଳତ୍ ଉଚକ୍ର-
ମାଭାତ ସୃଷ୍ଟିରିମପୀତି ବଦନ୍ତି କେଚିତ୍ । ଶ୍ରୀପତିଃ—

Digitized by srujanika@gmail.com

୬। ପ୍ରାଚୀନ ଆର୍ଯ୍ୟଗଣ ପୃଥିବୀର ଓ ଗ୍ରହନକ୍ଷତ୍ରାଦି ମାନଙ୍କର ମାଧ୍ୟାକର୍ଷଣ ଶକ୍ତିକୁ ମଧ୍ୟ ସ୍ୱୀକାର କରିଅଛନ୍ତି । ଏ ବିଷୟରେ ଭାସ୍କରାଚାର୍ଯ୍ୟ କହି ଅଛନ୍ତି—

ଗୋଲାଧ୍ୟାୟ ୬ଷ୍ଠ ଶ୍ଳୋକ—

ଆକୃଷ୍ଟ ଶକ୍ତିଶ୍ଚ ମହୀ ତୟା ଯତ୍
ଖାସ୍ଥଂଗୁରୁ ସ୍ୱାଭିମୁଖଂ ସ୍ୱଶକ୍ତ୍ୟା ।
ଆକୃଷ୍ୟତେ ତତ୍ପତତୀବ ଭାତି
ସମେ ସମନ୍ତାତ୍ କ୍ୱ ପତତ୍ୱିୟଂ ଖେ ।
ଭୂଗୋଲଂ ବ୍ୟୋମ୍ନି ତିଷ୍ଠତି ।

ସୂର୍ଯ୍ୟ ସିଦ୍ଧାନ୍ତ କୃତ ଗୋଳାଧ୍ୟାୟଃ, ୬ଷ୍ଠ ଶ୍ଳୋକ—

ଭାରତୀୟ ଆର୍ଯ୍ୟଗଣ ଆହ୍ନିକକୃତ୍ୟ ଓ ସାଂସାରିକ ବ୍ୟାପାରର ଶୁଭାଶୁଭ ନିର୍ଣ୍ଣୟ ଉପଲକ୍ଷେ ଚାରିପ୍ରକାର ମାସ ଗଣନା କରନ୍ତି । ସୌର ମାସ, ଚାନ୍ଦ୍ର ମାସ, ନାକ୍ଷତ୍ର ମାସ ଓ ସାବନ ମାସ । ଚତୁର୍ବିଧ ମାସ ମଧ୍ୟରେ ସୌର ମାସ ମେଷାଦି ଦ୍ୱାଦଶ ରାଶିଠାରୁ ବିଭକ୍ତ ହୋଇଅଛି । ସପାଦ ଦୁଇ ନକ୍ଷତ୍ରର ଭୋଗ ଫଳଦ୍ୱାରା ଗୋଟିଏ ଗୋଟିଏ ରାଶି ନିର୍ଦ୍ଧାରିତ ହୁଏ । ଚାନ୍ଦ୍ରମାସ ଅପେକ୍ଷା ସୌର ମାସ ବର୍ଷ ମଧ୍ୟରେ ବାର ଦିନ ଅଧିକ । ଏହି ଆଧିକ୍ୟ ଦୋଷ ପରିହାର ପାଇଁ ପ୍ରତି ବ ୨୮ ମାସରେ ଏକମାସ ପରିତ୍ୟାଗ କରି ଯାଇଅଛି । ଏହି ପରିତ୍ୟାଗ ମାସକୁ ମଳ ମାସ କୁହାଯାଏ ।

ମଳମାସ କାରଣନ୍ତୁ ଜ୍ୟୋତିଷେ—

ଦ୍ୱିବସସ୍ୟ ହରତ୍ୟର୍କଃ ଷଷ୍ଟିଭାଗ ମୃତୌତତଃ ।

ଦୈବ ଓ ପୈତ୍ରାଦି କୌଣସି କାର୍ଯ୍ୟରେ ମଳ ମାସ ପବିତ୍ର ବୋଲି ଧରାଯାଏ ନାହିଁ । ସୌର ମାସ, ସାବନ ମାସ ଅପେକ୍ଷା

Digitized by srujanika@gmail.com

୫ ଦିନ ୧୫ ଦଣ୍ଡ ଅଧିକ । ସୁତରାଂ ଦିନଗଣନାରେ ସାବନ ମାସ ଗଣନା କରାଯାଏ । ଅଶ୍ୱିନୀ ଆଦି ୨୭ ନକ୍ଷତ୍ର ଓ ଅଭିଜିତ୍ ନାମକ ନକ୍ଷତ୍ର ଦ୍ୱାରା ଯେଉଁ ମାସ ଗଣନା କରାଯାଏ, ତାହାର ନାମ ନାକ୍ଷତ୍ର ମାସ । ଏହିପରି ପ୍ରାଚୀନ ମହର୍ଷିମାନେ ନକ୍ଷତ୍ର ବିଷୟରେ ତତ୍ତ୍ୱ ଅନୁସନ୍ଧାନ କରିଥିଲେ । ବ୍ରହ୍ମସିଦ୍ଧାନ୍ତରେ ଏହି ବିଷୟରେ ପ୍ରମାଣ ଯଥା :—

ଚାନ୍ଦ୍ରଃ ଶୁକ୍ଳାଦି ଦର୍ଶାନ୍ତଂ ସାବନସ୍ତ୍ରିଂଶତା ଦିନୈଃ
ଏକରାଶୌ ରବେର୍ଯାବତ୍ କାଲଂମାସଃ ସ ଭାସ୍କରଃ ।
ସର୍ବର୍କ୍ଷ ପରିବର୍ତ୍ତୈସ୍ତୁ ନାକ୍ଷତ୍ରମିତି ଗୀୟତେ
—ସୌରଂ ସୌମ୍ୟଂତୁ ବିଜ୍ଞେୟଂ ନାକ୍ଷତ୍ରଂ ସାବନଂ ତଥା ॥

ପ୍ରାଚୀନ ମହର୍ଷିଗଣ ଅହୋରାତ୍ର ବିଭାଗ ବିଷୟରେ ଏହା ସ୍ଥିର କରିଅଛନ୍ତି ଯେ, ଯେତେବେଳେ ଲଙ୍କାରେ ସୂର୍ଯ୍ୟ ଉଦିତ ହୁଅନ୍ତି, ସେତେବେଳେ ଯମକୋଟୀ ପୁରୀରେ ଅର୍ଥାତ୍ ନିଉଜିଲଣ୍ଡରେ ଅର୍ଦ୍ଧଦିବସ ( ମଧ୍ୟାହ୍ନ କାଳ ) ଲଙ୍କାର ଅଧୋଭାଗେ ସିଦ୍ଧପୁରରେ ଅର୍ଥାତ୍ ଆମେରିକାରେ ଅସ୍ତକାଳ ଏବଂ ରୋମକଦେଶରେ ଅର୍ଥାତ୍ ଇଉରୋପରେ ରାତ୍ରି ହୁଏ । ଭଦ୍ରାଶ୍ୱବର୍ଷର ଅର୍ଥାତ୍ ଅଷ୍ଟ୍ରେଲିଆର ଉପରଭାଗରେ ସୂର୍ଯ୍ୟ ମଧ୍ୟଦିନ ପ୍ରକାଶ କଲେ, ଭାରତବର୍ଷରେ ଉଦୟକାଳ ଧରାଯାଏ । ଏହି ସମୟରେ କେତୁମାଳ ବର୍ଷରେ ଅର୍ଥାତ୍ ଇଂଲଣ୍ଡରେ ଅର୍ଦ୍ଧ ରାତ୍ରି ଏବଂ କୁରୁବର୍ଷରେ ଅର୍ଥାତ୍ ଦକ୍ଷିଣ ଆମେରିକାରେ ସୂର୍ଯ୍ୟଙ୍କର ଅସ୍ତ ସମୟ । ଏହି ସମସ୍ତ ବିଷୟ ଆଲୋଚନା କଲେ ଜଣାଯାଏ ଯେ, ଭାରତୀୟ ପ୍ରାଚୀନ ମହର୍ଷିମାନେ ଭୂଗୋଳର ସମସ୍ତ ବିଷୟ ଜ୍ଞାନ ଚକ୍ଷୁରେ ଦେଖି ପାରୁଥିଲେ । ଏହି ବିଷୟରେ ସିଦ୍ଧାନ୍ତ ଶିରୋମଣି ଗୋଳାଧ୍ୟାୟରୁ ପ୍ରମାଣ ।

Digitized by srujanika@gmail.com

• ଲଙ୍କାପୁରେଽର୍କସ୍ୟ ଯଦୋଦୟଃ ସ୍ୟାତ୍ତଦାଦିନାର୍ଦ୍ଧଂ
ଯମକୋଟୀ ପୁର୍ଯ୍ୟାମ୍ ।
ଅଧସ୍ତଦା ସିଦ୍ଧପୁରେଽସ୍ତକାଳଂସ୍ୟାଦ୍ରୋମକେ
ରାତ୍ରିଦଳଂତଦୈବ ।
ଭଦ୍ରାଶ୍ୱୋପରଗଃ ସୂର୍ଯ୍ୟୋ ଭାରତେଽଦୋଦୟଂ ରବିଃ ।
ରାତ୍ର୍ୟର୍ଦ୍ଧଂ କେତୁମାଳାଖ୍ୟେ କୁରବେଽସ୍ତମନଂତଦା ।

ସିଦ୍ଧାନ୍ତ ଶିରୋମଣିର ବାୟୁ ବିବରଣରେ ଗୋଳାଧ୍ୟାୟରୁ ପ୍ରମାଣ—

ଭୂବାୟୁ ରାବହ ଇହ ପ୍ରବହସ୍ତଦୂର୍ଦ୍ଧ୍ୱଃ
ସ୍ୟାଦୁଦ୍ୱହସ୍ତଦନୁ ସଂବହ ସଂଜ୍ଞକଶ୍ଚ ।
ଅନ୍ୟସ୍ତତୋଽପି ସୁବହଃ ପରିପୂର୍ବକୋଽସ୍ମାତ୍
ବାହ୍ୟଃ ପରାବହ ଇମେ ପବନାଃ ପ୍ରସିଦ୍ଧାଃ ।

ପାଠକ ବର୍ଗଙ୍କ ମଧ୍ୟରେ କେହି କେହି କହିବେ ପୌରାଣିକ ମତେ ପୃଥିବୀ ସ୍ଥିର ଏବଂ ସେ ସ୍ୱଶକ୍ତିରେ ଅବସ୍ଥିତ ହୁଏ ନାହିଁ । ତାହାକୁ କୂର୍ମ୍ମ, ଦିଙ୍ ନାଗବର୍ଗ ଓ ଅନନ୍ତ ସର୍ପ ଧାରଣ କରି ଅଛନ୍ତି । ଏ କଥା ସ୍ୱୀକାର ନ କଲେ ନାସ୍ତିକ ହେବାକୁ ପଡ଼ିବ । ବର୍ତ୍ତମାନ ଏ ସ୍ଥଳରେ ବିଚାର କରାଯାଉ, ଅମ୍ଭେମାନେ ହିନ୍ଦୁ, ଅମ୍ଭମାନଙ୍କ ପୁରାଣ ମାନିବାକୁ ହେବ । ପୃଥିବୀ ବାୟୁ ମଣ୍ଡଳରେ ଆବୃତ ହୋଇ ରହିଅଛି । ଅମ୍ଭମାନଙ୍କ ଶାସ୍ତ୍ରରେ ସୃଷ୍ଟି ମୂଳକ ଦଶବିଧ ବାୟୁ ଅଛି । ଏହି ଦଶବିଧ ବାୟୁରୁ ପାଞ୍ଚଟି ପ୍ରାଣବାୟୁ ଓ ପାଞ୍ଚଟି ବାହ୍ୟ ବାୟୁ । ସେମାନଙ୍କର ନାମ—ପ୍ରାଣ, ଅପାନ, ସମାନ, ଉଦାନ, ବ୍ୟାନ, ନାଗ, କୂର୍ମ, କୃକର, ଦେବଦତ୍ତ ଓ ଧନଞ୍ଜୟ । ନାଗ, କୂର୍ମାଦି ବାହ୍ୟ ବାୟୁଦ୍ୱାରା ଜଗତ୍ ମଣ୍ଡଳ ପରି-ବ୍ୟାପ୍ତ ହୋଇଅଛି । ସୁତରାଂ କୂର୍ମ ପୃଥିବୀକୁ ଧାରଣ କରି

Digitized by srujanika@gmail.com

ରହିଅଛି କହିଲେ ଦୋଷ ହେବ ନାହିଁ । ଯେପରି କୂର୍ମ ଶବ୍ଦରେ କଚ୍ଛପକୁ ନ ବୁଝାଇ କୂର୍ମ ନାମକ ବାୟୁକୁ ବୁଝାଉ ଅଛି ସେହିପରି ଦିଙ୍ନାଗଶବ୍ଦ ମଧ୍ୟ ଦିଗ୍‌ହସ୍ତୀକୁ ନ ବୁଝାଇ ଦଶଦିଗର ନାଗ ନାମକ ବାୟୁକୁ ବୁଝାଉ ଅଛି । ଅନନ୍ତ ଶବ୍ଦର ବ୍ୟୁତ୍ପତ୍ତି ଲଭ୍ୟ ଅର୍ଥ ଏହି ଯେ ଯାହାର ଅନ୍ତ ନାହିଁ ସେହି ଅନନ୍ତ । ସୁତରାଂ ଅନନ୍ତ ଶକ୍ତି ସମ୍ପନ୍ନ ସେହି ମହାଶକ୍ତିର ପ୍ରଭାବରେ ପୃଥିବୀ ବାୟୁମାନଙ୍କ ଦ୍ୱାରା ଆବୃତ ହୋଇ ଆକାଶ ମଣ୍ଡଳରେ ନିଜ କକ୍ଷରେ ଘୂର୍ଣ୍ଣିତ ହେଉଅଛି । ବର୍ତ୍ତମାନ ନାଗ କୂର୍ମ ଓ ଅନନ୍ତର ପୃଥିବୀ ଧାରଣ ଅସମ୍ଭବ କି ରହିଲା । ଏ ବିଷୟରେ ପ୍ରମାଣ— ଯୋଗୀ ଯାଜ୍ଞବଲ୍‌କ୍ୟୀ ଉତ୍ତର ଖଣ୍ଡର ଚତୁର୍ଥ ଅଧ୍ୟାୟରୁ ।

"ନିଶ୍ୱାସୋଚ୍ଛ୍ୱାସ ରୂପେଣ ପ୍ରାଣକର୍ମ ସମୀରିତମ୍
ଅପାନବାୟୋଃକର୍ମୈତଦ୍‌ବିଣ୍ମୂତ୍ରାଦି ବିସର୍ଜ୍ଜନମ୍ ।
ହାନୋପାଦାନ ଚେଷ୍ଟାଦି ବ୍ୟାନ କର୍ମେତି ଚେଷ୍ୟତେ ।
ଉଦାନ କର୍ମ ତଚ୍ଚୋକ୍ତଂ ଦେହସ୍ୟୋନ୍ନୟନା ଦିଯତ୍ ।
ପୋଷଣାଦି ସମାନସ୍ୟ ଶରୀରେ କର୍ମ କୀର୍ତ୍ତିତମ୍ ।
ଉଦ୍‌ଗାରାଦି ଗୁଣୋ ଯସ୍ତୁ ନାଗ କର୍ମ ସମୀରିତମ୍
ନିମୀଳନାଦି କୂର୍ମସ୍ୟ କ୍ଷୁତ୍ତୁଷ୍ଟେ କୃକରସ୍ୟ ଚ ।
ଦେବଦତ୍ତସ୍ୟ ବିପ୍ରେନ୍ଦ୍ର ! ତନ୍ଦ୍ରା କର୍ମେତି କୀର୍ତ୍ତିତମ୍ ।
ଧନଞ୍ଜୟସ୍ୟ ଶୋଷାଦି ସର୍ବକର୍ମ ପ୍ରକୀର୍ତ୍ତିତମ୍
ଜ୍ଞାତ୍ୱୈବ ନାଡୀ ସଂସ୍ଥାନଂ ବାୟୂନାଂ ସ୍ଥାନକର୍ମ ଚ ।
ବିଧିନୋକ୍ତେନ ମାର୍ଗେଣ ନାଡୀ ସଂଶୋଧନଂ କୁରୁ ।"

ସୁତରାଂ ଅନନ୍ତ ଶବ୍ଦରେ ବାସୁକିକୁ ନ ବୁଝାଇ ଅନନ୍ତ ଶକ୍ତି ସମ୍ପନ୍ନ ମହାଶକ୍ତିକୁ ବୁଝାଉ ଅଛି ।

Digitized by srujanika@gmail.com

• ବାସୁକିଙ୍କୁ ବୁଝାଇଲେ ମଧ୍ୟ ଏଠାରେ ବାସୁକି ଶବ୍ଦରେ ସର୍ପ ଅର୍ଥ ନୁହେଁ, କିନ୍ତୁ ବାୟୁ । ବସୁ ଶବ୍ଦର ଅର୍ଥ ବାୟୁ । ଯଥା ବସୂନା ବାୟୁଭି ଶବ୍ଦାୟତେ ଇତି ବାସୁକଃ । ଅଥବା ବସୁ ରତ୍ନଂ ଏକେ, ଶିରସି ଯସ୍ୟ ସ ·ବସୁକଃ । ତସ୍ୟ ଅପତ୍ୟଂ ବାସୁକିଃ ମହାବାୟୁଃ । ମହାବାୟୁର ଉପରିଭାଗରେ ଜ୍ୟୋତିଷ୍କ ମଣ୍ଡଳୀ ରହିଅଛି । ସୁତରାଂ ବାସୁକିର ମସ୍ତକରେ ରତ୍ନ ଅଛି । ଏହିକଥା କାହାରି ମତରେ ଅସଙ୍ଗତ ବୋଧ ହେବ ନାହିଁ । ବାସୁକିକୁ ସମୁଦ୍ର ମନ୍ଥନ କାଳରେ ମନ୍ଦର ପର୍ବତ ବନ୍ଧନରେ ରଜ୍ଜୁ କରା ଯାଇଥିଲା । ବାୟୁମଣ୍ଡଳର ଉପରି ଭାଗରେ ବ୍ରହ୍ମାଣ୍ଡର ସମସ୍ତ ପଦାର୍ଥ ଅଛି । ସୁତରାଂ ଅନନ୍ତର ଅନ୍ୟ ଗୋଟିଏ ନାମ ବାସୁକି । ଅଥବା ପୃଥକ୍ ଉପାଖ୍ୟାନ ସର୍ପଦ୍ୱୟ ହେଲେ ମଧ୍ୟ ଅନନ୍ତ ଅଥବା ବାସୁକିଙ୍କୁ ସର୍ପ ନ ଭାବି ପୃଥିବୀର ଚତୁଃପାର୍ଶ୍ୱସ୍ଥ ବାୟୁରାଶିକୁ ବୁଝିବାକୁ ହେବ ।

---

Digitized by srujanika@gmail.com

# ମଳମାସ

ଯେଉଁ ମାସରେ ଦୁଇଟି ଅମାବାସ୍ୟା ଦେଖାଯାଏ ସେହି ମାସକୁ ମଳମାସ କହନ୍ତି । ସେହି ମାସଟି ଅପବିତ୍ର ମାସ । ଏବିଷୟରେ ମଳମାସ ତତ୍ତ୍ୱରୁ ପ୍ରମାଣ ।

ଅମାବାସ୍ୟା ଦ୍ୱୟଂ ଯତ୍ର ରବିଃ ସଂକ୍ରାନ୍ତି ବର୍ଜିତମ୍
ମଳମାସଃ ସ ବିଜ୍ଞେୟୋ ବିଷ୍ଣୁଃ ସ୍ୱପିତି କର୍କଟେ ।

ଋଷିମାନେ ମଳମାସକୁ ଅଧିମାସ କହନ୍ତି, ଭାରତୀୟ ଆର୍ଯ୍ୟଗଣ ମଳମାସକୁ ଅପବିତ୍ର ମାସ କହନ୍ତି, ମଧ୍ୟ ତହିଁରେ କୌଣସି ମାଙ୍ଗଳିକ କାର୍ଯ୍ୟ କରନ୍ତି ନାହିଁ ।

ଷଷ୍ଟି ଦଣ୍ଡାତ୍ମକତିଥିର ମଳାଂଶରୁ ବ ୨।୬ ମାସରେ ମଳମାସର ଉତ୍ପତ୍ତି ହୁଏ । ସୁତରାଂ ଏହା ଅପବିତ୍ର । ଏହି ଅପବିତ୍ର ମାସକୁ ବ ୨।୬ ମାସ ପରେ ପରିତ୍ୟାଗ କରାଯାଏ । ସୂର୍ଯ୍ୟଙ୍କର ଉଦୟାସ୍ତ ଭେଦରେ ପ୍ରତ୍ୟେକ ଋତୁରେ ଗୋଟିଏ ଦିନ ବୃଦ୍ଧି କ୍ରମେ ବର୍ଷକରେ ୬ ଗୋଟି ଋତୁରେ ୬ ଗୋଟି ଦିନ ବର୍ଦ୍ଧିତ ହୁଏ । ସୁତରାଂ ଦିନବୃଦ୍ଧି ଓ ତିଥିର କ୍ଷୟ ହେତୁ ବର୍ଷ ମଧ୍ୟରେ ସୂର୍ଯ୍ୟ ଓ ଚନ୍ଦ୍ରଙ୍କର ଗତି ଭେଦରେ ଛଅଟି ଋତୁରେ ଦ୍ୱାଦଶ ଦିନ ଅର୍ଥାତ୍ ତିଥି ବର୍ଦ୍ଧିତ ହୋଇଥାଏ । ଏହିହେତୁ ସାର୍ଦ୍ଧ ଦ୍ୱିବର୍ଷରେ ଏକମାସ ବର୍ଦ୍ଧିତ ହୁଏ । ବସ୍ତୁତଃ ସୌରଦିନ ୫ ଦିନ ୧୫ ଦଣ୍ଡ ବୃଦ୍ଧି ଦେଖାଯାଏ । ଅତଏବ ଏଠାରେ ଦିନ ଶବ୍ଦରେ ତିଥି ବୁଝିବାକୁ ହେବ । ଏହି ମାସ ଚାନ୍ଦ୍ରମାସ ଗଣନାରେ ଧରାଯାଏ ।

ମଳମାସ କାରଣନ୍ତୁ ଜ୍ୟୋତଷେ ।

ଅମାବାସ୍ୟାରେ ମାସ ଆରମ୍ଭ ନ ହେଲେ ଏକମାସରେ ଦୁଇଟି ଅମାବାସ୍ୟା ହୋଇ ନ ପାରେ । ସୁତରାଂ ଅମାବାସ୍ୟାରେ

Digitized by srujanika@gmail.com

ମାସ ଆରମ୍ଭ ହେଲେ ପ୍ରତ୍ୟେକ ମାସରେ ଦୁଇଟି ଅମାବାସ୍ୟା ହେବାର ସମ୍ଭାବନା ।

ସୌରମାସ ଗଣନାରେ ବୈଶାଖାଦି ୬ ମାସରେ ୧୮୬ ଦିନ ଏବଂ କାର୍ତ୍ତିକଠାରୁ ଚୈତ୍ର ପର୍ଯ୍ୟନ୍ତ ୬ ମାସରେ ୧୭୮ ଦିନ ହୁଏ । ଉକ୍ତିବଚନ ବର୍ଷ ମଧ୍ୟରେ ୩୬୫ ( ତିନିଶତ ପଞ୍ଚଷଷ୍ଠି ) ଦିନ । ତିନିଶତ ପଞ୍ଚଷଷ୍ଠି ଦିନରେ ସୌର ଦ୍ୱାଦଶ ମାସ ହୁଏ କିନ୍ତୁ ୩୬୫ ଅହୋରାତ୍ରରେ ଚନ୍ଦ୍ରମାସରେ ୧୨ ମାସ ଓ ୧୨ ଦିନ ହୁଏ । ଚାନ୍ଦ୍ରଦିନ ଓ ମାସ ଶବ୍ଦରେ ତିଥି ବୁଝିବାକୁ ହୁଏ । ଏକ ଏକ ତିଥିରେ ଭୋଗକାଳ ଏକ ଚାନ୍ଦ୍ର ଦିନ, ଏବଂ ଶୁକ୍ଳ ପ୍ରତିପଦଠାରୁ ଅମାବାସ୍ୟା ପର୍ଯ୍ୟନ୍ତ ତ୍ରିଂଶତ୍ ତିଥିଭୁକ୍ତ କାଳକୁ ମାସ ଶବ୍ଦ ନିର୍ଦ୍ଦେଶ କରାହୋଇଅଛି । ଏହି ତ୍ରିଂଶତ୍ ତିଥିର କ୍ଷୟ ଓ ବୃଦ୍ଧିହେତୁ ଚାନ୍ଦ୍ରମାସ କେତେବେଳେ ୨୭, ୨୮, ୨୯ ବା ୩୦ ଦିନ ହୁଏ । ଏହି କାରଣରୁ ପ୍ରତ୍ୟେକ ୨ ବର୍ଷ ୬ ମାସରେ ଅନ୍ତତଃ କୌଣସି ଏକମାସରେ ଦୁଇଟି ଅମାବାସ୍ୟା ନିଶ୍ଚୟ ହୁଏ । କେବେ କେବେ ଏକବର୍ଷ ମଧ୍ୟରେ ଦୁଇଟି ମାସରେ ଯୁଗ୍ମ ଅମାବାସ୍ୟା ମଧ୍ୟ ହୁଏ, ସେ ସ୍ଥଳରେ କେଉଁମାସକୁ ମଳମାସ ଗଣନା କରାଯିବ ତାହାର ନିୟମ ଏହି ।

ମେଷାଦୀନାମହର୍ବୃନ୍ଦଂ ଷଣ୍ଣାଂ ସପ୍ତାଷ୍ଟ ଚନ୍ଦ୍ରକମ୍ ।
ତୁଲାଦୀନାମଷ୍ଟସପ୍ତଚନ୍ଦ୍ରକସ୍ତୁ ଲଘୋତ୍ତଃ ॥
ସଂକ୍ରାନ୍ତି ପ୍ରକରଣରେ ଜ୍ୟୋତିସ୍ତତ୍ତ୍ୱରୁ ପ୍ରମାଣ

ସୌରମାସ ସଂକ୍ରମଣ କାଳରେ ନିୟମାନୁସାରେ ମଳମାସ ଧରା ଯାଏ, ଯେତେବେଳେ ସୌର ଦ୍ୱାଦଶମାସରେ ୧୩ ବା ୧୪ଟି ଅମାବାସ୍ୟା ହୁଏ, ସେତେବେଳେ ଗୋଟିଏ ମାସ ଅଶୁଦ୍ଧ ବୋଲି

Digitized by srujanika@gmail.com

ପରତ୍ୟକ୍ତ ହୁଏ । ପୂର୍ବ ଅମାବାସ୍ୟାଯୁକ୍ତ ମାସ ଦୁଇଟି ମଧ୍ୟରେ କେଉଁଟି ମଳମାସ ତାହାର ମୀମାଂସା ଏହି ।

ଯେଉଁ ବର୍ଷ ଅଶ୍ୱିନ ମାସର ସଂକ୍ରାନ୍ତି ଅମାବାସ୍ୟାରେ ଏବଂ କାର୍ତ୍ତିକମାସର ସଂକ୍ରାନ୍ତି ପ୍ରତିପଦାରେ ହୁଏ ସୂର୍ଯ୍ୟଙ୍କର ବକ୍ର ଗତିରେ କାର୍ତ୍ତିକ ଓ ପୌଷ ସଂକ୍ରାନ୍ତି ପ୍ରତି ପଦାରେ ହୁଏ ଏବଂ ମକର, କୁମ୍ଭ, ମୀନ ସଂକ୍ରାନ୍ତି ଅମାବାସ୍ୟାରେ ଏବଂ ମେଷ ସଂକ୍ରାନ୍ତି ପ୍ରତିପଦାରେ ହୁଏ, ସେହି ସମୟରେ ଅଶ୍ୱିନମାସ ମଳମାସ, ପୌଷମାସ କ୍ଷୟମାସ ଏବଂ ଚୈତ୍ରମାସ ଭାନୁଲଙ୍ଘିତ ମାସ ବୋଲି ଧରା ଯାଏ । ଏ ବିଷୟରେ ମଳମାସ ତତ୍ତ୍ୱରୁ ପ୍ରମାଣ ।

"ଯସ୍ମିନ୍ ବର୍ଷେ କନ୍ୟା ସଂକ୍ରାନ୍ତି ଭୁ'ଗା, ତୁଲା ସଂକ୍ରାନ୍ତିସ୍ତୁ ପ୍ରତିପଦ ଏବଂ ପ୍ରତିପଦ ବୃଶ୍ଚିକ ଧନୁ ସଂକ୍ରାନ୍ତିଃ, ତତଷ୍ଟ ବକ୍ରଗତ୍ୟା । ବର୍ଷେ ମକର କୁମ୍ଭ ମୀନ ସଂକ୍ରାନ୍ତୟଃ, ପ୍ରତିପଦ ମେଷ ସଂକ୍ରାନ୍ତି ସ୍ତଦ୍ କନ୍ୟାୟାଂ ମଳମାସୋ ଧନୁଷି କ୍ଷୟୋ ମୀନେ ଭାନୁଃ ଲଂଘିତଃ ।"

ଅନ୍ୟମାନେ କହନ୍ତି —ଯେଉଁ ବର୍ଷ ଅଶ୍ୱିନମାସର ସଂକ୍ରାନ୍ତି ଅମାବାସ୍ୟାରେ, କାର୍ତ୍ତିକର ସଂକ୍ରାନ୍ତି ପ୍ରତିପଦାରେ ଏବଂ ମାର୍ଗଶିରଠାରୁ ଛଅମାସ ଅର୍ଥାତ୍ ବୃଶ୍ଚିକ, ଧନୁ, ମକର, କୁମ୍ଭ, ମୀନ ଓ ମେଷ ସଂକ୍ରମଣ ଅମାବାସ୍ୟାରେ ହୁଏ, ଏବଂ ବୃଷ ସଂକ୍ରାନ୍ତି ଅର୍ଥାତ୍ ଜ୍ୟେଷ୍ଠ ମାସ ପ୍ରତିପଦାରେ, ସେ ବର୍ଷ ଅଶ୍ୱିନମାସ ଭାନୁଲଙ୍ଘିତ, କାର୍ତ୍ତିକମାସ କ୍ଷୟ ମାସ ଓ ବୈଶାଖ ମଳ ।

ଏ ବିଷୟରେ ମଳମାସ ତତ୍ତ୍ୱରୁ ପ୍ରମାଣ

ଯସ୍ମିନ୍ନବ୍ଦେ କନ୍ୟା ସଂକ୍ରାନ୍ତିରମାବସ୍ୟାୟାଂ, ତୁଲା ସଂକ୍ରାନ୍ତିସ୍ତୁ ପ୍ରତିପଦ, ତତୋଽମାବସ୍ୟାସ୍ୱାନ୍ତୁ ବୃଶ୍ଚିକସଂକ୍ରାନ୍ତିରମାବସ୍ୟାୟାମେବ ମେଷାବଧି ସଂକ୍ରାନ୍ତୟୋଭୁତାସ୍ତତଃ ପ୍ରତିପଦ ବୃଷସଂକ୍ରାନ୍ତିଭୁ'ତା ତଦାଶ୍ୱିନୌ ଭାନୁଲଙ୍ଘିତଃ, କାର୍ତ୍ତିକକ୍ଷୟଃ, ବୈଶାଖୋ ମଳମାସଃ ।

Digitized by srujanika@gmail.com

ଯେଉଁବର୍ଷ ବୈଶାଖଠାରୁ ଆଶ୍ୱିନ ପର୍ଯ୍ୟନ୍ତ ଛଅମାସରୁ କୌଣସି ମାସରେ ଦୁଇଟି ଅମାବାସ୍ୟା ହୁଏ ଏବଂ ଏହିବର୍ଷ କାର୍ତ୍ତିକ ଠାରୁ ଚୈତ୍ର ପର୍ଯ୍ୟନ୍ତ ଛଅମାସରୁ କୌଣସି ମାସରେ ଦୁଇଟି ଅମାବାସ୍ୟା ହୁଏ ତେବେ ସେ ବର୍ଷ ବୈଶାଖାଦି ପ୍ରଥମ ଛଅମାସର ଦୁଇ ଅମାବାସ୍ୟାଯୁକ୍ତ ମାସକୁ ମଳମାସ, ଆଉ କାର୍ତ୍ତିକାଦି ଦୁଇ ଅମାବାସ୍ୟାଯୁକ୍ତ ମାସକୁ ଭାନୁ ଲଙ୍ଘିତ କୁହାଯାଏ ।

ଏହି ବିଷୟରେ ପ୍ରମାଣ—

ଘଟକନ୍ୟାଗତେ ସୂର୍ଯ୍ୟେ ବୃଶ୍ଚିକେ ବାଥଧନ୍ୱିନି ।
ମକରେ ବାଥ କୁମ୍ଭେ ବା ନାଧିମାସ ବଦୁର୍ବୁଧାଃ ॥

ଦିନ ବୃଦ୍ଧିହେତୁ ବୈଶାଖାଦି ଛଅମାସରେ ପ୍ରାୟ ମଳମାସ ହୋଇଥାଏ । ଦିନର କ୍ଷୟ ହେତୁ କାର୍ତ୍ତିକାଦି ମାସରେ ପ୍ରାୟ ଦୁଇଟି ଅମାବାସ୍ୟା ଯୁଟେ ନାହିଁ । ଯଦି ଏହିପରି ଘଟେ ତେବେ ପ୍ରାୟ ମାଘମାସ ମଳମାସ ହୁଏ । କାର୍ତ୍ତିକାଦି ଛଅ ମାସରେ ଯେ ମଳମାସ ଯୁଟେ ନାହିଁ ଏପରି ନୁହେଁ, କିନ୍ତୁ କଦାପି ପୌଷମାସରେ ମଳମାସ ହୁଏ ନାହିଁ ।

ଦର୍ଶାନାଂ ଫାଲ୍‌ଗୁନାଦୀନାଂ ପ୍ରାୟୋମାଘସ୍ୟ ଚ କ୍ୱଚିତ୍,
ନପୁଂସକତ୍ୱଂ ଭବତି ନ ପୌଷସ୍ୟ କଦାଚନ ।
ଅମାବସ୍ୟା ଦ୍ୱୟଂ ଯତ୍ର ମାସି ମାସି ପ୍ରବର୍ତ୍ତିତେ,
ଉତ୍ତରସ୍ତୋତ୍ତମୋ ଜ୍ଞେୟଃ ପୂର୍ବସ୍ତତ୍ର ମଳିମ୍ଳୁଚଃ ॥

ଦୁଇଟି ଅମାବାସ୍ୟା ଯୁକ୍ତ ଜ୍ୟେଷ୍ଠ ଓ ମାର୍ଗଶିର ଅଶୁଭ ଫଳପ୍ରଦ, ଚୈତ୍ର ଓ ବୈଶାଖ ଶୁଭା ଶୁଭ ମିଶ୍ର ଫଳପ୍ରଦ, ଏହାଛଡ଼ା ଅନ୍ୟ ମାସରେ ଅମାବାସ୍ୟା ଦୁଇଟି ଦେଖାଗଲେ ସେ ବର୍ଷର ଫଳ ଶୁଭପ୍ରଦ ନୁହେଁ ।

ପ୍ରାୟଶୋ ନ ଶୁଭଃ ସୌମ୍ୟଃ ଜ୍ୟୈଷ୍ଠସ୍ତାଷାଢ଼କ ସ୍ତଥା ।
ମଧ୍ୟମୌ ଚୈତ୍ର ବୈଶାଖୌ ଅଧିକୋଽନ୍ୟଃ ସୁଭିକ୍ଷକୃତ୍ ॥

Digitized by srujanika@gmail.com

## ମାନବ ସହିତ ଗ୍ରହଗଣର ସମ୍ପର୍କ

ଗ୍ରହମାନଙ୍କର ଶୁଭାଶୁଭ ଫଳ ପ୍ରଦାନରେ କ୍ଷମତା ଅଛି କି ନାହିଁ, ଏ ବିଷୟରେ ସନ୍ଦେହ ଉପସ୍ଥିତ ହେଲେ କୌଣସି କୌଣସି ଋଷି କହନ୍ତି ଗ୍ରହମାନେ ଲୋକମାନଙ୍କର କିଛି ହେଲେ ଶୁଭାଶୁଭ କରନ୍ତି ନାହିଁ । ସେମାନେ କେବଳ ପୂର୍ବଜନ୍ମ କୃତ କର୍ମ ଫଳର ସୂଚକ । ଏ ବିଷୟରେ ଅନ୍ୟ ମୁନିମାନେ କହନ୍ତି ଗ୍ରହମାନେ ଯଦି ପୂର୍ବଜନ୍ମକୃତ କର୍ମଫଳର ସୂଚକ ତେବେ ସେମାନଙ୍କୁ ଭକ୍ତି କରିବା କି ପ୍ରୟୋଜନ ? ଯେ ହେତୁ ପୂର୍ବଜନ୍ମ-କୃତ କର୍ମର ଭୋଗ ନିବୃତ୍ତି ପାଇଁ କର୍ମଫଳ ଭୋଗ ହୁଏ ।

ଏହି କଥାର ଉତ୍ତରରେ କୌଣସି କୌଣସି ମୁନି କହନ୍ତି ଈଶ୍ୱରଭକ୍ତି କେବଳ ପୂର୍ବଜନ୍ମକୃତ ଦୁଷ୍କୃତର ଶାନ୍ତି ବିଧାୟକ ଏବଂ ସେହି ଈଶ୍ୱର କେବଳ ଗ୍ରହସ୍ୱରୂପୀ ହୋଇ ଅଛନ୍ତି । (ଗ୍ରହରୂପୀ ଜନାର୍ଦ୍ଦନଃ) ଅର୍ଥାତ୍ ଗ୍ରହଗଣ ଈଶ୍ୱର ମୂର୍ତ୍ତି ଅର୍ଥାତ୍ ବିଷ୍ଣୁମୂର୍ତ୍ତି ହୋଇ ଅଛନ୍ତି । ଯେ ହେତୁ କୁହାହୋଇ ଅଛି ଯେ, ଦେବଗଣ ଗ୍ରହରୂପରେ ମନୁଷ୍ୟ ମାନଙ୍କର ପୂର୍ବଜନ୍ମକର୍ମାର୍ଜିତ ନିଜ ନିଜର ଶୁଭାଶୁଭ କର୍ମଫଳ ପ୍ରଦାନ କରନ୍ତି । ଯଥା—

ଦେବତା ଗ୍ରହରୂପେଣ ମନୁଷ୍ୟାଣାଂ ଶୁଭାଶୁଭମ୍ ।
ଫଳଂ ପ୍ରାଗର୍ଜିତଂ ଯଚ୍ଚ ତଦ୍‌ଦଦାତି ସ୍ୱକର୍ମକମ୍ ॥

## ଗ୍ରହମାନଙ୍କର ଦେବତ୍ୱ କଥନ

ଗ୍ରହମାନଙ୍କର ଦେବତ୍ୱ ସମ୍ବନ୍ଧରେ ପରାଶର ସଂହିତାରେ ଯାହା ଉକ୍ତ ହୋଇଅଛି ଏବଂ ଅନ୍ୟ ଶାସ୍ତ୍ରରେ ଗ୍ରହମାନଙ୍କର ଇଷ୍ଟ-ଦେବତା ଯେପରି ନିର୍ଦ୍ଦିଷ୍ଟ ହୋଇଅଛି, ତାହା ସର୍ବସାଧାରଣଙ୍କର ବୋଧଗମ୍ୟ ପାଇଁ ନିମ୍ନରେ ପ୍ରକାଶ କରାଗଲା, ଭଗବାନ୍ ପରାଶର

Digitized by srujanika@gmail.com

ମୁନି କହିଅଛନ୍ତି ଯେ, ଗ୍ରହମାନଙ୍କ ଅଂଶରୁ ଶ୍ରୀରାମ ପ୍ରଭୃତି ଦେବତାମାନଙ୍କର ଅବତାର। ଅର୍ଥାତ୍ ସୂର୍ଯ୍ୟାଂଶରୁ ରାମାବତାର, ଚନ୍ଦ୍ରଙ୍କଠାରୁ ବଳରାମ ଅବତାର, ମଙ୍ଗଳଙ୍କଠାରୁ ନୃସିଂହାବତାର, ବୁଧଙ୍କଠାରୁ ବୁଦ୍ଧାବତାର, ବୃହସ୍ପତିଙ୍କଠାରୁ ବାମନାବତାର, ଶୁକ୍ରଙ୍କଠାରୁ ପରଶୁରାମାବତାର, ଶନିଙ୍କଠାରୁ କୂର୍ମାବତାର, ରାହୁଙ୍କଠାରୁ ବରାହାବତାର ଏବଂ କେତୁଙ୍କଠାରୁ ମୀନାବତାର ହୋଇବ।

ଏତଦ୍ଵ୍ୟତୀତ ଅନ୍ୟ ଦେବତାଗଣ ମଧ୍ୟ ଗ୍ରହମାନଙ୍କ ଅଂଶରୁ ସମ୍ଭୂତ। ଯଥା—ପରାଶର ସଂହିତାରେ

ରାମୋଽବତାରଃ ସୂର୍ଯ୍ୟସ୍ୟ ଚନ୍ଦ୍ରସ୍ୟ ଯଦୁନାୟକଃ।
ନୃସିଂହୋଭୂମିପୁତ୍ରସ୍ୟ ବୁଧଃ ସୋମ ସୁତସ୍ୟ ଚ ॥
ବାମନୋ ବିବୁଧେଜ୍ୟସ୍ୟ ଭାର୍ଗବୋ ଭାର୍ଗବସ୍ୟ ଚ।
କୂର୍ମୋଭାସ୍କର ପୁତ୍ରସ୍ୟ ସୈଂହିକେୟସ୍ୟ ଶୂକରଃ।
କେତୋର୍ମୀନା ବତାରଶ୍ଚ ଯେଚାନ୍ୟେ ତେଽପିଖେଟକାଃ।

## ଗ୍ରହମାନଙ୍କର ଇଷ୍ଟଦେବତା କଥନ

ବର୍ତ୍ତିମାନ୍ ତନ୍ତ୍ରଶାସ୍ତ୍ରୋକ୍ତ ଗ୍ରହାଧିଷ୍ଠାତ୍ରୀ ଦେବତା କଥିତ ହେଉଅଛୁ। ସୂର୍ଯ୍ୟଙ୍କର ମାତଙ୍ଗୀ, ଚନ୍ଦ୍ରଙ୍କର ଭୁବନେଶ୍ୱରୀ, ମଙ୍ଗଳଙ୍କର ବଗଳାମୁଖୀ, ବୁଧଙ୍କର ତ୍ରିପୁରସୁନ୍ଦରୀ, ବୃହସ୍ପତିଙ୍କର ତାରା, ଶୁକ୍ରଙ୍କର ଲକ୍ଷ୍ମୀ, ଶନିଙ୍କର ଦକ୍ଷିଣାକାଳୀ, ରାହୁଙ୍କର ଛିନ୍ନମସ୍ତା ଏବଂ କେତୁଙ୍କର ଧୂମାବତୀ ଅଧିଷ୍ଠାତ୍ରୀ ଦେବତା ଅଟନ୍ତି।

ଏହାର ପ୍ରମାଣ ତନ୍ତ୍ରଶାସ୍ତ୍ରରେ ଯଥା—

ଦିବାକରସ୍ୟ ମାତଙ୍ଗୀ ଚନ୍ଦ୍ରସ୍ୟ ଭୁବନେଶ୍ୱରୀ।
କୁଜସ୍ୟ ବଗଳାଦେବୀ ବୁଧସ୍ୟ ପୁରସୁନ୍ଦରୀ ॥

Digitized by srujanika@gmail.com

ତାର ବୃହସ୍ପତେଷ୍ଟୈବ ଶୁକ୍ରସ୍ୟ କମଲାତ୍ମିକା ।
ଶନେସ୍ତୁ ଦକ୍ଷିଣା କାଳୀ ଗ୍ରହାଣାମିଷ୍ଟଦେବତା ॥
ଛିନ୍ନମସ୍ତା ତଥା ରାହୋଃ କେତୋର୍ଧୂମାବତୀ ତଥା ।

ଅତଏବ ଗ୍ରହମାନଙ୍କୁ ଭକ୍ତିପୂର୍ବକ ପୂଜା କରିବା ବିଧେୟ । କାରଣ, ସମସ୍ତ ଗ୍ରହ ବିଷ୍ଣୁରୂପୀ ଅଟନ୍ତି ଏବଂ ପୂଜିତ ଗ୍ରହଗଣ ପ୍ରୀତ ହେଲେ ଲୋକମାନଙ୍କର ଅଶୁଭ ଫଳ ନାଶକରି ଶୁଭଫଳ ପ୍ରଦାନ କରନ୍ତି । ଅଥବା ଗ୍ରହାଧିଷ୍ଠାତ୍ରୀ ଦେବତାଙ୍କୁ ଉପାସନା କଲେ ଗ୍ରହଦୋଷ ଶାନ୍ତ ହୁଏ ଏବଂ ଶୁଭଫଳ ଲାଭ ହୁଏ ।

ନିଜ ସଂହିତାରେ, ପରାଶର ମୁନି କହିଅଛନ୍ତି ଯେ, ଦଶାବତାର ମଧ୍ୟରେ ସୂର୍ଯ୍ୟଗ୍ରହଙ୍କ ଅବତାର ସୂର୍ଯ୍ୟ ବଂଶାବତଂସ ଶ୍ରୀରାମ । ସୂର୍ଯ୍ୟ ଗ୍ରହ ଓ ଶ୍ରୀରାମ ଏକରୂପ ଗୁଣ ଧର୍ମୀକାନ୍ତ । ଅର୍ଥାତ୍ ଉଭୟ ଏକ ଜିନିଷ । ଯେତେବେଳେ ଏହି ଜଗତ୍ ଗାଢ଼ ଅନ୍ଧକାରରେ ଆବୃତ ଥିଲା, ସେହି ସମୟରେ ସୃଷ୍ଟିକାର୍ଯ୍ୟରେ ଉଦ୍ୟମ ଶୀଳ ବ୍ରହ୍ମାଙ୍କ ଚକ୍ଷୁରୁ ସୂର୍ଯ୍ୟଗ୍ରହ ଓ ମନରୁ ଚନ୍ଦ୍ରଗ୍ରହ, ଜାତ ହୋଇଥିଲେ । ଏହି ଦେବତାଙ୍କୁ ଜ୍ୟୋତିଷ୍ ଶାସ୍ତ୍ରରେ କହିଅଛନ୍ତି ଯେ—

"କାଲାତ୍ମା ଦିନକୃନ୍ମନସ୍ତୁହିନଗୁଃ ସତ୍ତ୍ୱଂକୁଜୋ ଜ୍ଞୋବଚଃ
ଜୀବଃ ଜ୍ଞାନସୁଖେ ସିତଶ୍ଚମଦନୋ ଦୁଃଖଂ ଦିନେଶାତ୍ମଜଃ"

ଏବଂ ବୈଦିକ ସନ୍ଧ୍ୟାରେ ସୂର୍ଯ୍ୟୋପସ୍ଥାନ ମଧ୍ୟରେ "ସୂର୍ଯ୍ୟ ଆତ୍ମା ଜଗତ ସ୍ତସ୍ଥୁଷଶ୍ଚ" ଏହି ମନ୍ତ୍ର ନିତ୍ୟ ପାଠ୍ୟ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି । ସୂର୍ଯ୍ୟଗ୍ରହ ସେହି ବିରାଟ ପୁରୁଷ ଭଗବାନ୍ ବ୍ରହ୍ମାଙ୍କର ଆତ୍ମା ଅଟନ୍ତି । ସୂର୍ଯ୍ୟଙ୍କଠାରୁ ଜୀବ ପୁଞ୍ଜ ଜାତହୋଇ ଅଛି ।

Digitized by srujanika@gmail.com

• ସ୍ୱକ୍ଷେତ୍ରେ ଶୁଭ ବର୍ଗଗତ ବଳବାନ୍ ସୂର୍ଯ୍ୟ ଯଦି ଧର୍ମ ସ୍ଥାନରେ ଥାନ୍ତି, ତେବେ ସେହି ସୂର୍ଯ୍ୟ ଦଶାରେ ରାଜାନୁଗ୍ରହରେ ଶୁଭସୌଭାଗ୍ୟ ଲାଭ ହୁଏ ।

ଯେପରି ସୂର୍ଯ୍ୟଙ୍କ ତେଜରୁ ଶ୍ରୀରାମଙ୍କ ଆବିର୍ଭାବ, ସେହିପରି ଚନ୍ଦ୍ରଙ୍କ ତେଜରୁ ବଳରାମଙ୍କ ଆବିର୍ଭାବ । ଅତଏବ ଚନ୍ଦ୍ର ଓ ବଳରାମ ଉଭୟେ ଏକରୂପ ଗୁଣଧର୍ମୀକାନ୍ତ । ରବି ଯେପରି ଭଗବାନ୍ ବ୍ରହ୍ମାଙ୍କର ଆତ୍ମା, ସେହିପରି ଚନ୍ଦ୍ର ଭଗବାନ ବ୍ରହ୍ମାଙ୍କର ମନ । ମଙ୍ଗଳ ତାଙ୍କର ବଳ, ବୁଧ ତାଙ୍କର ବାକ୍ୟ, ବୃହସ୍ପତି ତାଙ୍କର ଜ୍ଞାନ ଓ ସୁଖ । ଶୁକ୍ର ତାଙ୍କର କାମ, ଶନି ତାଙ୍କର ଦୁଃଖ ।

ଚନ୍ଦ୍ର ଭଗବାନଙ୍କର ମନ ବୋଲି ଚନ୍ଦ୍ରରୁ ମାନବର ମନୋବୃତ୍ତି କରୂପ ଅର୍ଥାତ୍ ସକଳ ମାନବର ମନର ଶୁଭାଶୁଭତ୍ୱ ବିଗ୍ଭରଣୀୟ, ସେହିପରି ମଙ୍ଗଳରୁ ବଳାବଳ, ବୁଧରୁ ବାକ୍ୟ ଓ ବୁଦ୍ଧି । ବୃହସ୍ପତିରୁ ଜ୍ଞାନ, ଧର୍ମ ଓ ସୁଖ । ଶୁକ୍ରରୁ କାମ ଏବଂ ଶନିରୁ ଦୁଃଖ ଓ ମୃତ୍ୟୁ ଇତ୍ୟାଦି ଫଳାଫଳ ବିଗ୍ଭର କରିବାକୁ ହୁଏ ।

## ପ୍ରକୃତି ଓ ପୁରୁଷଙ୍କର ଏକତ୍ୱ

ସୂର୍ଯ୍ୟ ସିଦ୍ଧାନ୍ତରେ ସୃଷ୍ଟି ପ୍ରକରଣରେ କହି ଅଛନ୍ତି ଯେ, ଉପାଦାନ ରୂପେ ପ୍ରକୃତିର ଅନ୍ତର୍ଗତ, ବିଶ୍ୱ ବ୍ରହ୍ମାଣ୍ଡର ବାହ୍ୟାଭ୍ୟନ୍ତରରେ ଯେ ସ୍ଥିତ, ସେହି ଅନାଦି ପରମବ୍ରହ୍ମ ସଙ୍କର୍ଷଣ ବାସୁଦେବ ସୃଷ୍ଟିର ଆଦ୍ୟରେ କାରଣ ଜଳରେ ସ୍ୱୀୟ ବୀର୍ଯ୍ୟ ନିକ୍ଷେପ କରନ୍ତି ।

ଗୀତାରେ ଶ୍ରୀକୃଷ୍ଣ କହିଅଛନ୍ତି, ହେ ଅର୍ଜୁନ । ମୁଁ ସ୍ୱୟଂ ଅସଙ୍ଗ ଓ ନିର୍ବିକାର ହୋଇ ନିଜ ପ୍ରକୃତି ଅର୍ଥାତ୍ ମଦଧୀନ ପ୍ରକୃତିରେ



Digitized by srujanika@gmail.com

ଅଧିଷ୍ଠାନ କରି ପ୍ରାକ୍ତନ କର୍ମ ନିମିତ୍ତ ସ୍ବଭାବ ବଶରେ ଅବିଦ୍ୟା ପରବଶ ଭୂତଗଣଙ୍କୁ ମୋହର ଅଧିଷ୍ଠାନ ବଶତଃ ପ୍ରକୃତି, ଚରାଚର ଏହି ବିଶ୍ବକୁ ପ୍ରସବ କରେ, ଏଥିପାଇଁ ଏହି ଜଗତ୍ ବାରମ୍ବାର ଉତ୍ପନ୍ନ ହୁଏ ।

ସୂର୍ଯ୍ୟ ସିଦ୍ଧାନ୍ତରେ :—

ପ୍ରକୃତ୍ୟନ୍ତର୍ଗତୋଦେବୋ ବହିରନ୍ତଶ୍ଚସର୍ବଗଃ ।
ସଙ୍କର୍ଷଣୋଽପ୍ୟଂସୃଷ୍ଟ୍ୟାଦୌ ତାସ୍ୱବୀଜମବାସୃଜତ୍ ॥

ଗୀତାରେ :—

ମୟାଧ୍ୟକ୍ଷେଣ ପ୍ରକୃତିଃ ସୂୟତେ ସଚରାଚରମ୍ ।
ହେତୁନାନେନ କୌନ୍ତେୟ ଜଗତ୍ ବିପରିବର୍ତ୍ତତେ ॥

ଯେପରି ଭଗବାନ୍ ସ୍ୱାଧୀନା ପ୍ରକୃତିରେ ଅଧିଷ୍ଠାନ ପୂର୍ବକ ବିଶ୍ୱ ସୃଜନ କରନ୍ତି । ସେହିପରି ରବ୍ୟାଦି ଗ୍ରହଗଣ ମଧ୍ୟ ନିଜ ନିଜ ପ୍ରକୃତି ମାତଙ୍ଗୀ ପ୍ରଭୃତି ଦେବୀଗଣରେ ଅଧିଷ୍ଠାନ କରି ଜୀବ ସମାଜର ପୂର୍ବଜନ୍ମାର୍ଜିତ ଶୁଭାଶୁଭ ଫଳ ପ୍ରଦାନ କରନ୍ତି । ବର୍ତ୍ତମାନ ବୁଝିବାକୁ ହେବ ଯେ, ସୂର୍ଯ୍ୟଗ୍ରହ ଶ୍ରୀରାମ ଓ ମାତଙ୍ଗୀ ଏ ଦୁହେଁ ଏକରୂପ । ଯେପରି ଅର୍ଦ୍ଧନାରୀଶ୍ବର ହରଗୌରୀ ମୂର୍ତ୍ତିରେ ଏକ ଆଧାରରେ ପୁରୁଷ ଓ ପ୍ରକୃତିର ସମ୍ମିଳନ ।

ଯେଉଁ ସୂର୍ଯ୍ୟଗ୍ରହ ସୃଷ୍ଟିକାର୍ଯ୍ୟରେ ଉଦ୍ୟମଶୀଳ ବ୍ରହ୍ମାଙ୍କ ଚକ୍ଷୁର ତେଜରୁ ସମ୍ଭୂତ, ଯେଉଁ ଚନ୍ଦ୍ରଗ୍ରହ ସୃଷ୍ଟିକାର୍ଯ୍ୟରେ ଉଦ୍ୟମଶୀଳ ବ୍ରହ୍ମାଙ୍କ ମନରୁ ସମ୍ଭୂତ, ସେହି ସୂର୍ଯ୍ୟବଂଶାବତଂସ ରାମ ଓ ଚନ୍ଦ୍ରବଂଶାବତଂସ ବଳରାମ ଅଟନ୍ତି । ରାମାବତାର ଓ ମାତଙ୍ଗୀ ଦୁହେଁ ସୂର୍ଯ୍ୟ ସମ୍ବନ୍ଧୀୟ ହେଲେ ମଧ୍ୟ ବଳରାମାବତାର ଓ ଭୁବନେଶ୍ୱରୀ ଏ ଦୁହେଁ ଚନ୍ଦ୍ର ସମ୍ବନ୍ଧୀୟ ହେଲେ ମଧ୍ୟ ସୂର୍ଯ୍ୟଗ୍ରହ ଓ ଚନ୍ଦ୍ରଗ୍ରହକୁ ଆମ୍ଭେମାନେ ଦେବତା ବୋଲି ମନନ କରୁନାହୁଁ ।

Digitized by srujanika@gmail.com

କାରଣ ନିତ୍ୟ ଦୃଷ୍ଟ ପଦାର୍ଥ ଓ ବ୍ୟକ୍ତି ଉପରେ କାହାର ହେଲେ ଅଦର ଗୌରବ ଓ ଭକ୍ତି ପ୍ରଦତ୍ତ ହୁଏ ନାହିଁ । କଥାରେ କହନ୍ତି, ଗାଁ କନ୍ୟା ସିଙ୍ଘାଣିନାକୀ ।

ପୁଣି ଅମ୍ଭମାନଙ୍କର ଗାୟତ୍ରୀରେ "ତତ୍ ସବିତୁର୍ବରେଣ୍ୟଂ ଭର୍ଗୋଦେବସ୍ୟ ଧୀମହି" ଇତ୍ୟାଦି । ପୁଣି ନାରାୟଣଙ୍କ ଧ୍ୟାନରେ "ଧେୟଃ ସଦା ସବିତୃ ମଣ୍ଡଳ ମଧ୍ୟବର୍ତ୍ତୀ ନାରାୟଣଃ ସରସିଜାସନସନ୍ନିବିଷ୍ଟଃ" ଇତ୍ୟାଦି ।

ଅର୍ଥାତ୍ ସେହି ହିରଣ୍ମୟବପୁ, ଶଙ୍ଖ ଚକ୍ର ଗଦା ପଦ୍ମ ହସ୍ତ, କରୀଟ କେୟୂର ହାର କନକକୁଣ୍ଡଳ ଧାରୀ, ପଦ୍ମାସନ, ଚତୁର୍ଭୁଜ, ନାରାୟଣଙ୍କୁ ପ୍ରତଦନ ସୂର୍ଯ୍ୟମଣ୍ଡଳ ମଧ୍ୟରେ ଧ୍ୟାନ କରୁଅଛୁଁ ।

ଯୋଗୀମାନେ ମଧ୍ୟ ସୂର୍ଯ୍ୟମଣ୍ଡଳ ମଧ୍ୟରେ ଉକ୍ତଗୁଣ ବିଶିଷ୍ଟ ଭଗବାନଙ୍କର ଦର୍ଶନ ଲାଭ କରୁଅଛନ୍ତି । ଅତଏବ ଇଦୃଶ ସୂର୍ଯ୍ୟ ଦେବଙ୍କୁ ପରମେଶ୍ୱର ଜ୍ଞାନ କରି ଅମ୍ଭମାନଙ୍କର ପ୍ରତ୍ୟହ ପୂଜା କରିବା କର୍ତ୍ତବ୍ୟ ।

ପୁଣି ଦାର୍ଶନିକମାନଙ୍କ ସୃଷ୍ଟି ପ୍ରକ୍ରିୟାନୁସାରେ ଶେଷତତ୍ତ୍ୱ ପଞ୍ଚମହାଭୂତଙ୍କ ସଙ୍ଗେ ( ଅର୍ଥାତ୍ ପୃଥିବୀ, ଜଳ, ଅଗ୍ନି, ବାୟୁ ଓ ଆକାଶାଦିଙ୍କ ସଙ୍ଗେ ) ଚନ୍ଦ୍ର ସୂର୍ଯ୍ୟଙ୍କର ଏବଂ ଚନ୍ଦ୍ର ସୂର୍ଯ୍ୟଙ୍କ ସଙ୍ଗେ ପଞ୍ଚମହାଭୂତର ସମ୍ପର୍କ ଥିବାରୁ ପାରମ୍ପରିକଭାବେ ଗ୍ରହଗଣଙ୍କର ମାନବଙ୍କ ସଙ୍ଗେ ସମ୍ପର୍କ ଥିବା ସ୍ୱାଭାବିକ, କାରଣ ମାନବ ଦେହ ପଞ୍ଚ ମହାଭୂତରେ ଗଠିତ, ତେଣୁ ମାନବଙ୍କର ଗ୍ରହଗଣଙ୍କ ପୂଜା କରିବା କର୍ତ୍ତବ୍ୟ ।

---

Digitized by srujanika@gmail.com

৩

# ପ୍ରାଚୀନ ଭାରତର ଜାତୀୟ ସାହିତ୍ୟ

ସାହିତ୍ୟ ରୂପ ଦର୍ପଣରେ ଜାତି ବିଶେଷର ସଭ୍ୟତା ପ୍ରତିବିମ୍ବିତ ହୁଏ । କେଉଁ ଦେଶ ବା ଜାତି କିପରି ସଭ୍ୟ, ତାହା ସେହି ଜାତିର ସାହିତ୍ୟ ପାଠଦ୍ୱାରା ଜଣାଯାଏ । ମୋଟରେ କହିଲେ ସାହିତ୍ୟର ଅବସ୍ଥାହିଁ ଜାତିବିଶେଷ ସଭ୍ୟତାର ମାନଦଣ୍ଡ । ବର୍ତ୍ତମାନ ଯୁଗର ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନ, ଚୀନ, ଜାପାନ, ରୁଷିଆ ପ୍ରଭୃତି ଦେଶର ସାହିତ୍ୟ ପାଠ କଲେ, ସେ ସବୁ ଦେଶର ଲୋକମାନେ ଉନ୍ନତି ପଥରେ କେତେଦୂର ଅଗ୍ରସର ହୋଇ ଅଛନ୍ତି, ତାହା ଅନ୍ୟ ଦେଶର ଲୋକମାନେ ବର୍ତ୍ତମାନ ସହଜରେ ବୁଝିପାରନ୍ତି ଓ ଭବିଷ୍ୟତର ମାନବ ସମାଜ ମଧ୍ୟ ବୁଝି ପାରିବେ ।

ଅମ୍ଭେମାନେ ସଂପ୍ରତି ଖ୍ରୀଷ୍ଟ ବିଂଶ ଶତାବ୍ଦୀର ମଧ୍ୟଭାଗରେ ଜନ୍ମ ଗ୍ରହଣ କରିଅଛୁଁ । ବର୍ତ୍ତମାନର ଯେଉଁ ସଭ୍ୟତା ସମଗ୍ର ପୃଥିବୀ ମଣ୍ଡଳକୁ ଆଲୋକିତ କରୁଅଛି, ତାହାର ଉତ୍ପତ୍ତି ଓ ବିସ୍ତୃତି ଗତ ପାଞ୍ଚଶହ ବର୍ଷ ମଧ୍ୟରେ । ଏ ଯୁଗର ପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତମାନେ ନିର୍ଣ୍ଣୟ କରି ଅଛନ୍ତି ଓ ଆମ୍ଭମାନଙ୍କର ଜନ୍ମଭୂମି ଏହି ଭାରତବର୍ଷର ଦିଗ୍‌ବଳୟରେ ସଭ୍ୟତା-ସୂର୍ଯ୍ୟ ଅନ୍ୟୁନ ପ୍ରାୟ ଦଶହଜାର ବର୍ଷ ପୂର୍ବେ ପ୍ରଥମେ ଉଦିତ ହୋଇଥିଲେ, ଅତୀତର ଅନ୍ଧକାରମୟ ଗର୍ଭରେ ସେ ସଭ୍ୟତା ଅଲୋକ ଆଚ୍ଛାଦିତ ହୋଇ ପଡ଼ିଥିଲେହେଁ, ତାହାର ସାହିତ୍ୟ ଭଣ୍ଡାରରେ ଯେଉଁସବୁ ଅମୂଲ୍ୟ ରତ୍ନ-ରାଜି ସଂଚିତ ହୋଇ ରହିଅଛି, ସେ ସମସ୍ତର ବିମଳ ଜ୍ୟୋତିଃ ଅଧୁନା ନୈରାଶ୍ୟ-ପ୍ରପୀଡ଼ିତ ଅମ୍ଭମାନଙ୍କ ହୃଦୟ-କନ୍ଦରକୁ

Digitized by srujanika@gmail.com

ଅନ୍ଧକାରିତ କରୁଅଛୁ ଏବଂ ଅମ୍ଭେମାନେ ଆଶା କରୁଅଛୁଁ, ଯେତେବେଳେ ସେହି ସମୁଜ୍ଜ୍ୱଳ ରବି ରାଜାର ବିମଳ ପ୍ରଭାରେ ଏକା ଭାରତ ନାହିଁକି, ସମଗ୍ର ବିଶ୍ୱ ମଧ୍ୟ ଆଲୋକ ଦୀପ୍ତ ହୋଇଉଠିବ ।

ଭିନ୍ନ ଧର୍ମାବଲମ୍ବୀ, ଭିନ୍ନ ପ୍ରକୃତି ବିଶିଷ୍ଟ ରଜୋଗୁଣ ଦୃପ୍ତ ଦୂରଦେଶୀୟ ଲୋକମାନଙ୍କ ଦ୍ୱାରା ଅଧିକୃତ ହୋଇ ଭାରତର ପୁଣ୍ୟ ଶ୍ରୀ, ଦୀର୍ଘ ଆଠଶହ ବର୍ଷ ମ୍ଳାନ ହୋଇ ପଡ଼ିଥିଲା । ଅନ୍ୟ ଅସଭ୍ୟ ଦେଶର ଲୋକଙ୍କର ବିଜେତା ମାନେ ଯେଉଁ ଦୃଷ୍ଟିରେ ଦେଖୁଥିଲେ ଭାରତୀୟ ଲୋକମାନଙ୍କୁ ସେହିଦୃଷ୍ଟିରେହିଁ ଦେଖି ନାନା କୌଶଳରେ ଲୋକମାନଙ୍କର ବହୁ କଷ୍ଟରେ ଉପାର୍ଜିତ ଧନକୁ ଅପହରଣ କରି ସ୍ୱର୍ଣ୍ଣପ୍ରସୂ ଦେଶକୁ ଶୂନ୍ୟଗର୍ଭ ବଲ୍ମୀକରେ ପରିଣତ କରିବାହିଁ ସେମାନଙ୍କର ଲକ୍ଷ୍ୟଥିଲା । ଏହି ବିଜେତା ମାନଙ୍କର ବିଜୟର ଲକ୍ଷଣ ପରବର୍ତ୍ତୀ କାଳରେ ସେମାନେ ଦେଖିଲେ ଯେ, ଏହି ଯେଉଁ ବିଶାଳ ଭୂଖଣ୍ଡର ଅଧୀଶ୍ୱର ହୋଇ ସେମାନେ ତହିଁରୁ ଅର୍ଥ ଶୋଷଣରେ ବ୍ୟାପୃତ ଅଛନ୍ତି ଏବଂ ସେ ଦେଶର ଅଧିବାସୀ ମାନଙ୍କୁ ଆଫ୍ରିକା ବାସୀ ନିଗ୍ରୋ, କାଫ୍ରି ପ୍ରଭୃତି ଅସଭ୍ୟ ଲୋକଙ୍କୁ ଦେଖିଲା ପରି ଦେଖୁଅଛନ୍ତି, ସେ ଦେଶ ଅଧିବାସୀ-ମାନେ ପୃଥିବୀର ଗୋଟିଏ ଆଦି ସଭ୍ୟ ଜାତିର ବଂଶଧର ।

ବିଜେତାମାନଙ୍କର ଏହିଭାବ ପରିବର୍ତ୍ତନ କେବଳ ଲୋକଙ୍କ କଥାରେ ବା ଅନ୍ତର ବ୍ୟବହାର ଦୃଷ୍ଟିରେ ହୋଇ ନ ଥିଲା, ଏ ଦେଶର ଯେଉଁ ପ୍ରାଚୀନ ସାହିତ୍ୟ ସେମାନଙ୍କ ଦୃଷ୍ଟି ଭଙ୍ଗୀ ପରିବର୍ତ୍ତନର ଏକମାତ୍ର କାରଣ ତାହାହିଁ ପୃଥିବୀର ଜ୍ଞାନ ବିଜ୍ଞାନର ଆଦିମ ଉତ୍ସ **ସଂସ୍କୃତ ସାହିତ୍ୟ** । କାଳର ଧ୍ୱଂସକାରୀ ପ୍ରଭାବ ଆମ ଅତୀତର ବହୁ କୀର୍ତ୍ତିକୁ ନିଷ୍ଟିହ୍ନ କରିଥିଲେହେଁ ଏହି ଅକ୍ଷର ସମ୍ବନ୍ଧୀୟ କୀର୍ତ୍ତିକୁ ନଷ୍ଟ କରି ପାରିନାହିଁ । ତେଣୁ କୁହାଯାଏ

Digitized by srujanika@gmail.com

'କୀର୍ତ୍ତିରକ୍ଷର ସମ୍ବଦ୍ଧା ସ୍ଥିରାଭବତି ଭୂତଳେ ।' ଯେଉଁ ସାହିତ୍ୟ ବହୁ ସହସ୍ର ବର୍ଷ ପୂର୍ବେ ପୃଥିବୀ ପୃଷ୍ଠରେ ଜନ୍ମିଥିବା ମାନବର ଚିନ୍ତା ଧାରାକୁ ପ୍ରଳୟ ପର୍ଯ୍ୟନ୍ତ ଅମ୍ଳାନ ଭାବରେ ଧାରଣ କରିପାରେ ସେ ସାହିତ୍ୟ ମାନବ ସଭ୍ୟତା ପକ୍ଷରେ କିପରି ଉପାଦେୟ ତାହା ସହଜରେ ଜଣାଯାଏ ।

ଯାହା ପାଠକଲେ ସମ୍ୟକ୍ ହିତସାଧିତ ହୁଏ ତାହାର ନାମ ସହିତ୍ୟ, 'ସାହିତ୍ୟ' ଶବ୍ଦର ଏହାହିଁ ବ୍ୟୁତ୍ପତ୍ତି ମୂଳକ ଅର୍ଥ । ମାତ୍ର ବର୍ତ୍ତମାନ ଏ ଅର୍ଥରେ ସାହିତ୍ୟ ଶବ୍ଦର ବ୍ୟବହାର ହୁଏ ନାହିଁ; ସାହିତ୍ୟ (Liberation) କହିଲେ ଏବେ ଅମ୍ଭେମାନେ ଗଦ୍ୟ ପଦ୍ୟାତ୍ମକ କାବ୍ୟ, ନାଟକ ଛଡ଼ା ଅନ୍ୟ କିଛି ବୁଝୁନାହୁଁ, ବୋଧହୁଏ ଏ ଶବ୍ଦର ସୃଷ୍ଟି ବେଳେ ଏହି ସଂକୀର୍ଣ୍ଣ ଅର୍ଥ ଏହାର ଅଭିଧେୟ ନ ଥିଲା । ଧର୍ମଶାସ୍ତ୍ର, ବିଜ୍ଞାନ, ଦର୍ଶନ, ଜ୍ୟୋତିଷ ପ୍ରଭୃତି ଯାବତୀୟ ଲିପି-ସଂବଳିତ କୀର୍ତ୍ତିକୁ ପ୍ରଶସ୍ତ ଅର୍ଥରେ ସାହିତ୍ୟର ଅନ୍ତର୍ଗତ କରାଯାଉଥିଲା ।

ଏ ଯୁଗର ପ୍ରତ୍ନତତ୍ତ୍ୱବିଦ୍ ପଣ୍ଡିତମାନେ ନାନାଭାବରେ ଗବେଷଣା କରି ନିର୍ଣ୍ଣୟ କରିଅଛନ୍ତି ଯେ ଆଜିକୁ ପ୍ରାୟ ଦଶହଜାର ବର୍ଷ ପୂର୍ବେ ଏ ଦେଶରେ ମାନବ ସଭ୍ୟତାର ଆଲୋକ ପ୍ରଥମେ ପ୍ରକାଶିତ ହୋଇଥିଲା । ପାଶ୍ଚାତ୍ୟ ପଣ୍ଡିତ ମଣ୍ଡଳୀ ଓ ଏ ଦେଶର ବାଳଗଙ୍ଗାଧର ତିଳକ ପ୍ରମୁଖ ମନୀଷୀ ମାନଙ୍କ ମତରେ ପୃଥିବୀର ପ୍ରାଚୀନତମ ଗ୍ରନ୍ଥ ଋଗ୍‌ବେଦ ଖ୍ରୀଷ୍ଟଜନ୍ମର ପାଞ୍ଚହଜାର ବର୍ଷ ପୂର୍ବର ରଚନା । ଯେଉଁ ଭାଷାରେ ଏହି ସବୁ ବେଦ ଲିଖିତ ହୋଇଅଛି ତାହା ବୈଦିକ ଭାଷା । ଏହି ବୈଦିକ ଭାଷା, ବର୍ତ୍ତମାନ ଚଳୁଥିବା ସଂସ୍କୃତ ଭାଷାର ପ୍ରାଥମିକ ରୂପ । କେବେ କେଉଁ ଲୋକମାନେ ପ୍ରଥମେ ଏ ଭାଷାର ଉଦ୍ଭାବନ କରିଥିଲେ ତାହା

Digitized by srujanika@gmail.com

ଜାଣିବାର ଉପାୟ ନାହିଁ, କିନ୍ତୁ ଏହା ଯେ ପୃଥିବୀର ଆଦିମ ଭାଷା ଏହା ନିଃସନ୍ଦେହ । ବର୍ତ୍ତମାନ ଯୁଗରେ ପାଶ୍ଚାତ୍ୟ ଦେଶ ମାନଙ୍କରେ ଯେଉଁମାନେ ଭାଷାତତ୍ତ୍ୱ ଆଲୋଚନା କରୁଅଛନ୍ତି ସେମାନେ ମୁକ୍ତ କଣ୍ଠରେ କହନ୍ତି ଯେ ଏକମାତ୍ର ସଂସ୍କୃତ ଭାଷାର ଅକ୍ଷର ସମୂହ ସଂପୂର୍ଣ୍ଣ ରୂପେ ମନୁଷ୍ୟର ସ୍ୱାଭାବିକ ସ୍ୱରର ଅଭିବ୍ୟଞ୍ଜକ, ଅନ୍ୟ ଭାଷା ମାନଙ୍କ ଅକ୍ଷରାବଳୀ କୃତ୍ରିମ । ସମାଜର ଆଦିମ ଅବସ୍ଥାରେ ଯେଉଁ ଅର୍ଯ୍ୟ ଋଷିମାନେ ତାହାର ଉଦ୍ଭାବନ କରିଥିଲେ ସେମାନେ ନିଶ୍ଚୟ ଏଥିପାଇଁ କୌଣସି ଆଧ୍ୟାତ୍ମିକ ପ୍ରେରଣା ପାଇଥିଲେ, ଅନ୍ୟଥା ଏପରି ଅକୃତ୍ରିମ ସ୍ୱାଭାବିକ ଭାଷାର ସୃଷ୍ଟି ହୋଇପାରି ନ ଥାନ୍ତା ।

ଏ ଭାଷାର ନାମ 'ସଂସ୍କୃତ', ସଂସ୍କୃତ ଶବ୍ଦର ମୌଳିକ ଅର୍ଥ ମାର୍ଜିତ ବା ସଂସ୍କାର ପ୍ରାପ୍ତ । ଏଥିରୁ ଜଣାଯାଉଅଛି ଯେ ଏ ଭାଷାର ଉଦ୍‌ଭାବନ ପୂର୍ବରୁ ଏ ଦେଶରେ ସାଧାରଣ ଲୋକ ସମାଜରେ ମନୋଗତଭାବ ବ୍ୟକ୍ତ କରିବାପାଇଁ ଅନ୍ୟ କୌଣସି ଭାଷା ପ୍ରଚଳିତ ଥିଲା । ସେହି ଭାଷାର ସଂସ୍କାର ବା ସମ୍ମାର୍ଜ୍ଜନ କରି ଯେଉଁ ନୂତନ ଭାଷାର ସୃଷ୍ଟି ହେଲା ତାହାର ନାମ ହେଲା 'ସଂସ୍କୃତ ଭାଷା' । ସଂସ୍କୃତ ଭାଷାର ଉତ୍ପତ୍ତି ପୂର୍ବରୁ ଯେଉଁଭାଷା ଏ ଦେଶରେ ଚଳୁଥିଲା, ସେ ଭାଷାକୁ ପ୍ରାକୃତ ଭାଷା କହନ୍ତି, ବର୍ତ୍ତମାନ ଭାରତରେ ଆଞ୍ଚଳିକ ଭାଷାରୂପେ ପ୍ରଚଳିତ ହିନ୍ଦୀ, ବଙ୍ଗଳା, ଓଡ଼ିଆ ପ୍ରଭୃତି ଭାଷାର ମୂଳ ଏହି ପ୍ରାକୃତ ଭାଷା, ପରବର୍ତ୍ତୀ କାଳରେ ଏହି ଆଞ୍ଚଳିକ ଭାଷା ମାନଙ୍କରେ ଭାବ ପ୍ରକାଶ ପାଇଁ ସଂସ୍କୃତ ଭାଷାରୁ ଶତ ଶତ ଶବ୍ଦ ଗୃହୀତ ହୋଇଅଛି ।

ସଂସ୍କୃତଭାଷା ଏ ଦେଶରେ କେବେ ସର୍ବସାଧାରଣଙ୍କର କଥୋପକଥନ ଭାଷା ଥିଲା କି ନାହିଁ—ଏ ବିଷୟରେ ପଣ୍ଡିତମାନଙ୍କ

Digitized by srujanika@gmail.com

ମଧ୍ୟରେ ମତଦ୍ୱୈଧ ଦେଖାଯାଏ । ଅତି ପ୍ରାଚୀନକାଳରେ ଲିଖିତ ସଂସ୍କୃତ ନାଟକ ମାନଙ୍କରେ ସ୍ତ୍ରୀ ଓ ଅଶିକ୍ଷିତ ଲୋକମାନେ ଯେଉଁ ଭାଷା ବ୍ୟବହାର କରିଅଛନ୍ତି, ତାହା ସଂସ୍କୃତ ନୁହେଁ—ପ୍ରାକୃତ ଅର୍ଥାତ୍ ମାଗାଧୀ ସୌରସେନୀ, ମହାରାଷ୍ଟ୍ରୀ, ଦ୍ରାବଡ଼ୀ, ଶାବରୀ ପ୍ରଭୃତି ଭାଷା । ତେଣୁ ସଂସ୍କୃତ ଯେ ସର୍ବସାଧାରଣଙ୍କର କଥୋପକଥନ ଭାଷା ନ ଥିଲା, ଏହା ସହଜରେ ଜଣାଯାଏ । ଦ୍ୱିତୀୟରେ ସଂସ୍କୃତ ବ୍ୟାକରଣ ଜୀବନ ଭାଷା । ବ୍ୟାକରଣ ନ ପଢ଼ି କୌଣସି ଲୋକ ସଂସ୍କୃତଭାଷାରେ କଥା କହି ପାରନ୍ତି ନାହିଁ । ସେ କାଳର ସାଧାରଣ ସ୍ତ୍ରୀ ଲୋକେ ଏବଂ ଅଶିକ୍ଷିତ ଗ୍ରାମ୍ୟଲୋକେ ବ୍ୟାକରଣ ପଢ଼ିବାର ବିଶ୍ୱାସ କରିଯାଇ ନ ପାରେ । ସେ ଯାହାହେଉ ସଂସ୍କୃତ ରାଜଭାଷା ଓ ଶିକ୍ଷିତଲୋକଙ୍କର ଜନ୍ମଭାବ ପ୍ରକାଶର ଯେ ଭାଷା ଥିଲା, ଏହା କେହି ଅସ୍ୱୀକାର କରି ପାରିବେ ନାହିଁ ।

## ବୈଦିକ ସାହିତ୍ୟ

ପୂର୍ବେ କୁହାଯାଇଅଛି ବେଦର ଭାଷା ପରବର୍ତ୍ତୀ କାଳର ସଂସ୍କୃତ ଭାଷାଠାରୁ ପୃଥକ୍ । ସମଗ୍ର ବୈଦିକ ସାହିତ୍ୟ ଏହି ବୈଦିକ ଭାଷାରେ ଲିଖିତ । ଏହି ସାହିତ୍ୟ ପ୍ରଧାନତଃ ଦୁଇ ଭାଗରେ ବିଭକ୍ତ । କର୍ମକାଣ୍ଡାତ୍ମକ ଓ ଜ୍ଞାନକାଣ୍ଡାତ୍ମକ । ପ୍ରଥମେ କର୍ମକାଣ୍ଡାତ୍ମକ ସାହିତ୍ୟର ଉତ୍ପତ୍ତି । ବେଦର ଏହି କର୍ମକାଣ୍ଡାତ୍ମକ ସାହିତ୍ୟ ସଂହିତା ଓ ବ୍ରାହ୍ମଣ ନାମରେ ଅଭିହିତ ହୁଏ । ଋଗ୍‌ବେଦହିଁ ଆଦିମ ବୈଦିକ ଗ୍ରନ୍ଥ, ଏହା ମନ୍ତ୍ରାତ୍ମକ । ଆର୍ଯ୍ୟଋଷିମାନେ ଅଗ୍ନି, ବାୟୁ, ଜଳ, ବୃଷ୍ଟି, ବିଦ୍ୟୁତ୍ ପ୍ରଭୃତି ପ୍ରାକୃତିକ ବସ୍ତୁ ନିଚୟର ବିଚିତ୍ର କାର୍ଯ୍ୟକଳାପ ଦେଖି ପ୍ରତ୍ୟେକଙ୍କୁ ବିଭିନ୍ନ ଦେବତାରୂପରେ ଉପାସନା କରିବା ପାଇଁ ଗମ୍ଭୀର ସମାଧି ସାଗରରେ ନିମଗ୍ନ ରହି ଯେଉଁ ସବୁ ମନ୍ତ୍ର ଦର୍ଶନ କରିଥିଲେ, ସେ ସମସ୍ତର ସମଷ୍ଟିହିଁ ବେଦ

Digitized by srujanika@gmail.com

ସଂହିତା, ଯେଉଁ ଅନାଦ୍ୟନ୍ତମୟ ଜ୍ୟୋତିର୍ମୟ ଚିତ୍‌ଶକ୍ତି ବିଶ୍ୱ-ବ୍ରହ୍ମାଣ୍ଡକୁ ବ୍ୟାପୀ ରହିଅଛି, ଏହି ଦେବତାମାନେ ଯେ ତାହାଙ୍କର ପ୍ରତୀକ, ଏହା ସେମାନେ ଉତ୍ତମ ରୂପେ ବୁଝି ପାରିଥିଲେ ଏହିସବୁ ମନ୍ତ୍ରପାଠଦ୍ୱାରା ଦେବତାମାନଙ୍କୁ ଆହ୍ୱାନ କରି ଯଜ୍ଞରେ ସେମାନଙ୍କ ଉଦ୍ଦେଶ୍ୟରେ ଆହୁତି ପ୍ରଦାନ କଲେ ସେମାନେ ସନ୍ତୁଷ୍ଟ ହୋଇ ଐହିକ ଓ ପାରତ୍ରିକ ସର୍ବବିଧ ସୁଖ ପ୍ରଦାନ କରନ୍ତି— ଏହାହିଁ ଭାରତୀୟ ଆର୍ଯ୍ୟ ଋଷିମାନଙ୍କର ଅଧମ ଧର୍ମ ବିଶ୍ୱାସ । ବେଦର ବ୍ରାହ୍ମଣ ଅଂଶ ଏହି ସଂହିତା ଅଂଶର ବିଶଦବ୍ୟାଖ୍ୟା । ସେଗୁଡ଼ିକ ଯଜ୍ଞର ବିସ୍ତୃତ ବର୍ଣ୍ଣନାରେ ପୂର୍ଣ୍ଣ, ଏହି ବର୍ଣ୍ଣନା ସଙ୍ଗରେ ବ୍ରାହ୍ମଣମାନଙ୍କରେ ଅନେକ ପ୍ରାଚୀନ ରାଜାଙ୍କର ତଥା ଋଷିଙ୍କର ଆଖ୍ୟାନ ଓ ବୈଦିକ ଶବ୍ଦମାନଙ୍କର ବ୍ୟୁତ୍ପତ୍ତି ମଧ୍ୟ ପ୍ରଦତ୍ତ ହୋଇଅଛି । ପରବର୍ତ୍ତୀ କାଳରେ ଶିକ୍ଷାକଳ୍ପ ପ୍ରଭୃତି ଯେଉଁ ବେଦାଙ୍ଗ ସାହିତ୍ୟ ଦ୍ୱାରା ଏହି ବୈଦିକ ସାହିତ୍ୟ ସମୃଦ୍ଧ ହୋଇଥିଲା, ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ ସେ ସମସ୍ତର ସୂଚନା ଅଛି । ଋକ୍, ଯଜୁଃ, ସାମ ଓ ଅଥର୍ବ ଚାରି ବେଦର ବ୍ରାହ୍ମଣ ଗ୍ରନ୍ଥ ଭିନ୍ନଭିନ୍ନ ଶୁକ୍ଳ ଯଜୁର୍ବେଦର ଅନ୍ତର୍ଗତ ଶତପଥ ବ୍ରାହ୍ମଣ ବିଖ୍ୟାତ ଗ୍ରନ୍ଥ । ଏକଶତ ଅଧ୍ୟାୟରେ ଏହି ଗ୍ରନ୍ଥ ପରିସମାପ୍ତ । ଋଗ୍‌ବେଦ ପରେ ଏହି ଶତପଥ ବ୍ରାହ୍ମଣହିଁ ବୈଦିକ ଗ୍ରନ୍ଥମାନଙ୍କ ମଧ୍ୟରେ ପ୍ରାମାଣିକ ଏବଂ ସୁପ୍ରସିଦ୍ଧ ଗ୍ରନ୍ଥ ।

**ଉପନିଷଦ**—ସଂହିତା ଓ ବ୍ରାହ୍ମଣ ଯୁଗ ଶେଷରେ ଉପନିଷଦ ଯୁଗର ଆରମ୍ଭ । ସେ ଯୁଗରେ ଏପରି ଅନେକ ମୁନି ଋଷି ଥିଲେ, ଯେଉଁମାନେ ଯଜ୍ଞୀୟ କ୍ରିୟାକାଣ୍ଡାତ୍ମକ ବ୍ୟାପାରରେ ଆତ୍ମସନ୍ତୋଷ ଲାଭ କରି ନ ପାରି ସତ୍ୟର ଆଲୋକ ଲାଭ କରିବା ପାଇଁ ଗଭୀର ସମାଧି ସାଗରରେ ଅଭିନିବିଷ୍ଟ ରହିଲେ । ଉପନିଷଦ୍‌ମାନ ଏହି ଗଭୀର ସମାଧି ସାଗରରୁ ଲବ୍ଧ ସମୁଜ୍ଜ୍ୱଳ ରତ୍ନାବଳୀ । ଯେଉଁ

Digitized by srujanika@gmail.com

ଆଧ୍ୟାତ୍ମିକତା ପାଇଁ ଭାରତ ଆଜି ପୃଥିବୀରେ ବିଖ୍ୟାତ, ଉପନିଷଦ୍ ଗୁଡ଼ିକ ସେହି ଆଧ୍ୟାତ୍ମିକତାରହିଁ ଆଲୋଚନା । ବହୁଶତାବ୍ଦୀ ଯାଏ ଏହି ଆଲୋଚନା ଏ ଦେଶରେ ଚାଲିଥିଲା । କର୍ମକାଣ୍ଡାତ୍ମକ ବୈଦିକ ଯୁଗ ଶେଷରେ ଏହିସବୁ ଉପନିଷଦ ପ୍ରଣୀତ ହୋଇଥିବାରୁ ଏମାନଙ୍କୁ 'ବେଦାନ୍ତ' କୁହାଯାଏ । ଭିନ୍ନ ଭିନ୍ନ ଋଷି ବିଭିନ୍ନ ସମୟରେ ଏହିସବୁ ଆଧ୍ୟାତ୍ମିକ ତତ୍ତ୍ୱ ଅନ୍ୱେଷଣ କରିଥିଲେ ଏବଂ ପରମ ସତ୍ୟ ସ୍ୱରୂପ ବିଶ୍ୱବ୍ରହ୍ମାଣ୍ଡବ୍ୟାପୀ ଏକମାତ୍ର ପରବ୍ରହ୍ମଙ୍କର ଅସ୍ତିତ୍ୱ ସମ୍ବନ୍ଧରେ ନାନା ପ୍ରକାରେ ଉପନୀତ ହୋଇଥିଲେ, ପରବର୍ତ୍ତୀ କାଳରେ ମହର୍ଷି ବାଦରାୟଣ ସମଗ୍ର ଉପନିଷଦର ଆଲୋଚନା କରି ସେମାନଙ୍କ ମଧ୍ୟରେ ସମନ୍ୱୟ ଆଣିବାପାଇଁ 'ବେଦାନ୍ତଦର୍ପଣ' ବା 'ବ୍ରହ୍ମସୂତ୍ର' ନାମକ ପ୍ରସିଦ୍ଧ ଦର୍ଶନଶାସ୍ତ୍ର ପ୍ରଣୟନ କଲେ । ଆଚାର୍ଯ୍ୟ ଶଙ୍କର, ରାମାନୁଜପ୍ରମୁଖ ମନୀଷୀମାନେ ଯେଉଁ ଆଧ୍ୟାତ୍ମିକ ସତ୍ୟ ପ୍ରଚାର କରି ଆଧ୍ୟାତ୍ମିକ ରାଜ୍ୟରେ ଅମୃତସନ୍ତାନରୂପେ ପରିଚିତ ହୋଇ ରହିଅଛନ୍ତି, ଏହି ଉପନିଷଦର ବାକ୍ୟାବଳୀକୁ ସେମାନେ ଆପ୍ତବାକ୍ୟ ବା ଅଭ୍ରାନ୍ତ ସତ୍ୟରୂପେ ଗ୍ରହଣ କରିଅଛନ୍ତି । ଏହି ମନ୍ତ୍ରାବଳୀ ଶ୍ରୁତି ନାମରେ ପ୍ରସିଦ୍ଧ । ଏହି ଉପନିଷଦମାନହିଁ ଭାରତୀୟ ଷଡ୍‌ଦର୍ଶନର ଭିତ୍ତିଭୂମି । ଭାରତୀୟ ଧର୍ମଗ୍ରନ୍ଥମାନଙ୍କର ଅନ୍ୟତମ ସମୁଜ୍ଜ୍ୱଳ ରତ୍ନ ଶ୍ରୀମଦ୍‌ଗୀତା । ଏହିସବୁ ଉପନିଷଦର ସାରସଂକଳନ । ଏହିହେତୁରୁ ଉପନିଷଦ୍, ଶ୍ରୀମଦ୍‌ଭଗବଦ୍‌ଗୀତା ଓ ବେଦାନ୍ତଦର୍ପଣ—ଏହି ତିନିଖଣ୍ଡି ଗ୍ରନ୍ଥ, ପ୍ରସ୍ଥାନତ୍ରୟୀ ନାମରେ ଖ୍ୟାତ । ଅମୃତପଦାଭିଳାଷୀ ସଂସାର ସମୁଦ୍ରଯାତ୍ରୀମାନେ ପ୍ରସ୍ଥାନତ୍ରୟୀ ମଧ୍ୟରୁ ଯେକୌଣସିଟିକୁ ଦୀପ ସ୍ତମ୍ଭରୂପେ ଗ୍ରହଣ କରି ପ୍ରସ୍ଥାନ କରନ୍ତି ବୋଲି—ତାହାର ଏହିପରି ନାମକରଣ ।

Digitized by srujanika@gmail.com

ମୁକ୍ତିକୋପନିଷଦରେ ଉପନିଷଦ ସଂଖ୍ୟା ୧୦୮ ବୋଲି ଲିଖିତ ହୋଇଅଛି । ଏସବୁ ମଧ୍ୟରୁ ଅନେକ ଯେ ଅର୍ବାଚୀନ—ଏହା ନିଃସନ୍ଦେହ । ଶଙ୍କରାଚାର୍ଯ୍ୟ ପ୍ରମୁଖ ମନୀଷୀମାନେ ଏହିସବୁ ଉପନିଷଦ୍‌ମାନଙ୍କ ମଧ୍ୟରୁ ୧୧ଟି ଉପନିଷଦକୁ ପ୍ରାଚୀନ ପ୍ରାମାଣିକ ଶ୍ରୁତିରୂପେ ଗ୍ରହଣ କରି ଅଛନ୍ତି । ସେମାନଙ୍କର ନାମ—

(୧) ଈଶ (୨) କେନ (୩) କଠ, (୪) ପ୍ରଶ୍ନ (୫) ମୁଣ୍ଡକ (୬) ମାଣ୍ଡୁକ୍ୟ (୭) ତୈତ୍ତିରୀୟ (୮) ଐତରେୟ (୯) ଛାନ୍ଦୋଗ୍ୟ (୧୦) ବୃହଦାରଣ୍ୟକ (୧୧) ଶ୍ୱେତାଶ୍ୱତର ।

ପରବ୍ରହ୍ମଙ୍କମାନ ଜଡ଼ଜଗତ୍ ଯେଉଁସବୁ ଉପାଦାନରେ ସୃଷ୍ଟ ଏହି ଭୌତିକଜୀବ ଶରୀର ସେହି ଏକ ଉପାଦାନରେ ରଚିତ ହୋଇଅଛି । ଶରୀରସ୍ଥ ଜୀବାତ୍ମା ବିଶ୍ୱବ୍ୟାପୀ ଅକ୍ଷର ପରମାତ୍ମାଙ୍କର ଅଂଶମାତ୍ର । ଏହି ସତ୍ୟକୁ ବ୍ରହ୍ମବାଦୀ ଋଷିମାନେ ନାନାଭାବରେ ଉପନିଷଦମାନଙ୍କରେ ବ୍ୟାଖ୍ୟା କରି ଅଛନ୍ତି । କଠୋପନିଷଦରେ ଶାରୀରିକତତ୍ତ୍ୱ ସମ୍ବନ୍ଧ ଗୋଟିଏ ମନୋହର ରୂପକରେ ଏହିପରି ବର୍ଣ୍ଣିତ ହୋଇଅଛି—

ଆତ୍ମାନଂ ରଥିନଂ ବିଦ୍ଧି ଶରୀରଂ ରଥମେବତୁ,
ବୁଦ୍ଧିଂ ତୁ ସାରଥିଂ ବିଦ୍ଧି ମନଃପ୍ରଗ୍ରହମେବଚ ।
ଇନ୍ଦ୍ରିୟାଣି ହୟାନାହୁ ର୍ବିଷୟାନ୍‌ତେଷୁ ଗୋଚରାନ୍,
ଆତ୍ମେନ୍ଦ୍ରିୟ ମନୋଯୁକ୍ତଂ ଭୋକ୍ତେତ୍ୟାହୁର୍ମନୀଷିଣଃ । ୨।୩

"ଏ ଶରୀର ଗୋଟିଏ ରଥ, ଆତ୍ମା ଏହି ରଥର ସ୍ୱାମୀ, ବୁଦ୍ଧି ସାରଥି, ମନ ପ୍ରଗ୍ରହ ଅର୍ଥାତ୍ ଲଗାମ, ଇନ୍ଦ୍ରିୟମାନେ ଅଶ୍ୱ, ବିଷୟ ରୂପ ମାର୍ଗରେ ଏମାନେ ବିଚରଣ କରନ୍ତି, ଯେପରି ଦୁଷ୍ଟ ଅଶ୍ୱମାନେ ସାରଥିର ଶାସନ ଲଙ୍ଘନ କରି ବିପଥରେ ଯାଇ ନଷ୍ଟ ହୁଅନ୍ତି, ସେହିପରି ବୁଦ୍ଧିର ଶାସନ ଲଙ୍ଘନ କରି ଇନ୍ଦ୍ରିୟମାନେ ବିପଥଗାମୀ

Digitized by srujanika@gmail.com

କହିଲେ ଶବ୍ଦର ଦୁଷ୍ଟ ହୋଇଯାଏ । ଅର୍ଥଋଷିମାନେ ଅଧୁର ମଧ୍ୟ କହିଅଛନ୍ତି, ଅଧ୍ୟାତ୍ମମାର୍ଗ ବଡ଼ ଦୁରୁହ । ଅତି ସାବଧାନତା ସହ ତହିଁରେ ଗମନ ନ କଲେ ବିପଦ ସୁନିଶ୍ଚିତ, ତେଣୁ ଋଷି ଗାନ କରିଅଛନ୍ତି:—

'ଉତ୍ତିଷ୍ଠତ, ଜାଗ୍ରତ, ପ୍ରାପ୍ୟ ବରାନ୍ ନିବୋଧତ,
କ୍ଷୁରସ୍ୟ ଧାରାନିଶିତା ଦୁରତ୍ୟୟା ଦୁର୍ଗଂ ପଥସ୍ତତ୍ କବୟୋ ବଦନ୍ତି ।

ଆମ୍ଭେମାନେ ବିଶ୍ୱାସ କରୁଁ ଋଷିମାନେ ମନ୍ତ୍ରର ଦ୍ରଷ୍ଟା, ମନ୍ତ୍ରର କର୍ତ୍ତା ନୁହନ୍ତି, ଉପନିଷଦମାନ ଯେହ୍ନ ମନ୍ତ୍ରାତ୍ମକ, କେତେକ ଉପନିଷଦର ଭାଷା ପଦ୍ୟାତ୍ମକ, କେତେକର ଭାଷା ଗଦ୍ୟାତ୍ମକ ଏବଂ କେତେକର ଭାଷା ଗଦ୍ୟ ପଦ୍ୟାତ୍ମକ । ଭିନ୍ନଭିନ୍ନ ବେଦର ଉପନିଷଦ ଭିନ୍ନଭିନ୍ନ । ଋଗ୍‌ବେଦର ମନ୍ତ୍ରଗୁଡ଼ିକ ସାମବେଦରେ ସମ୍ପୂର୍ଣ୍ଣ ରୂପେ ଗୃହୀତ ହୋଇଅଛି । ସୁସ୍ୱରରେ ଗାନ କରିବା ହିଁ ସାମବେଦର କାର୍ଯ୍ୟ । ଯଜୁର୍ବେଦ ଗଦ୍ୟାତ୍ମକ ।

## ବେଦାଙ୍ଗ ସାହିତ୍ୟ—

ବେଦକୁ ଶ୍ରୁତ କୁହାଯାଏ । ଅାଦ୍ୟମ ଅବସ୍ଥାରେ ଲିଖନ-ପ୍ରଣାଳୀର ସୃଷ୍ଟି ହୋଇ ନଥିଲା, ଶୁଣି ଶୁଣି ବୈଦିକ ମନ୍ତ୍ର ସବୁକୁ ସ୍ମରଣ ରଖୁଥିଲେ, ତେଣୁ ବେଦର ନାମ 'ଶ୍ରୁତି' । ସଂହିତା, ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦମାନଙ୍କରେ ଯେଉଁ ସାହିତ୍ୟିକ ଯୁଗ ଏ ଦେଶରେ ଆରମ୍ଭ ହୋଇଥିଲା, ତାହା ସ୍ମୃତି, ସାହିତ୍ୟ ଯୁଗନାମରେ ପରିଚିତ । ଏହି ଯୁଗରେ ବେଦାଙ୍ଗସାହିତ୍ୟ ମାନଙ୍କର ଉତ୍ପତ୍ତି । ବେଦର ଅର୍ଥ ତଥା ଉଚ୍ଚାରଣକୁ ଅବିକୃତ ରଖିବା ହିଁ ଏହି ସମସ୍ତ ବେଦାଙ୍ଗର ଉଦ୍ଦେଶ୍ୟ । ବେଦାଙ୍ଗ ଛଅଗୋଟି—(୧) ଶିକ୍ଷା (୨) କଳ୍ପ (୩) ବ୍ୟାକରଣ (୪) ନିରୁକ୍ତ (୫) ଛନ୍ଦଃ (୬) ଜ୍ୟୋତିଷ ।

Digitized by srujanika@gmail.com

ଉପଯୁକ୍ତ ସ୍ୱରରେ ଗୀତ ନ ହେଲେ ବୈଦିକ ମନ୍ତ୍ରମାନ ଠିକ୍ ଅର୍ଥ ପ୍ରକାଶ କରେନାହିଁ । ଏହି ସ୍ୱର ଜ୍ଞାନ ବୈଦିକ-ମନ୍ତ୍ରର ଗୋଟିଏ ବଶିଷ୍ଟ ଅଙ୍ଗ । ସ୍ୱରଜ୍ଞାନ ଦେବାପାଇଁ ଏହି 'ଶିକ୍ଷା' ଶାସ୍ତ୍ର ପ୍ରଣୀତ ହୋଇଅଛି । ପ୍ରତ୍ୟେକ ବେଦର 'ଶିକ୍ଷା' ଗ୍ରନ୍ଥ ଭିନ୍ନ ଭିନ୍ନ, ପରବର୍ତ୍ତୀକାଳରେ ପାଣିନୀୟ ବ୍ୟାକରଣରେ ମଧ୍ୟ 'ଶିକ୍ଷା' ଗୋଟିଏ ବଶିଷ୍ଟ ଅଙ୍ଗ ।

କଳ୍ପସୂତ୍ର ବେଦାଙ୍ଗ ସାହିତ୍ୟର ଗୋଟିଏ ବଶିଷ୍ଟ ଅଙ୍ଗ । ବୈଦିକ ଯାଗ-ଯଜ୍ଞର ରୀତି ଓ ପ୍ରକ୍ରିୟାର ଆଲୋଚନା ନିମିତ୍ତ ଏହାର ଉତ୍ପତ୍ତି । କଳ୍ପସୂତ୍ର ସାଧାରଣତଃ ଦୁଇ ଭାଗରେ ବିଭକ୍ତ । ଶ୍ରୌତସୂତ୍ର ଓ ସ୍ମାର୍ତ୍ତସୂତ୍ର । ଶ୍ରୌତସୂତ୍ରରେ ଆହବନୀୟ, ଗାର୍ହପତ୍ୟ, ଓ ଦକ୍ଷିଣ—ଏହି ତିବିଧ ଅଗ୍ନିର ଆଧାନ ଓ ବିଭିନ୍ନ ଯଜ୍ଞର ବିଧି ବ୍ୟବସ୍ଥା ବର୍ଣ୍ଣିତ ହୋଇଅଛି । ସ୍ମାର୍ତ୍ତସୂତ୍ର ଦ୍ୱିବିଧ—ଗୃହ୍ୟସୂତ୍ର ଏବଂ ଧର୍ମସୂତ୍ର । ଗୃହ୍ୟସୂତ୍ରରେ ଆର୍ଯ୍ୟ ଗୃହସ୍ଥ ମାନଙ୍କର ନିତ୍ୟ କର୍ତ୍ତବ୍ୟ କର୍ମ ଗୁଡ଼ିକର ବିସ୍ତାରିତ ବିଧି ବିଶେଷତଃ ଉପନୟନ, ବିବାହ ସଂସ୍କାରର ବିସ୍ତାରିତ ବିବରଣ ଦିଆଯାଇ ଅଛି । କଳ୍ପସୂତ୍ର ପଢ଼ିଲେ ପ୍ରାଚୀନ ଆର୍ଯ୍ୟ ଭାରତର ସାମାଜିକ ଜୀବନର ପୂର୍ଣ୍ଣ ପରିଚୟ ମିଳେ । ଧର୍ମସୂତ୍ର ଗୃହ୍ୟସୂତ୍ର ସଙ୍ଗେ ସଂଶ୍ଳିଷ୍ଟ । କି ଭାବରେ ପ୍ରାଚୀନ ଭାରତୀୟମାନେ ଧର୍ମମୟ ଜୀବନ ଯାପନ କରୁଥିଲେ, ଏହାର ଚିତ୍ର ଧର୍ମ ସୂତ୍ରରୁ ଜଣାଯାଏ । ବ୍ରାହ୍ମଣାଦି ଚାରିବର୍ଣ୍ଣ ଏବଂ ବ୍ରହ୍ମଚର୍ଯ୍ୟାଦି ଚାରି ଆଶ୍ରମର ପ୍ରୟୋଜନୀୟତା ଓ ପ୍ରତ୍ୟେକର କର୍ତ୍ତବ୍ୟ ଏଥିରେ ସୁନ୍ଦର ରୂପେ ଆଲୋଚିତ ହୋଇଅଛି । ପରବର୍ତ୍ତୀ କାଳରେ ମନୁ ପରାଶର ପ୍ରଭୃତି ଆର୍ଯ୍ୟ ଋଷିମାନେ ଯେଉଁ ସ୍ମୃତି ଗ୍ରନ୍ଥମାନ ପ୍ରଣୟନ କରି ଆର୍ଯ୍ୟମାନଙ୍କର ଜାତୀୟତାକୁ ଅଦ୍ୟାଏ ଶୃଙ୍ଖଳିତ ଓ ନିୟନ୍ତ୍ରିତ କରି ରଖି ଅଛନ୍ତି—ଏହି ଧର୍ମସୂତ୍ରହିଁ ସେ ସବୁ ସ୍ମୃତି ସଂହିତା

Digitized by srujanika@gmail.com

ମାନଙ୍କର ଅଧ୍ୟମନ୍ତ୍ରଃ । ପ୍ରତ୍ୟେକ ବେଦର କଳ୍ପସୂତ୍ର ଅଛି ଏବଂ ପ୍ରତ୍ୟେକ କଳ୍ପସୂତ୍ର ଭିନ୍ନ ବିଷୟର ଆଲୋଚନାରେ ପରିପୂର୍ଣ୍ଣ ।

ବେଦୋକ୍ତ ମନ୍ତ୍ରମାନଙ୍କର ପ୍ରକୃତ ତାତ୍ପର୍ଯ୍ୟ ବୁଝିବା ପାଇଁ ବେଦାଙ୍ଗ-ବ୍ୟାକରଣର ଉତ୍ପତ୍ତି । ଏହି ବୈଦିକ ବ୍ୟାକରଣକୁ ଭିତ୍ତିଭୂମିରୂପେ ଗ୍ରହଣ କରି ମହର୍ଷି ପାଣିନି ପରବର୍ତ୍ତୀ କାଳରେ ସଂସ୍କୃତ ଭାଷାର ଯେଉଁ ବ୍ୟାକରଣ ରଚନା କରିଥିଲେ ତାହା 'ଅଷ୍ଟାଧ୍ୟାୟୀ' ନାମରେ ପ୍ରସିଦ୍ଧ । ପାଣିନିଙ୍କ ପୂର୍ବରୁ ଗାର୍ଗ୍ୟ, ସ୍ଫୋଟାୟନ, ଶାକଟାୟନ, ଭରଦ୍ୱାଜ ପ୍ରଭୃତି ଯେ ବ୍ୟାକରଣ ଲେଖିଥିଲେ ତାହା ପାଣିନିଙ୍କ ଅଷ୍ଟାଧ୍ୟାୟୀ ପାଠରୁ ସ୍ପଷ୍ଟ ଜଣାଯାଏ ।

ବୈଦିକ ଶବ୍ଦମାନଙ୍କର ବ୍ୟୁତ୍ପତ୍ତି ନିର୍ଣ୍ଣୟ କରିବା ପାଇଁ 'ନିଘଣ୍ଟୁ' ନାମକ ଗ୍ରନ୍ଥ ଅତି ପ୍ରାଚୀନ କାଳରେ ରଚିତ ହୋଇଥିଲା, ମହର୍ଷି ଏହି ନିଘଣ୍ଟୁ ଉପରେ ଯେଉଁ ଭାଷ୍ୟ ରଚନା କଲେ, ତାହାକୁ ନିରୁକ୍ତ କୁହାଯାଏ । ନିଘଣ୍ଟୁ ବୈଦିକ ଶବ୍ଦାବଳୀର ଏକପ୍ରକାର କୋଷ ଗ୍ରନ୍ଥ । ପାଣିନିଙ୍କ ଅଷ୍ଟାଧ୍ୟାୟୀ ରଚନାର ପ୍ରାୟ ୪୦୦ ବର୍ଷ ପୂର୍ବେ ଯାସ୍କ ନିରୁକ୍ତ ଗ୍ରନ୍ଥ ରଚନା କରିଥିଲେ ବୋଲି ଏ ଯୁଗର ପଣ୍ଡିତମାନେ ନିର୍ଣ୍ଣୟ କରି ଅଛନ୍ତି ।

ପ୍ରତ୍ୟେକ ବେଦମନ୍ତ୍ର ଛନ୍ଦୋବଦ୍ଧ, ଛନ୍ଦଜ୍ଞାନ ବ୍ୟତୀତ ବୈଦିକ ମନ୍ତ୍ର ମାନଙ୍କର ସୁସ୍ପଷ୍ଟ ଉଚ୍ଚାରଣ ହୋଇ ପାରେ ନାହିଁ । ଶୌନକ ବିରଚିତ ଋକ୍ ପ୍ରାତିଶାଖ୍ୟ ଶେଷରେ ଛନ୍ଦମାନଙ୍କର ଯଥାଯଥ ବର୍ଣ୍ଣନା ଅଛି । ପରବର୍ତ୍ତୀ କାଳରେ ପିଙ୍ଗଳ ନାମକ ଅଗ୍ରଣୀ ବେଦରେ ଏବଂ ସଂସ୍କୃତରେ ପ୍ରଚଳିତ ଛନ୍ଦମାନଙ୍କର ଯଥାଯଥ ଆଲୋଚନା କରି ଅଛନ୍ତି ।

ବୈଦିକ ଯଜ୍ଞ ନିର୍ଦ୍ଦିଷ୍ଟ କାଳରେ ସମ୍ପାଦିତ ହେଉଥିଲା ଜ୍ୟୋତିଷତତ୍ତ୍ୱ ଜ୍ଞାନ ଯଜ୍ଞକ୍ରିୟା ସମ୍ପାଦନର ମୂଳ, ତେଣୁ ବୈଦିକ

Digitized by srujanika@gmail.com

ଯୁଗରୁ ଏ ଦେଶରେ ଜ୍ୟୋତିଃଶାସ୍ତ୍ରର ଆଲୋଚନା ହୋଇଥିଲା । ଆର୍ଯ୍ୟଭଟ୍ଟ ଓ ବରାହମିହିର ପ୍ରମୁଖ ମନୀଷୀମାନେ ପରବର୍ତ୍ତୀ କାଳରେ ଏହି ବୈଦିକ ଜ୍ୟୋତିତତ୍ତ୍ୱ ମାନଙ୍କୁ ମୂଳ ସୂତ୍ରରୂପେ ଗ୍ରହଣ କରି ଯେଉଁ ଭାରତୀୟ ଜ୍ୟୋତିଃଶାସ୍ତ୍ର ସବୁ ପ୍ରଣୟନ କରିଥିଲେ ସେ ସବୁ ପୃଥିବୀରେ ନବଯୁଗର ବିଜ୍ଞାନ ବର୍ତ୍ତିକାରୂପେ ଅଦ୍ୟାପି ଆଦୃତ ହେଉଅଛି ।

ବହୁ ବିସ୍ତୃତ ବୈଦିକ ସାହିତ୍ୟର ଆଲୋଚନା କଲେ ଗୋଟିଏ ବିଶାଳ ଗ୍ରନ୍ଥ ହେବ । ଅତି ସଂକ୍ଷେପରେ ସେ ସବୁର ସୂଚନା ମାତ୍ର ପ୍ରଦତ୍ତ ହେଲା ।

## ଆର୍ଷ ବାକ୍ୟ

ପୂର୍ବେ କୁହାଯାଇଅଛି ଯେ ବୈଦିକ ସାହିତ୍ୟର ଭାଷା ପରବର୍ତ୍ତୀ କାଳର ସଂସ୍କୃତ ସାହିତ୍ୟ ଭାଷାଠାରୁ ପୃଥକ୍ । ଏ ଯୁଗର କୌଣସି କୌଣସି ପଣ୍ଡିତ ବେଦ ସମୂହର ରଚନାକୁ ବୈଦିକ ସଂସ୍କୃତ ଓ ପରବର୍ତ୍ତୀ ରଚନାକୁ ଲୌକିକ ସଂସ୍କୃତ ନାମରେ ଅଭିହିତ କରିଅଛନ୍ତି । ବୈଦିକ ସାହିତ୍ୟ ପରେ ଅନ୍ୟ ଯେଉଁସବୁ ସଂସ୍କୃତ ସାହିତ୍ୟ ଆମ୍ଭମାନଙ୍କ ଦୃଷ୍ଟିରେ ପଡ଼େ, ସେ ସବୁର ଭାଷା ବୈଦିକ ସାହିତ୍ୟର ଭାଷା ଠାରୁ ନାନା ଭାବରେ ପୃଥକ୍ । ଏହି ଭାଷାର ସାହିତ୍ୟମାନଙ୍କ ମଧ୍ୟରେ ରାମାୟଣ ମହାଭାରତ ଓ ବିଭିନ୍ନ ପୁରାଣ ପ୍ରଧାନ । ପାଣିନିଙ୍କ ଅଷ୍ଟାଧ୍ୟାୟୀ ଏହିସବୁ ଆର୍ଷ ବାକ୍ୟ ମାନଙ୍କ ରଚନା ପରେ ପ୍ରଣୀତ ହୋଇଥିଲା । ତେଣୁ ରାମାୟଣ ଓ ମହାଭାରତରେ ଯେଉଁସବୁ ପ୍ରୟୋଗ ପାଣିନୀୟ ବ୍ୟାକରଣ ନିୟମରୁ ବହିର୍ଭୂତ, ସେ ସବୁ ଆର୍ଷ ପ୍ରୟୋଗ ରୂପେ ଗ୍ରହଣ କରାଯାଇଅଛି ।

ବୈଦିକ ସାହିତ୍ୟରେ ଧର୍ମହିଁ ମୁଖ୍ୟ ଆଲୋଚନୀୟ ବିଷୟ । ଯାଗ ଯଜ୍ଞର ଅନୁଷ୍ଠାନ ଓ ଦେବତାମାନଙ୍କର ସ୍ତୁତି ବୈଦିକ

Digitized by srujanika@gmail.com

ସାହିତ୍ୟର ପ୍ରଧାନ ଅଙ୍ଗ । ମାତ୍ର ଲୌକିକ ସାହିତ୍ୟର ବିଷୟବସ୍ତୁ ଏଥିରୁ ସମ୍ପୂର୍ଣ୍ଣ ପୃଥକ୍ । ମହର୍ଷି ବାଲ୍ମୀକିଙ୍କ ପ୍ରଣୀତ ରାମାୟଣ, ଲୌକିକ ସଂସ୍କୃତ ସାହିତ୍ୟର ଆଦିମ ମହାକାବ୍ୟ । ଏହାର ପ୍ରଥମ ଅଧ୍ୟାୟରେ ମହର୍ଷି ସମଗ୍ର ରାମାୟଣର ଯେଉଁ ସୂଚୀ ପ୍ରଦାନ କରି ଅଛନ୍ତି ତହିଁରୁ ଜଣାଯାଏ ଯେ ରାମଙ୍କ ଜୀବଦ୍ଦଶାରେ ଏ ଗ୍ରନ୍ଥ ରଚିତ ହୋଇଥିଲା । ଦେବର୍ଷି ନାରଦ ରାମଙ୍କର ଆଦର୍ଶ ଗୁଣାବଳୀ ବର୍ଣ୍ଣନା କରିବା ପ୍ରସଙ୍ଗରେ ବାଲ୍ମୀକିଙ୍କୁ ଯେଉଁ ସବୁ ଉପଦେଶ ଦେଇ ଅଛନ୍ତି, ତାହାର ଶେଷାଂଶରେ ପ୍ରଯୁକ୍ତ କ୍ରିୟାଗୁଡ଼ିକ ଭବିଷ୍ୟତ୍ କାଳ ଦ୍ୟୋତକ । ଏଥିରୁ ଜଣାଯାଏ ଲଙ୍କାରୁ ଫେରି ଆସିବା ପରେ ଶ୍ରୀରାମଙ୍କ ଜୀବଦ୍ଦଶାରେହିଁ ବାଲ୍ମୀକି ରାମାୟଣ ରଚନା କରିଥିଲେ । ଉତ୍ତର କାଣ୍ଡରେ ସୀତା ବନବାସନ ରୂପ ଯେଉଁ ଘଟନା ବର୍ଣ୍ଣିତ ହୋଇଅଛି ପ୍ରଥମ ଅଧ୍ୟାୟର ବିଷୟ ସୂଚୀରେ ତାହାର ଆଦୌ ସୂଚନା ନାହିଁ । ତେଣୁ ଉତ୍ତରକାଣ୍ଡ ପରବର୍ତ୍ତୀ କାଳର ପ୍ରକ୍ଷିପ୍ତ ବୋଲି ଅନେକ ଲୋକ ବିଶ୍ୱାସ କରନ୍ତି । ଦ୍ୱିତୀୟତଃ ପ୍ରଥମ ଅଧ୍ୟାୟରେ ଦେବର୍ଷି ବାଲ୍ମୀକିଙ୍କ ନିକଟରେ ରାମଙ୍କୁ ସର୍ବଗୁଣ ସମ୍ପନ୍ନ ଆଦର୍ଶ ମନୁଷ୍ୟରୂପହିଁ ପ୍ରଦାନ କରିଅଛନ୍ତି । ଭଗବାନ୍ ବିଷ୍ଣୁ ରାକ୍ଷସମାନଙ୍କୁ ବିନାଶ କରିବା ପାଇଁ ରାମଚନ୍ଦ୍ରରୂପେ ଜନ୍ମ ଗ୍ରହଣ କରିଥିଲେ—ଏହା ପରବର୍ତ୍ତୀକାଳର କଳ୍ପନା । ରାମାୟଣର ପ୍ରଥମ ଅଧ୍ୟାୟରେ ଏ ପ୍ରସଙ୍ଗ ଆଦୌ ନାହିଁ, ତେଣୁ ଏଯୁଗର ପଣ୍ଡିତମାନେ ନାନାଭାବରେ ଆଲୋଚନା କରି ନିର୍ଣ୍ଣୟ କରି ଅଛନ୍ତି ଯେ ରାମାୟଣର କେତେକ ଅଂଶ ବାଲ୍ମୀକିଙ୍କ ଲେଖନୀ ପ୍ରସୂତ ନୁହେ, ପ୍ରକ୍ଷିପ୍ତ । ବୌଦ୍ଧଧର୍ମ ଗ୍ରନ୍ଥମାନଙ୍କରେ ରାମଚନ୍ଦ୍ରଙ୍କର ଆଦର୍ଶ ଚରିତ୍ର ନାନାଭାବରେ ଚିତ୍ରିତ ହୋଇଅଛି । ଏଥିରୁ ଜଣାଯାଏ ରାମାୟଣ ବୁଦ୍ଧଦେବଙ୍କ ଜନ୍ମର ପୂର୍ବବର୍ତ୍ତୀ ଘଟଣା । ଏହିସବୁ ଆଲୋଚନାରୁ

Digitized by srujanika@gmail.com

ପଣ୍ଡିତମାନେ ସ୍ଥିର କରିଅଛନ୍ତି ଯେ ବୁଦ୍ଧଙ୍କ ଜନ୍ମ ପୂର୍ବେ ଅର୍ଥାତ୍ ଖ୍ରୀଷ୍ଟ ଜନ୍ମର ଅନ୍ତତଃ ୭୦୦ ବର୍ଷ ଆଗେ ରାମାୟଣ ରଚିତ ହୋଇଥିଲା ।

ମହର୍ଷି ବାଲ୍ମୀକି ରାମାୟଣରେ ଯେଉଁ ବକ୍ଷ୍ୟବସ୍ତୁ ପ୍ରଦାନ କରିଅଛନ୍ତି ତାହା ଆର୍ଯ୍ୟ ଭାରତର ଆଦିମ ଗୃହସ୍ଥଜୀବନର ଗୋଟିଏ ଆଦର୍ଶ ଚିତ୍ର । ଆଦର୍ଶ ପିତା, ଆଦର୍ଶ ଭ୍ରାତା, ଆଦର୍ଶ ପୁତ୍ର ଓ ଆଦର୍ଶ ସ୍ତ୍ରୀର ଏପରି ମନୋହର ସ୍ୱାଭାବିକ ଚିତ୍ରଜଗତର ଅନ୍ୟ ସାହିତ୍ୟରେ ଦୁର୍ଲ୍ଲଭ । ବିଶାଳ ଆର୍ଯ୍ୟ ଭାରତ ଏହି ଆଦର୍ଶଦ୍ୱାରା ଏହି ଦୀର୍ଘ ୩ ସହସ୍ର ବର୍ଷ ପ୍ରଭାବିତ ହୋଇ ଆସୁଅଛି । ଲଙ୍କା ଯୁଦ୍ଧର ଚିତ୍ର ଏଥିରେ ପ୍ରଦତ୍ତ ହୋଇଥିଲେହେଁ, ଏହା ବୀରରସାତ୍ମକ କାବ୍ୟ ନୁହେ, କରୁଣରସହିଁ ଏହାର ମୁଖ୍ୟ ଉପଜୀବ୍ୟରସ । ରାମାୟଣର ପ୍ରକୃତି ବର୍ଣ୍ଣନ ଓ ଚରିତ୍ର ଚିତ୍ରଣକୁ ପରବର୍ତ୍ତୀ କାଳର କାଳିଦାସ ଭବଭୂତି କବିମାନେ ଗ୍ରହଣ କରି ଜଗତରେ ମହା କବି ରୂପରେ ପରିଚିତ ହୋଇ ଅଛନ୍ତି । ତେଣୁ ମହାକବି ବାଲ୍ମୀକିହିଁ ଭାରତରେ କବି ଗୁରୁରୂପେ ପରିଚିତ ।

ରାମାୟଣ ରଚନା ପରେ ମହାଭାରତ ରଚିତ ହୋଇଥିଲା । ଏହି ଧାରଣା ଆମ୍ଭମାନଙ୍କ ମଧ୍ୟରେ ପରମ୍ପରା କ୍ରମେ ପ୍ରଚଳିତ ଅଛି । ବାଲ୍ମୀକି ଯେପରି ରାମାୟଣ-ବର୍ଣ୍ଣିତ ଘଟନାର ସମସାମୟିକ, ବ୍ୟାସଦେବ ସେହିପରି ମହାଭାରତ ଯୁଦ୍ଧର ସମସାମୟିକ । ମହାଭାରତରେ କୌରବ ଓ ପାଣ୍ଡବଙ୍କର ଯେଉଁ ଐତିହାସିକ ବିବରଣ ଅଛି, ତାହାକୁହିଁ ଅବଲମ୍ବନ କରି ପ୍ରଥମେ ବ୍ୟାସଦେବ ଯେଉଁ ଗ୍ରନ୍ଥ ଲେଖିଥିଲେ, ତାହା ଭାରତ ନାମରେ ଅଭିହିତ ହେଉଥିଲା । ପରେ ଏଥିରେ ଉପାଖ୍ୟାନ ଭାଗ ସଂଯୋଜିତ ହୋଇ ମହାଭାରତ ନାମ ପ୍ରାପ୍ତ ହେଲା । ନାନାଭାବରେ ଆଲୋଚନା କରି

Digitized by srujanika@gmail.com

ବର୍ତ୍ତମାନ ଯୁଗର ପଣ୍ଡିତମାନେ ନିର୍ଣ୍ଣୟ କରି ଅଛନ୍ତି ଯେ, ରାମାୟଣ ରଚିତ ହେବା ପୂର୍ବେ ମହାଭାରତର ଘଟନାବଳି ସର୍ବ ସାଧାରଣଙ୍କ ମଧ୍ୟରେ ପରିଚିତ ଥିଲା ଏବଂ ସେ ସବୁର କେତେକ ଅଂଶ ମଧ୍ୟ ଲିପିବଦ୍ଧ ହୋଇ ସାରିଥିଲା । ମହାଭାରତ ବର୍ତ୍ତମାନ ଯେଉଁ ଆକାରରେ ଦେଖାଯାଏ, ତାହାର ଶ୍ଳୋକସଂଖ୍ୟା ଏକଲକ୍ଷ । ତେଣୁ ତାହାକୁ ଶତସାହସ୍ରୀ ସଂହିତା କୁହାଯାଏ ।

ସେ ଯାହା ହେଉ, ଏହି ମହାଗ୍ରନ୍ଥ ଭାରତୀୟ ଜାତୀୟ ସାହିତ୍ୟର ମୂଳପିଣ୍ଡ । ମହର୍ଷି ବାଲ୍ମୀକି ଆଦିକବି, ମାତ୍ର ମହର୍ଷି ବ୍ୟାସକବି ପ୍ରାଚୀନ ସାହିତ୍ୟରାଜ୍ୟର ସାର୍ବଭୌମ ସମ୍ରାଟ୍ । ଏହାର ବିଷୟ ବସ୍ତୁ ଐତିହାସିକ ହେଲେହେଁ ଭାରତୀୟ ଆର୍ଯ୍ୟ ସମାଜରେ ଏହା ପଞ୍ଚମ ବେଦ ଏବଂ ପରମସମ୍ମାନାସ୍ପଦ ଧର୍ମଗ୍ରନ୍ଥ ରୂପେ ଆଦୃତ ହୁଏ । ଏଥିରେ ଧର୍ମ ନୀତି, ସମାଜ ନୀତି, ରାଜ ନୀତି ଓ ଅର୍ଥ ନୀତି ପ୍ରଭୃତି ମାନବ ଜୀବନରେ ପ୍ରୟୋଜନୀୟ ଯାବତୀୟ ସାଂସାରିକ ତତ୍ତ୍ୱ ଅତି ବିଶଦ ଭାବରେ ବର୍ଣ୍ଣିତ ହୋଇଅଛି । ପୃଥିବୀର କୌଣସି ଦେଶରେ ସାହିତ୍ୟରେ ଏପରି ବିଶାଳ ଗ୍ରନ୍ଥ ନାହିଁ । ମହାଭାରତର ଘଟନାବଳୀ ପ୍ରାଚୀନ ହେଲେହେଁ ଏହି ଗ୍ରନ୍ଥର ପ୍ରଣୟନ ଯେ, ଖ୍ରୀଷ୍ଟ ଜନ୍ମର ୫୫୦ ବର୍ଷ ପୂର୍ବେ ପୂର୍ଣ୍ଣତା ପ୍ରାପ୍ତ ହୋଇଥିଲା ଏହା ସର୍ବବାଦୀ ସମ୍ମତ । ଏହି ମହାଗ୍ରନ୍ଥ ଅଷ୍ଟାଦଶ ପର୍ବ ବା ଖଣ୍ଡରେ ବିଭକ୍ତ । ଏହାର ଭୀଷ୍ମପର୍ବ ଅନ୍ତର୍ଗତ ସପ୍ତଶତ ଶ୍ଳୋକ ସମ୍ବଳିତ ୧୮ ଗୋଟି ଅଧ୍ୟାୟ ଶ୍ରୀମଦ୍ ଭଗବଦ୍ ଗୀତାର ପବିତ୍ର ଜ୍ୟୋତି କେବଳ ଭାରତୀୟମାନଙ୍କର ହୃଦୟ କନ୍ଦରକୁ ଆଲୋକିତ କରୁ ନାହିଁ ପରନ୍ତୁ ଏହି ଜ୍ଞାନ ବିଜ୍ଞାନମୟ ନବ ଯୁଗରେ ସମଗ୍ର ପୃଥିବୀବାସୀ ମହାମନୀଷା ସମ୍ପନ୍ନ ପାଶ୍ଚାତ୍ୟ ଦାର୍ଶନିକମାନଙ୍କର ଆଧ୍ୟାତ୍ମିକ ଜ୍ଞାନରାଜ୍ୟର ସର୍ବଶ୍ରେଷ୍ଠ

Digitized by srujanika@gmail.com

ଅବଲମ୍ବନ ହୋଇଅଛି । ମହାଭାରତର ଏହି କ୍ଷୁଦ୍ର ଅଂଶଟି ପାଠ କରି ସେମାନେ ବିଶାଳ ମହାଭାରତର ସ୍ୱରୂପତତ୍ତ୍ୱ ଯେ, କିପରି ଗୂଢ଼ ତାତ୍ପର୍ଯ୍ୟପୂର୍ଣ୍ଣ ଏହା ନିଃସନ୍ଦେହ ଭାବରେ ବୁଝିପାରି ଅଛନ୍ତି ।

ଏ ଯୁଗରେ ଯେଉଁ ଭାରତୀୟମାନେ ପାଶ୍ଚାତ୍ୟ ଦୃଷ୍ଟିରେ ହେୟ ଓ ଉପେକ୍ଷଣୀୟ, ସେମାନଙ୍କ ପୂର୍ବପୁରୁଷମାନେ ଯେ ପୃଥିବୀରେ ଅଦ୍ଧମ ଜ୍ଞାନଦାତା ଗୁରୁ, ମହାଭାରତର ବିଷୟ ବସ୍ତୁ ଆଲୋଚନା ଦ୍ୱାରା ଏହା ସେମାନଙ୍କର ହୃଦୟଙ୍ଗମ ହୋଇଅଛି । କେବଳ ଭାରତରେ ନୁହେ, ପୂର୍ବକାଳରେ ଯେଉଁସବୁ ଦେଶ ଭାରତୀୟ ସଂସ୍କୃତି ଓ ସଭ୍ୟତାର ସଂସର୍ଗରେ ଆସିଥିଲେ, ସେ ସମସ୍ତ ଦେଶରେ ମଧ୍ୟ ମହାଭାରତରେ ପ୍ରଦତ୍ତ ବିଭିନ୍ନ ନାୟକଙ୍କ ଚରିତ ଚିତ୍ରଣ ଆଦର୍ଶରୂପେ ଗୃହୀତ ହୋଇଅଛି । ମହାଭାରତର ଉପାଖ୍ୟାନାବଳୀ ଗୋଟିଏ ଗୋଟିଏ ଚିତ୍ର ଅବଲମ୍ବନରେ ପରବର୍ତ୍ତୀ କାଳରେ ଭାରତରେ ବିଶାଳ ସାହିତ୍ୟର ସୃଷ୍ଟି ହୋଇଥିଲା । କାଳିଦାସ, ଶ୍ରୀହର୍ଷ, ଭାରବି, ମାଘ ପ୍ରମୁଖ ପ୍ରାଚୀନ ଭାରତର ମହାକବିମାନେ ଏହି ମହାଭାରତର ଗୋଟିଏ ଗୋଟିଏ ଘଟନାର ଚିତ୍ରରୁ ସେମାନଙ୍କ କବିତ୍ୱ ତୁଳିକାରେ ଅଙ୍କିତ କରି ପୃଥିବୀର କବି ସମାଜରେ ଅଜି ମହାକବିରୂପରେ ପୂଜିତ ହେଉ ଅଛନ୍ତି ।

ଏହା ପରେ ଅମ୍ଭମାନଙ୍କ ଦୃଷ୍ଟିରେ ପଡ଼େ ପ୍ରାଚୀନ ଭାରତର ପୌରାଣିକ ସାହିତ୍ୟ । ଏ ସାହିତ୍ୟର ବିଶାଳତା କଥା ଭାବିଲେ, ପାଠକ କ୍ଷଣିକ ପାଇଁ ସ୍ତବ୍ଧ ଓ ବିସ୍ମୟାଭିଭୂତ ହୋଇ ପଡ଼େ । ଏହାର ସଂଖ୍ୟା ୧୮ ଏବଂ ଉପପୁରାଣ ସଂଖ୍ୟା ମଧ୍ୟ ୧୮ । ପ୍ରତ୍ୟେକ ପୁରାଣର ଅକୃତି ଏବଂ ବିଷୟବସ୍ତୁ ମଧ୍ୟ ବିଶାଳ । ପୁରାଣାବଳୀକୁ

Digitized by srujanika@gmail.com

ପ୍ରାଚୀନ ଭାରତର ଇତିହାସ କୁହାଯାଏ । ଏ ଯୁଗରେ ଯେଉଁ ପ୍ରଣାଳୀରେ ଇତିହାସ ରଚିତ ହେଉଅଛି, ପୁରାଣମାନଙ୍କର ରଚନାଶୈଳୀ ତହିଁରୁ ପୃଥକ୍ । ତେଣୁ କେହି କେହି ଏଗୁଡ଼ିକ ଉପନ୍ୟାସ ବୋଲି ଉପେକ୍ଷା ଦୃଷ୍ଟିରେ ଦେଖନ୍ତି । କିନ୍ତୁ ପ୍ରକୃତରେ ତାହା ନୁହେଁ । ବେଦୋକ୍ତ ଧର୍ମର ସୂକ୍ଷ୍ମତତ୍ତ୍ୱମାନ ସର୍ବସାଧାରଣଙ୍କ ବୋଧଗମ୍ୟ ଭାଷାରେ ଏବଂ ରୂପକ ଆକାରରେ ବର୍ଣ୍ଣିତ ହୋଇ ଥିବାରୁ ସ୍ଥୂଳଦୃଷ୍ଟିରେ ଏସବୁ କପୋଳ କଳ୍ପିତ ପରି ମନେ ହୁଏ । ବର୍ତ୍ତମାନ ହିନ୍ଦୁ ସମାଜର ପ୍ରତ୍ୟେକ ବିଧି ବ୍ୟବସ୍ଥା ଏହି ପୁରାଣ-ମାନଙ୍କ ଦ୍ୱାରହିଁ ନିୟନ୍ତ୍ରିତ ହେଉଅଛି । ସେହି ହେତୁରୁ ଅଧୁନିକ ହିନ୍ଦୁଧର୍ମକୁ ପୌରାଣିକ ଧର୍ମ କୁହାଯାଏ । ପ୍ରତ୍ୟେକ ପୁରାଣରେ ସାଧାରଣତଃ ପାଞ୍ଚଗୋଟି ବିଷୟ ବର୍ଣ୍ଣିତ ହୋଇଥାଏ । ୧ ସର୍ଗ ବା ସୃଷ୍ଟି ପ୍ରକିୟା, ୨ ପ୍ରତିସର୍ଗ ଅର୍ଥାତ୍ ଧର୍ମସୃଷ୍ଟିର ବିସ୍ତାର, ପ୍ରଳୟ ଓ ପୁନଃ ସୃଷ୍ଟି, ୩ ମନ୍ୱନ୍ତର ଅର୍ଥାତ୍ କେଉଁ ମନୁଙ୍କ ସମୟରେ କେଉଁ କେଉଁ ବିଶିଷ୍ଟ କାର୍ଯ୍ୟ ପୃଥିବୀରେ ଘଟିଥିଲା ତାହାର ବିବରଣ, ୪ ବଂଶ ଅର୍ଥାତ୍ ସୃଷ୍ଟି ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଇତିହାସ, ୫ ବଂଶାନୁଚରିତ ଅର୍ଥାତ୍ ସୂର୍ଯ୍ୟ ଏବଂ ଚନ୍ଦ୍ରବଂଶୀୟ ରାଜାମାନଙ୍କର ରାଜ୍ୟ ଏବଂ ରାଜତ୍ୱକାଳ ବର୍ଣ୍ଣନା ।

ବୈଦିକ ଯୁଗରେ ଲିଖିତ କେତେକ ଗ୍ରନ୍ଥରେ ମଧ୍ୟ ପୌରାଣିକ ବର୍ଣ୍ଣନା ଦୃଷ୍ଟିଗୋଚର ହୁଏ, ବିଷ୍ଣୁପୁରାଣରେ ଐତିହାସିକ ମୌର୍ଯ୍ୟ ବଂଶର ପ୍ରାମାଣିକ ବର୍ଣ୍ଣନା ଦେଖାଯାଏ, ମତ୍ସ୍ୟପୁରାଣରେ ଅନ୍ଧ୍ରବଂଶୀୟ ରାଜାମାନଙ୍କର ଯେଉଁ ବଂଶାବଳୀ ଦିଆଯାଇ ଅଛି, ତାହା ଖ୍ରୀଷ୍ଟ ତୃତୀୟ ଶତାବ୍ଦୀର ଘଟନା । ଏଥିରୁ ଜଣାଯାଉଅଛି ଯେ, ଖ୍ରୀଷ୍ଟପୂର୍ବ ଷଷ୍ଠଶତାବ୍ଦୀଠାରୁ ପୁରାଣ ରଚନା ଆରମ୍ଭ ହୋଇଥିଲା । ଶ୍ରୀମଦ୍ ଭାଗବତ ଓ ପଦ୍ମପୁରାଣ ପ୍ରଭୃତି ଖ୍ରୀଷ୍ଟଜନ୍ମର ବହୁ ଶତାବ୍ଦୀର ପରବର୍ତ୍ତୀ ରଚନା, ଏହା ନାନାଭାବରେ ପ୍ରମାଣିତ ହୋଇଅଛି ।



Digitized by srujanika@gmail.com

ପଣ୍ଡିତମାନେ ଅନୁମାନ କରନ୍ତି ଯେ ପ୍ରାଥମିକ ପୁରାଣ ରଚନାର ପରବର୍ତ୍ତୀ କାଳରେ ଅର୍ଥାତ୍ ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରେ ମହର୍ଷି ପାଣିନି ତାଙ୍କ ଅଷ୍ଟାଧ୍ୟାୟୀସୂତ୍ର ରଚନା କରି ଭାଷାର ଯଥେଚ୍ଛ ବ୍ୟବହାରକୁ ନିୟନ୍ତ୍ରିତ କରିଥିଲେ । ତତ୍ପରେ ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦୀରେ ମହର୍ଷି କାତ୍ୟାୟନ ପାଣିନିଙ୍କ ଅଷ୍ଟାଧ୍ୟାୟୀସୂତ୍ର ଉପରେ ବାର୍ତ୍ତିକ ଓ ତତ୍ପରେ ମହର୍ଷି ପତଞ୍ଜଳି ଭାଷ୍ୟ ଲେଖି ସଂସ୍କୃତଭାଷାକୁ ସଂପୂର୍ଣ୍ଣ ବୈଜ୍ଞାନିକ ଭିତ୍ତିରେ ପ୍ରତିଷ୍ଠିତ କରିଥିଲେ । ଆଧୁନିକ ଭାଷା ବ୍ୟାକରଣମାନ ଯେପରି ଭାଷାର ବ୍ୟବହାର ଦ୍ୱାରା ସିଦ୍ଧ ହେଉଅଛି, କାତ୍ୟାୟନ ଓ ପତଞ୍ଜଳିଙ୍କ ଭାଷା ପଢ଼ିଲେ ଜଣାଯାଏ ଯେ ସଂସ୍କୃତ ବ୍ୟାକରଣର ମୂଳତତ୍ତ୍ୱ କେବଳ ବ୍ୟବହାରରୁ ଲବ୍ଧ ନୁହେ, ପରନ୍ତୁ ଏହା ସ୍ୱର ବ୍ୟଞ୍ଜନ ଦ୍ୱାରା ସିଦ୍ଧ ।

### ମହାକାବ୍ୟ

ଏହାପରେ ମହାକାବ୍ୟ ଯୁଗର ଅରମ୍ଭ । ଅଜିକାଲି ଯାହାକୁ ସାହିତ୍ୟ କୁହାଯାଏ, ମହାକାବ୍ୟ ଓ ନାଟକହିଁ ତାହାର ସମଷ୍ଟି । ପାଣିନି ବ୍ୟାକରଣ ରଚନା ପରେ ଯେ ଏସବୁ ରଚିତ ହୋଇଅଛି, ଏଥିରେ ସନ୍ଦେହ ନାହିଁ । କାରଣ ଯେଉଁ ମହାକାବ୍ୟ ମାନଙ୍କରେ ବ୍ୟାକରଣ ବହିର୍ଭୂତ ପ୍ରୟୋଗ ସବୁ ଦେଖାଯାଏ, ସେଗୁଡ଼ିକୁ 'ଚ୍ୟୁତସଂସ୍କାରତା' ନାମକ ଦୋଷଦୁଷ୍ଟ ବୋଲି ଅଭିହିତ କରାଯାଏ । ଯେତେଦୂର ଅନୁମାନ ହୁଏ ଖ୍ରୀଷ୍ଟଜନ୍ମ ପୂର୍ବରୁ ଅର୍ଥାତ୍ ବୁଦ୍ଧଦେବଙ୍କ ବୌଦ୍ଧଧର୍ମ ପ୍ରସାର ସମୟରେହିଁ ଏହି ମହାକାବ୍ୟ ରଚନାର ଅରମ୍ଭ ।

ସଭ୍ୟତାର ଅଭ୍ୟୁଦୟ ସଙ୍ଗେ ସଙ୍ଗେ ମନୁଷ୍ୟ ସ୍ୱଭାବତଃ ସାମାଜିକ ଜୀବନକୁ ସୁଖମୟ କରିବାକୁ ନାନା ଭାବରେ ଚେଷ୍ଟା କରି ଆସିଅଛି । କାବ୍ୟ ରଚନା ମନୁଷ୍ୟର ସୁଖାନୁଭବ ଚେଷ୍ଟାର

Digitized by srujanika@gmail.com

ଅନ୍ୟତମ ଉଦାହରଣ, ସୁଖାନୁଭୂତି ସଙ୍ଗେ ସୁକର୍ମର ପ୍ରଶଂସା ଦୁଷ୍କର୍ମର ନିନ୍ଦା ଚରିତ୍ରର ପବିତ୍ରତା ରକ୍ଷା ପ୍ରଭୃତି ବହୁ ବିଷୟକୁ ଲକ୍ଷ୍ୟରଖି କାବ୍ୟ ଶାସ୍ତ୍ରମାନ ରଚିତ ହୋଇଅଛି ।

ଶ୍ରବ୍ୟ ଓ ଦୃଶ୍ୟ ଭେଦରେ କାବ୍ୟ ପ୍ରଥମତଃ ଦ୍ୱିବିଧ । ଶ୍ରୁତି ଅର୍ଥାତ୍ କର୍ଣ୍ଣେନ୍ଦ୍ରିୟ ସାହାଯ୍ୟରେ ଯାହା ହୃଦୟସ୍ପୃଷ୍ଟ ହୋଇ ଲୋକ-ମାନଙ୍କୁ ଆନନ୍ଦ ପ୍ରଦାନ କରେ, ତାହା ଶ୍ରବ୍ୟ କାବ୍ୟ । ଯାହା ଅଭିନୀତ ହୋଇ ନେତ୍ର ଅର୍ଥାତ୍ ଦର୍ଶନେନ୍ଦ୍ରିୟ ସାହାଯ୍ୟରେ ହୃଦୟସ୍ପୃଷ୍ଟ ହୋଇ ଲୋକମାନଙ୍କୁ ଆନନ୍ଦ ପ୍ରଦାନ କରେ, ତାହା ଦୃଶ୍ୟକାବ୍ୟ । ଏହାର ଅନ୍ୟ ନାମ ରୂପକ ବା ନାଟକ ।

ଶ୍ରବ୍ୟକାବ୍ୟ ମଧ୍ୟ ଗଦ୍ୟ, ପଦ୍ୟ ଓ ମୁକ୍ତକ ଭେଦରେ ତ୍ରିବିଧ ହୁଏ । ଅନ୍ୟ ଭାବରେ ବିଚାର କଲେ ମହାକାବ୍ୟ, ଖଣ୍ଡକାବ୍ୟ ଓ ମୁକ୍ତକ ରୂପରେ ମଧ୍ୟ ଶ୍ରବ୍ୟକାବ୍ୟ ତିନି ପ୍ରକାର । ରାମାୟଣ, ରଘୁବଂଶ ପ୍ରଭୃତି ପଦ୍ୟାତ୍ମକ ମହାକାବ୍ୟ; କାଦମ୍ବରୀ, ଦଶକୁମାର ଚରିତ ପ୍ରଭୃତି ଗଦ୍ୟାତ୍ମକ ମହାକାବ୍ୟ, ଗଦ୍ୟ ପଦ୍ୟ ମିଶ୍ରିତ କାବ୍ୟର ନାମ ଚମ୍ପୂ ।

ଯେତେଦୂର ଅନୁସନ୍ଧାନ କରି ଯାଇଅଛି, ତହିଁରୁ ଜଣାଯାଏ ଯେ, ମହାକବି କାଳିଦାସ ମହାକାବ୍ୟର ପ୍ରଥମ ପ୍ରଣେତା । ତତ୍ ପୂର୍ବରୁ ମହାକାବ୍ୟ ରଚିତ ହୋଇଥିବାର କେତେକ ପ୍ରମାଣ ମିଳେ, ମାତ୍ର ସେସବୁ ଆଜିଯାଏ ପ୍ରକାଶିତ ହୋଇ ନାହିଁ । କାଳିଦାସ କେଉଁ ଶତାବ୍ଦୀରେ ଏବଂ ଭାରତର କେଉଁ ଅଞ୍ଚଳରେ ଜନ୍ମ ଗ୍ରହଣ କରିଥିଲେ, ତାହା ଏ ପର୍ଯ୍ୟନ୍ତ ଅଭ୍ରାନ୍ତରୂପେ ନିର୍ଣ୍ଣିତ ହୋଇ ନାହିଁ । ଯେଉଁ ବିକ୍ରମାଦିତ୍ୟଙ୍କ ରାଜସଭାରେ ସେ ପଣ୍ଡିତ ଥିଲେ, ତାହା ମଧ୍ୟ ଠିକ୍ କରି କେହୁ ସ୍ଥିରକରି ନାହାନ୍ତି । କାରଣ ବିକ୍ରମାଦିତ୍ୟ ନାମଧାରୀ ଅନେକ ରାଜା ମାଳବ ଦେଶରେ ରାଜତ୍ୱ

Digitized by srujanika@gmail.com

କରିଯାଇ ଅଛନ୍ତି । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଅଶ୍ୱଘୋଷ ନାମକ ଜଣେ ବିଖ୍ୟାତ ପଣ୍ଡିତ ବୁଦ୍ଧଚରିତ ନାମକ ଖଣ୍ଡିଏ ସଂସ୍କୃତ କାବ୍ୟ ଲେଖି ଅଛନ୍ତି । ତହିଁରେ ସେ କାଳିଦାସଙ୍କ କାବ୍ୟରୁ ଅନେକ ଶ୍ଳୋକ ନିଜ ସନ୍ଦର୍ଭରେ ଦେଇଥିବାରୁ କେହି କେହି କହନ୍ତି, ଖ୍ରୀଷ୍ଟ ଜନ୍ମର ପୂର୍ବ ଶତାବ୍ଦୀରେ କାଳିଦାସ ଆବିର୍ଭୂତ ହୋଇଥିଲେ । ମାତ୍ର, ଏ ମତ ଅଭ୍ରାନ୍ତ ନୁହେଁ । ଭାଷା ଓ ଭାବର ଅଭିବ୍ୟକ୍ତି ବିଷୟ ବିଚାର କରି ଅନେକ କହନ୍ତି, ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ଯେଉଁ ଯଶୋଧର୍ମ ଦେବ ବା ବିକ୍ରମାଦିତ୍ୟ ମାଳବ ପ୍ରଦେଶରେ ରାଜତ୍ୱ କରୁଥିଲେ କାଳିଦାସ ତାଙ୍କର ସଭାରେ ପଣ୍ଡିତ ଥିଲେ । ସେ ଯାହାହେଉ, କାଳିଦାସ ଯେଉଁ ଶକ୍ତି ନେଇ ଏ ଦେଶରେ ଜନ୍ମିଥିଲେ, ସେଭଳି ଶକ୍ତି ଭାରତର ଅନ୍ୟ କୌଣସି କବି ପ୍ରଦର୍ଶନ କରି ପାରି ନାହାନ୍ତି । ସେ ଅନେକ କାବ୍ୟ ଲେଖି ଯାଇ ଅଛନ୍ତି । ତନ୍ମଧ୍ୟରେ ରଘୁବଂଶ, କୁମାରସମ୍ଭବ, ମେଘଦୂତ ଓ ଶକୁନ୍ତଳା ନାଟକ ପ୍ରଧାନ । ତାଙ୍କର ଯଶଃପ୍ରଭା ସମଗ୍ର ଭାରତ ଅତିକ୍ରମ କରି ଏବେ ପାଶ୍ଚାତ୍ୟ ଖଣ୍ଡକୁ ମଧ୍ୟ ଆଲୋକିତ କରୁଅଛି । ଲୋକ ଚରିତ୍ର ଚିତ୍ରଣରେ, ନୈତିକ ଆଦର୍ଶ ବାଦରେ ଓ ପ୍ରକୃତି ଚିତ୍ରଣରେ ଯେଉଁ ଅସାଧାରଣ କୃତିତ୍ୱ ସେ ପ୍ରଦର୍ଶନ କରି ଯାଇ ଅଛନ୍ତି, ତାହା ଅଦ୍ୱିତୀୟ । ପରବର୍ତ୍ତୀ କାଳରେ ଦକ୍ଷିଣ ଭାରତରେ ଭାରବି ନାମରେ ଜଣେ ମହାକବି ଜନ୍ମଗ୍ରହଣ କରି 'କିରାତାର୍ଜ୍ଜୁନୀୟ' ନାମରେ ଖଣ୍ଡେ ମହାକାବ୍ୟ ଲେଖିଯାଇ ଅଛନ୍ତି । ରାଜନୀତି ବିଷୟରେ ଭାରବୀଙ୍କର ଅସାଧାରଣ ପାଣ୍ଡିତ୍ୟ ଥିଲା । ଅର୍ଥ ଗୌରବରେ କିରାତାର୍ଜ୍ଜୁନୀୟ କାବ୍ୟ ଅତୁଳନୀୟ ।

ଏମାନଙ୍କ ଛଡ଼ା ମାଘ, ଶ୍ରୀହର୍ଷ, ରତ୍ନାକର, କ୍ଷେମେନ୍ଦ୍ର ପ୍ରଭୃତି ବହୁକବି ନାନାଗ୍ରନ୍ଥାଳଙ୍କାର ଦ୍ୱାରା ସଂସ୍କୃତ କାବ୍ୟ ଭଣ୍ଡାରକୁ ଅଳଙ୍କୃତ କରିଯାଇ ଅଛନ୍ତି ।

Digitized by srujanika@gmail.com

ଗଦ୍ୟ ସାହିତ୍ୟ ବୈଦିକ ଯୁଗରୁ ଏ ଦେଶରେ ବହୁଶଃ ପ୍ରଚଳିତ ହୋଇଥିବା କଥା ପୂର୍ବେ କୁହା ଯାଇଅଛି । ଗଦ୍ୟ-କାବ୍ୟମାନଙ୍କ ମଧ୍ୟରେ ମହାକବି ବାଣଭଟ୍ଟଙ୍କ ପ୍ରଣୀତ କାଦମ୍ବରୀ ଉପନ୍ୟାସ ସର୍ବଶ୍ରେଷ୍ଠ । ଅଳଙ୍କାର ଛଟାରେ, ଭାବାଭିବ୍ୟକ୍ତିରେ ତଥା ଚରିତ୍ର ଚିତ୍ରଣରେ ବାଣଭଟ୍ଟ ଅସାଧାରଣ ପ୍ରତିଭା ପ୍ରଦର୍ଶନ କରିଯାଇ ଅଛନ୍ତି । କାଦମ୍ବରୀ ଭିନ୍ନ ସଂସ୍କୃତ ସାହିତ୍ୟରେ ଦଣ୍ଡୀଙ୍କ ଦଶକୁମାରଚରିତ କଥାସରିତ୍‌ସାଗର ପ୍ରଭୃତି ଅନେକ ମହାକାବ୍ୟ ଦେଖାଯାଏ । ବାଲ୍ୟଶିକ୍ଷା ପାଇଁ ବିଷ୍ଣୁଶର୍ମା ନାମକ ଜନୈକ ପଣ୍ଡିତ ଗଦ୍ୟ ଓ ପଦ୍ୟ ମିଶ୍ରଣରେ ହିତୋପଦେଶ ପଞ୍ଚତନ୍ତ୍ର ନାମକ ଯେଉଁ ଗ୍ରନ୍ଥ ଲେଖିଯାଇ ଅଛନ୍ତି, ସେସବୁର ଉପାଦେୟତା ପୃଥିବୀର ଅନ୍ୟ ଦେଶର ସାହିତ୍ୟରେ ସୁଦୁର୍ଲ୍ଲଭ । ତେଣୁ ଏ ଯୁଗର ପାଶ୍ଚାତ୍ୟ ଦେଶର ଉନ୍ନତ ସାହିତ୍ୟମାନଙ୍କରେ ସେ ସବୁର ଅନୁବାଦ ହୋଇ ପ୍ରଚଳିତ ହୋଇଅଛି ।

ନାଟକ ମାନବୀୟ ଚରିତ୍ର ଚିତ୍ରଣର ଉତ୍କର୍ଷ ନିଦର୍ଶନ । ସଂସ୍କୃତ ସାହିତ୍ୟରେ ଏ ସବୁର ପରିପୂର୍ଣ୍ଣତା ଦେଖିଲେ, ପ୍ରାଚୀନ ଭାରତ ସଭ୍ୟତାର କେଉଁ ଉନ୍ନତ ଶିଖରରେ ଅବସ୍ଥାନ କରିଥିଲା, ତାହା ଜଣାଯାଏ । ଅସ୍ମମାନଙ୍କର ପୂଜ୍ୟକବି କାଳିଦାସହିଁ ଏହି ନାଟକ ଲେଖକମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ । ତତ୍ ପ୍ରଣୀତ ଶକୁନ୍ତଳା ନାଟକ ଏକା ଭାରତରେ କାହିଁକି ସମଗ୍ର ଜଗତରେ ମଧ୍ୟ ଅଦ୍ୱିତୀୟ ନାଟକ ବୋଲି ସ୍ୱୀକୃତ ହୋଇଅଛି । କାଳିଦାସଙ୍କ ଛଡ଼ା ବିଶାଖ ଦତ୍ତ, ଶୂଦ୍ରକ, ଭାସ ପ୍ରଭୃତି ଶତ ଶତ ନାଟକ ଲେଖକ ସେ କାଳରେ ଜନ୍ମ ଗ୍ରହଣ କରି ସଂସ୍କୃତ ସାହିତ୍ୟକୁ ସେମାନଙ୍କର ମହାଦାନରେ ସମୃଦ୍ଧ କରିଯାଇ ଅଛନ୍ତି ।

Digitized by srujanika@gmail.com

ଏସବୁ ବ୍ୟତୀତ ଖଣ୍ଡକାବ୍ୟ, ଗୀତକାବ୍ୟ, ମୁକ୍ତକ ଓ ଚମ୍ପୁ ପ୍ରଭୃତି ସମ୍ବନ୍ଧରେ ଶତ ଶତ ଗ୍ରନ୍ଥ ଆମ ସଂସ୍କୃତ ସାହିତ୍ୟରେ ବିରଚିତ ଅଛି ।

ଅଳଙ୍କାର ଶାସ୍ତ୍ର ସାହିତ୍ୟର ବିଜ୍ଞାନ ବୋଲି ଅଭିହିତ ହୁଏ । ଭାମହ, ଦଣ୍ଡୀ, ବାମନ, ବିଶ୍ୱନାଥ କବିରାଜ ପ୍ରମୁଖ ଶତ ଶତ ପଣ୍ଡିତ ନାନାଭାବରେ ସାହିତ୍ୟ ଗ୍ରନ୍ଥନିଚୟ ଆଲୋଚନା କରି ନାନାବିଧ ଅଳଙ୍କାର ଗ୍ରନ୍ଥ ପ୍ରଣୟନ କରିଯାଇ ଅଛନ୍ତି ।

ଭାରତୀୟ ଷଡ଼ ଦର୍ଶନ ପୃଥିବୀ ପ୍ରସିଦ୍ଧ । ତା' ଛଡ଼ା ଚାର୍ବାକ ଦର୍ଶନ ଓ ବୌଦ୍ଧ ଦର୍ଶନ ପରି ନାସ୍ତିକତାପୂର୍ଣ୍ଣ ଦର୍ଶନ ମଧ୍ୟ ଏହି ଦେଶରେ ପ୍ରଣୀତ ହୋଇଥିଲା । ଭାରତୀୟ ଦର୍ଶନ ସାହିତ୍ୟ ଏବଂ ସେହି ସବୁର ଭାଷ୍ୟ, ବିବୃତି ପ୍ରଭୃତି ସଂସ୍କୃତରେ ଏତେ ଅଧିକ ଥିଲା ଯେ, ଜଣେ ଲୋକ ସମଗ୍ର ଜୀବନ କାଳରେ ମଧ୍ୟ ସେହି ସବୁ ଥରେ ପଢ଼ି ଶେଷକରି ପାରିବ ନାହିଁ ।

ଜ୍ୟୋତିଷ, ଗଣିତ ପ୍ରଭୃତି ସାହିତ୍ୟ ମଧ୍ୟ ସଂସ୍କୃତରେ ଅଗଣିତ । ମାତ୍ର ଏଠା ସେହି ସବୁର ଆଲୋଚନା ଉପରେ ସଂସ୍କୃତ ସାହିତ୍ୟର ଯେଉଁ ସଂକ୍ଷିପ୍ତ ବିବରଣ ପ୍ରଦତ୍ତ ହେଲା, ସେହି ସବୁ ପ୍ରାଚୀନ ସ୍ୱାଧୀନ ଭାରତରେ ଜନ୍ମ ଗ୍ରହଣ କରିଥିବା ମନୀଷୀମାନଙ୍କର କୃତିତ୍ୱର ବିବରଣ । ସ୍ୱାଧୀନ ମାନବ ଯେତେ-ବେଳେ ଜୀବନ ଯାତ୍ରା ନିର୍ବାହରେ ନିଶ୍ଚିନ୍ତ ରହେ, ସେତେବେଳେ ସେ ସ୍ୱମତି ଚିନ୍ତାଦ୍ୱାରା ପ୍ରଭାବିତ ହୋଇ ଗ୍ରନ୍ଥ ଲେଖେ । ଦୀର୍ଘ ୮୦୦ ବର୍ଷ ଭାରତ ବିଜାତୀୟ ଭିନ୍ନ ଧର୍ମାବଲମ୍ବୀ ଲୋକଙ୍କର ଶାସନରେ ରହିଥିବାରୁ ଏ ଦେଶର ଜାତୀୟ ସାହିତ୍ୟ ଏହି କାଳ ମଧ୍ୟରେ ବିଶେଷ କିଛି ଉନ୍ନତି ସାଧନ କରିପାରି ନାହିଁ । ପ୍ରାଚୀନ ଇତିହାସ ଆଲୋଚନା ଦ୍ୱାରା ପରବର୍ତ୍ତୀ ବଂଶଧରମାନଙ୍କ ପ୍ରାଣରେ

Digitized by srujanika@gmail.com

ଉତ୍ସାହ ଓ ଉଦ୍ଦୀପନା ଜାତ ହୁଏ, ପୂର୍ବବର୍ତ୍ତୀ ଯୁଦ୍ଧର କୃତିତ୍ୱ ସ୍ମରଣ କରି ବୀରହୃଦୟ ପରବର୍ତ୍ତୀ ଯୁଦ୍ଧପାଇଁ ଉତ୍ସାହିତ ହୁଏ । ଏହାହିଁ ପ୍ରକୃତର ନିୟମ । ଆଜି ଆମ୍ଭେମାନେ ସ୍ୱାଧୀନ ହୋଇଅଛୁଁ, ପୂର୍ବ ଜାତୀୟତା ଓ ସଂସ୍କୃତର ସ୍ମୃତି ଆମ୍ଭମାନଙ୍କ ନବୀନ ପ୍ରାଣରେ ନବତନ ଆଶା ଓ ଉତ୍ସାହ ସୃଷ୍ଟି କରୁଅଛି ।

ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତା ସଂସର୍ଗରେ ଆସି ଏବେ ଆମ୍ଭମାନଙ୍କ ହୃଦୟରେ ମହାଭାରତୀୟ ଜାତୀୟତା ପରବର୍ତ୍ତିରେ ଯେଉଁ କ୍ଷୁଦ୍ର ପ୍ରାଦେଶିକତା ଜାତ ହୋଇଅଛି, ଭାରତୀୟ ପ୍ରାଚୀନ ସାହିତ୍ୟ ଆଲୋଚନା କଲେ, ସେ ଭାବ ନିଶ୍ଚୟ ମ୍ଳାନ ହୋଇଯିବ । ସାଧାରଣତଃ ଏକ ଧର୍ମ, ଏକ ଭାଷା ଏବଂ ଏକ ଶାସନତନ୍ତ୍ର ଦେଶ ବିଶେଷର ଲୋକମାନଙ୍କୁ ଏକ ଜାତିରେ ପରିଣତ କରେ । ଆମ୍ଭେମାନେ ଏବେ ଆପଣାକୁ ଏବଂ ଭାରତୀୟ ମହାଜାତିର ବଂଶଧର ବୋଲି କହି ଗର୍ବ ଅନୁଭବ କରୁଅଛୁଁ, ଏହାର କାରଣ ଆମ୍ଭେମାନେ ଏକ ସନାତନଧର୍ମାବଲମ୍ବୀ । ହିମାଳୟ ଉପତ୍ୟକା-ବାସୀମାନେ ଏବେ ମଧ୍ୟ ଯେଉଁ ବୈଦିକ ମନ୍ତ୍ର ଉଚ୍ଚାରଣ କରି ଧର୍ମ ଜୀବନର ସର୍ବବିଧ କର୍ମ ସମ୍ପାଦନ କରନ୍ତି, କୁମାରିକାର ପ୍ରଦେଶବାସୀମାନେ ମଧ୍ୟ ସେହି ବୈଦିକମନ୍ତ୍ର ଉଚ୍ଚାରଣ କରି ଧର୍ମ ଜୀବନର ସମଗ୍ର କର୍ମ ସମ୍ପାଦନ କରନ୍ତି । ତେଣୁ ଆମେ ସମସ୍ତେ ଏକ ଧର୍ମାବଲମ୍ବୀ । ଆମେ କଦାଚିତ୍ ସମଗ୍ର ଦେଶ ଏକ ସାର୍ବଭୌମସୂତ୍ର ତଳରେ ରହୁଅଛୁଁ । ଭିନ୍ନ ଭିନ୍ନ ପ୍ରଦେଶରେ ଭିନ୍ନ ଭିନ୍ନ ରାଜା ରାଜତ୍ୱ କରୁଥିଲେ । ତଥାପି ପ୍ରତ୍ୟେକ ରାଜା ଅନୁଭବ କରୁଥିଲେ ଯେ, ସେମାନେ ଏକ ସନାତନ ଆର୍ଯ୍ୟଜାତିର ବଂଶଧର । ପ୍ରତ୍ୟେକ ପ୍ରଦେଶର କଥା ଭାଷାରେ ସ୍ୱାତନ୍ତ୍ର୍ୟ ଥିଲେହେଁ ସେମାନେ ମନେ କରୁଥିଲେ ଏକମାତ୍ର ସଂସ୍କୃତ ଭାଷା

Digitized by srujanika@gmail.com

ସମଗ୍ର ଦେଶର ଭାବ ପ୍ରକାଶର ସହାୟକ । ଅର୍ଥାତ୍ ଶଙ୍କର, ଅର୍ଥାତ୍ ରାମାନୁଜ ଦ୍ରାବିଡ଼ ରାଜ୍ୟର ଭିନ୍ନ ଭାଷାଭାଷୀ ଲୋକ । କିନ୍ତୁ ସେ ଆଜି ସମଗ୍ର ଅର୍ଥାତ୍ ଜାତିର ନମସ୍ୟ । ଉପରେ ସଂସ୍କୃତ ସମ୍ପର୍କରେ ଯେଉଁ କବିମାନଙ୍କର ନାମୋଲ୍ଲେଖ କରାଯାଇଅଛି, ସେମାନଙ୍କ ମଧ୍ୟରୁ କିଏ କେଉଁ ପ୍ରଦେଶର ଲୋକ, ତାହା ଜାଣିବାର ଉପାୟ ନାହିଁ । ଆତ୍ମ ପରିଚୟ ନ ଦେଇ ଥିବାରୁ ଆଜି ମହାକବି କାଳିଦାସ ଭାରତର ପ୍ରତ୍ୟେକ ପ୍ରଦେଶବାସୀଙ୍କର କିଅଣ ନମସ୍ୟ ନୁହନ୍ତି ? ଏଥିରୁ ଜଣାଯାଉଅଛି, ଏକମାତ୍ର ସଂସ୍କୃତ ଭାଷାହିଁ ସମଗ୍ର ଭାରତର ଜାତୀୟତାର କାରଣ ଏବଂ ତାହାହିଁ ସମଗ୍ର ଭାରତକୁ ଏକତାବଦ୍ଧ କରିଥିଲା । ଏବେ ଭାରତ ସ୍ୱାଧୀନ ହୋଇ ଏକ ଶାସନର ଅନ୍ତର୍ଭୁକ୍ତ ହୋଇଅଛି । ଯେ ପର୍ଯ୍ୟନ୍ତ ଏହି ସଂସ୍କୃତ ଭାଷାକୁ ସମଗ୍ର ଭାରତରେ ଜାତୀୟ ଭାଷାରୂପେ ଗ୍ରହଣ କରା ନ ଯାଇଛି, ସେ ପର୍ଯ୍ୟନ୍ତ ଆମ୍ଭମାନଙ୍କ ମଧ୍ୟରୁ କ୍ଷୁଦ୍ର ପ୍ରାଦେଶିକ ଭାବ କେବେହେଁ ଲୋପ ହେବ ନାହିଁ । ପରବର୍ତ୍ତୀ ମାନବ ସମାଜ ସଂସ୍କୃତ ସାହିତ୍ୟ ଛଡ଼ା ଅନ୍ୟ କେଉଁ ସାହିତ୍ୟକୁ ମହାଭାରତୀୟ ଜାତୀୟ ସାହିତ୍ୟରୂପେ ଗ୍ରହଣ କରିପାରିବେ ନାହିଁ ।

---

## ପ୍ରାଚୀନ ଭାରତରେ ବିମାନର ଉପଯୋଗିତା

ଅଜିକାଲି ପାଶ୍ଚାତ୍ୟଦୋଳିତ ଜୌତିକ ଯୁଗରେ କେତେକ ଆଧୁନିକ ଶିକ୍ଷିତ ଆମ୍ଭ ହିନ୍ଦୁଧର୍ମର ମନ୍ତ୍ର, ଯନ୍ତ୍ର, ତନ୍ତ୍ର ଓ ବେଦ ପ୍ରଭୃତି ଶାସ୍ତ୍ରର ସମାଲୋଚନା ବା ଗବେଷଣା କରୁ ନାହାନ୍ତି । ଏସବୁ କରିବା ତ ଦୂରର କଥା । ଥରେ ମାତ୍ର ସେ ସବୁଶାସ୍ତ୍ର

Digitized by srujanika@gmail.com

କେହିଁ ନାହାନ୍ତି କିମ୍ବା ପଢ଼ୁ ନାହାନ୍ତି । ଆମ୍ଭର ସମସ୍ତ ଶାସ୍ତ୍ର ସଂସ୍କୃତ ଭାଷାରେ ଲିଖିତ । ବୈଦେଶିକ ଶାସନ ସମୟରେ ସଂସ୍କୃତ ଭାଷା ଇଂଲଣ୍ଡ ଓ ଜର୍ମାନୀ ପ୍ରଭୃତି ଦେଶରେ ଅଦ୍ଭୁତ ହେଲେ ସୁଦ୍ଧା ଆମ ଦେଶର ସୁଧୀ ସମାଜରେ ମୃତଭାଷାରୂପେ ପରିଗଣିତ ହୋଇ-ଅଛି ।

ବର୍ତ୍ତମାନ ସ୍ୱାଧୀନତା ପରେ ସଂସ୍କୃତପ୍ରତି ଟିକିଏ ଦୃଷ୍ଟି ପଡ଼ିଲେ ମଧ୍ୟ ଆମ୍ଭମାନଙ୍କ ସଂସ୍କୃତ ଭାଷାରେ ବା ଆମ ପୁଣ୍ୟଭୂମି ଭାରତରେ ଏହି ଯୁଗର ନବ ଆବିଷ୍କୃତ ବୈଜ୍ଞାନିକ ତଥ୍ୟମାନଙ୍କର କୌଣସି ସତ୍ତା ଥିଲା ପରି ସୁଧିସମାଜ ବିଶ୍ୱାସ କରୁ ନାହାନ୍ତି । ବିଶେଷତଃ ଆକାଶ ମାର୍ଗରେ ବ୍ୟୋମଯାନ ଦେଖି କହୁଅଛନ୍ତି ଯେ, ଆମ୍ଭ ପ୍ରାଚୀନ ଭାରତରେ ଏପରି ବ୍ୟୋମଯାନ ନ ଥିଲା କି ପ୍ରାଚୀନ ମହର୍ଷିଗଣ ଭୂଗୋଳ, ପଦାର୍ଥବିଦ୍ୟା, ରସାୟନ ଓ ନୀତିଶାସ୍ତ୍ର ପ୍ରଭୃତି କିଛି ଜାଣୁ ନ ଥିଲେ କି ଭାରତବର୍ଷ ଛଡ଼ା ପୃଥିବୀରେ ଅନ୍ୟ କିଛି ଲଣ୍ଡନ ଓ ଜର୍ମାନୀ ପ୍ରଭୃତି ଦେଶ ଅଛି ବୋଲି ଜାଣି ନ ଥିଲେ । ବଡ଼ ଦୁଃଖର କଥା ଯେ, ଆମ୍ଭମାନଙ୍କ ଶାସ୍ତ୍ରରେ ପୂର୍ବୋକ୍ତ ସମସ୍ତ ବିଷୟ ଅଛି । ମାତ୍ର ଅମ୍ଭେମାନେ ସେ ସମସ୍ତ ଶାସ୍ତ୍ର ନ ପଢ଼ି, ନ ଶୁଣି ଅଛୁ । ତେଣୁ ଆଜି କାଲିକାର ବିଦୁଷ ଓ ବିଦୁଷୀମାନଙ୍କୁ ବିନୀତ ପ୍ରାର୍ଥନା ଯେ, ସେ ସବୁ ଶାସ୍ତ୍ର ଥରେ ମାତ୍ର ପଢ଼ନ୍ତୁ, ତାହା ହେଲେ ବୁଝି ପାରିବେ ଯେ, ଆମ୍ଭ ପୁଣ୍ୟଭୂମି ଭାରତରେ କି କି ବିଷୟ ବା ନ ଥିଲା, ବର୍ତ୍ତମାନ ପୃଥିବୀରେ ଯାହା ଯାହା ପ୍ରକାଶ ପାଉଅଛି ବା ଭବିଷ୍ୟତକୁ ଯାହା ଯାହା ପ୍ରକାଶ ପାଇବ, ସେ ସମସ୍ତ ଆମ୍ଭ ପୁଣ୍ୟଭୂମି ଭାରତରେ ଆମ୍ଭ ଦେଶର ସଂସ୍କୃତ ଶାସ୍ତ୍ରରେ ଗୂଢ଼ଭାବେ ସମସ୍ତ ଅଛି । ଏହି ବିଷୟରେ ମୁଁ ମୋହର କ୍ଷୁଦ୍ର ବୁଦ୍ଧିରେ ଯାହା ଯାହା ସଂଗ୍ରହ କରିଅଛି, ତାହା କ୍ରମଶଃ ପ୍ରକାଶ କରୁଅଛି ।

Digitized by srujanika@gmail.com

ଅମ୍ଭ ପ୍ରାଚୀନ ଗ୍ରନ୍ଥମାନଙ୍କରେ ଅର୍ଥାତ୍ ବେଦ ଓ ଶୁକ୍ରାଚାର୍ଯ୍ୟ ପ୍ରଣୀତ ନୀତିଶାସ୍ତ୍ରମାନଙ୍କରେ ବ୍ୟୋମଯାନ ବା ବିମାନର ଅର୍ଥ ରଥ ବା ପାଲିଙ୍କି ବୋଲି କେହି କେହି ପ୍ରକାଶ କରିଅଛନ୍ତି । ମାତ୍ର ତାହା ନୁହେ, ବ୍ୟୋମଯାନ ଏବଂ ରଥର ପ୍ରଭେଦ ସ୍ପଷ୍ଟଭାବେ ବର୍ଣ୍ଣିତ ଅଛି । ବ୍ୟୋମଯାନ ରଥ ଅପେକ୍ଷା ପକ୍ଷୀର ଅଧିକ ନିକଟବର୍ତ୍ତୀ ଥିଲା । ଗରୁଡ଼ ପ୍ରଭୃତି ପକ୍ଷୀ ବାହନ ବାସ୍ତବରେ ବ୍ୟୋମଯାନ ଥିଲା । ସେମାନଙ୍କୁ କବିମାନଙ୍କର ବର୍ଣ୍ଣନା କାଳାନ୍ତରେ ପକ୍ଷୀରୂପ ପ୍ରଦାନ କରିଅଛି ।

ଋଗ୍ ବେଦରେ ଗୋଟିଏ ମନ୍ତ୍ର ଅଛି :—

"ବେଦାଯୋବୀନା ପଦମନ୍ତ୍ରରିକ୍ଷେଣ
ପତତାଂ ବେଦନାବଃ ସମୁଦ୍ରିୟାଃ ।"

ଏହାର ଅର୍ଥ ପଣ୍ଡିତମାନଙ୍କର ମତାନୁସାରେ ହେଉଅଛି । ଯେ, ଆକାଶରେ ପକ୍ଷୀମାନଙ୍କର ଉଡ଼ିବାକୁ ଜାଣେ ସେ ସାଗର ଓ ଆକାଶର ନୌକାକୁ ଜାଣେ । ଆକାଶର ନୌକା ବ୍ୟୋମଯାନ ବ୍ୟତୀତ ଅନ୍ୟ କିଛି ନୁହେ । ବିମାନ ଶବ୍ଦର ବ୍ୟୁତ୍ପତ୍ତି ମଧ୍ୟ ଏହି ଦିଗକୁ ଲକ୍ଷ୍ୟ କରୁଅଛି, ଯଥା :—ବି (ପକ୍ଷୀ), ମାନ (ସଦୃଶ) । ଏହି ଶବ୍ଦ ବ୍ୟୋମଯାନ ବା ବିମାନ ନିର୍ମାଣରେ ଯେଉଁ ଯନ୍ତ୍ରର ସିଦ୍ଧାନ୍ତର ସ୍ପଷ୍ଟୀକରଣ କରୁଅଛି, ତାହାର ପ୍ରାରମ୍ଭିକ ଉଲ୍ଲେଖ ଋଗ୍ ବେଦରେ ଦେଖିବାକୁ ମିଳେ ।

ବର୍ତ୍ତମାନ ଦେଖିବାର କଥା ବିମାନ ଯାହା ନିର୍ମିତ ଅବଶ୍ୟକୀୟ ଅନ୍ୟାନ୍ୟ ଉପକରଣ; ଏହି ଉପକରଣ ବିନା କେବଳ କଳ୍ପନା ଦ୍ୱାରା ନିର୍ଭେଯାନ୍ତା କରିବା ଅସମ୍ଭବ ।

Digitized by srujanika@gmail.com

ଏହି ସମ୍ବନ୍ଧରେ ଗୋଟିଏ ପୌରାଣିକ କଥା ହଠାତ୍ ମନେ ପଡ଼େ । ଭାଗବତରେ ଲେଖାଅଛି—ଭଗବାନ୍ ଶ୍ରୀକୃଷ୍ଣଙ୍କର ନଗରର ନାମ ଦ୍ୱାରବତୀ, ଅର୍ଥାତ୍ ନଗରମାନଙ୍କର ଦ୍ୱାର । ଭଗବାନ ଶ୍ରୀକୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନ, ପ୍ରଦ୍ୟୁମ୍ନଙ୍କ ପୁତ୍ର ଅନିରୁଦ୍ଧ ଅଟନ୍ତି । ଏହି ଅନିରୁଦ୍ଧଙ୍କର ବିବାହ ବାଣାସୁରର କନ୍ୟା ଉଷା ସହିତ ସମ୍ପନ୍ନ ହୋଇଥିଲା । ବାଣାସୁରର ରାଜଧାନୀ ଶୋଣିତପୁର ଥିଲା । ଏହା ହରିବଂଶରେ ଲେଖା ଅଛି ।

ମଧ୍ୟ ବିଷ୍ଣୁ ପୁରାଣରେ ଏହି କଥା ଅଧିକ ଭାବରେ କଥିତ ହୋଇଅଛି । ଉଷା ସ୍ୱପ୍ନରେ ଗୋଟିଏ ରାଜକୁମାରକୁ ଦେଖି ମୁଗ୍ଧ ହୋଇଗଲା । ତାହାର ସଖୀ ଚିତ୍ରରେଖାକୁ କହିଲା, ହେ ପ୍ରାଣସଖି ! ତୁ ସ୍ୱପ୍ନଦୃଷ୍ଟ ସେହି ସୁନ୍ଦର ପୁରୁଷର ଛବି ଆଣି ମୋତେ ଦେଖାଅ; ନଚେତ୍ ମୁଁ ମଲି ।” ତେଣୁ ଚିତ୍ରରେଖା ବିଭିନ୍ନ ଦେଶର ରାଜପୁତ୍ରମାନଙ୍କର ଛବି ଅଙ୍କି ଦେଖାଇଲା । ତହିଁରେ ଅନିରୁଦ୍ଧର ସାମଞ୍ଜସ୍ୟ, ସ୍ୱପ୍ନରେ ଦେଖା ଯାଇଥିବା ଛବି ସହିତ ମିଳିଗଲା । ଚିତ୍ରରେଖା ଦ୍ୱାରବତୀ ଯାଇ ରାତିରେ ଶୋଇ ରହିଥିବା ଅନିରୁଦ୍ଧକୁ ଅପହରଣ କରି ଶୋଣିତପୁରକୁ ଘେନି ଆସିଲା । ମଧ୍ୟ ଗାନ୍ଧର୍ବ ରୀତିରେ ଦୁହିଙ୍କର ବିବାହ କରାଇ ଦେଲା । ଏ କଥା ବାଣାସୁର ଯେତେବେଳେ ଜାଣିଲା, ସେତେବେଳେ ଅନିରୁଦ୍ଧକୁ କାରାଗାରରେ ଆବଦ୍ଧ କଲା । ଏ କଥା ଶୁଣି ଏଣେ ଦ୍ୱାରବତୀରେ ହାହାକାର ଧ୍ୱନି ଉଠିଲା । ଇତ୍ୟବସରେ ନାରଦ ଉପସ୍ଥିତ ହୋଇ କହିଲେ—ବାଣାସୁର ସଙ୍ଗେ ଯୁଦ୍ଧ କରିବାକୁ ହେବ । ବାଣାସୁରର ନଗର ଏଠାରୁ ୧୧ହଜାର ଯୋଜନ ଦୂର ଅଟେ । କିଏ ଯିବ, କିପରି ଯିବ, ନ ହେଲେ ପୁତ୍ରର ଉଦ୍ଧାର ଅସମ୍ଭବ ।

Digitized by srujanika@gmail.com

ଇନ୍ଦ୍ରାଣୀମାନଙ୍କର ଅନେକ ବ୍ୟକ୍ତି ଉତ୍ତର ଇରାକ୍‌ରେ ରାଜଧାନୀ କରିଥିଲେ । ତାହାର ନାମ ରୁଧିରପୁର, ଅର୍ଥାତ୍ ଶୋଣିତପୁର । ସେଠାରେ ଏସିରିୟମାନେ ରାଜତ୍ୱ କରୁଥିଲେ । ସେଉଁମାନେ ନିଜକୁ ଅସୁର ବୋଲି ପରିଚୟ ଦେଉଥିଲେ । ପୂର୍ବେ ଅସୁରର ଅର୍ଥ ବୁଦ୍ଧିମାନ୍, ପ୍ରାଣବାନ୍, ବଳବାନ୍ ଥିଲା । ଯାସ୍କକୃତ ନିରୁକ୍ତ ଗ୍ରନ୍ଥରେ ଏହି ଅର୍ଥ ଦେଖିବାକୁ ମିଳେ ଏବଂ ଋଗ୍ ବେଦର ୧।୧୯, ୧୮।୪, ୨୩।୬।୪, ୮।୫।୮ ଅଧ୍ୟାୟମାନଙ୍କରେ ଅସୁର ଶବ୍ଦ ପ୍ରଶଂସାମୂଳକ ବୋଲି ଲିଖିତ ଅଛି । ପରବର୍ତ୍ତୀ କାଳରେ ଯେତେବେଳେ କି ଏସିରିଅର ରାଜା ଅତ୍ୟାଚାରୀ ହୋଇଗଲେ, ସେତେବେଳେ ଅସୁର ଶବ୍ଦ କ୍ରୂର ହେଲା । ନିନେବା ଶୋଣିତପୁର ନାମରେ କଥିତ ହେଲା ।

ପୁଣି ନାରଦ ମୁନି କହିଲେ, କେବଳ ଗରୁଡ଼ ବାହନ ଦ୍ୱାରା ଶୋଣିତପୁରକୁ ଶୀଘ୍ର ପହଞ୍ଚିବାର ଏକମାତ୍ର ଉପାୟ ଅଛି ।

ତେଣୁ ଭଗବାନ, ନାରଦ, ବଳଦେବ ଏବଂ ପ୍ରଦ୍ୟୁମ୍ନ ସହିତ ଗରୁଡ଼ ଉପରେ ବସି ଶୋଣିତପୁରକୁ ଗଲେ । ସେଠାରେ କଳାପ, କୁସୁମ, ଦହନ, ଶୋଷଣ ଓ ତପନ ଏହି ପାଞ୍ଚ ପ୍ରକାର ବାତବେଦସଙ୍କୁ ପରାଜିତ କଲେ ।

ବାଣାସୁରକୁ ମଧ୍ୟ ସେ ଜୟ (ନିନେବାର ରାଜା ଅସୁର ବାଣ ପାଳ ହୋଇଥିବା) ଫେରିବାବେଳେ ଦକ୍ଷିଣ ଇରାକ୍‌କୁ ସୁମେରିୟନ୍ ରାଜ୍ୟର ସ୍ୱାମୀ ବରୁଣଙ୍କ ରାଜଧାନୀ ସୁଷାକୁ ମଧ୍ୟ ଶ୍ରୀକୃଷ୍ଣ ଜୟ କଲେ । ଅତି ଶୀଘ୍ର କାମ ପରିସମାପ୍ତ ହେଲା, ଫେରିବା ସମୟରେ କୁମାର, ( ବାଣାସୁରର ମନ୍ତ୍ରୀ ) ଅନିରୁଦ୍ଧ, ଉଷା, ଅଦଙ୍କର ବାପ୍‌ସିରେ ଅର୍ଥାତ୍ ସତବରସ୍ଥାଣରେ ମେଳ ହେଲା । ତହିଁରେ ଗରୁଡ଼ ପକ୍ଷୀ ବିମାନ ବୋଲି ସିଦ୍ଧ ହୋଇଅଛି ।

Digitized by srujanika@gmail.com

ବିମାନ ଯାତ୍ରା ସକାଶେ ଅକ୍ଷାଂଶ ଦେଶାନ୍ତରର ଯେଉଁ ଜ୍ଞାନ ଆବଶ୍ୟକ, ତାହା ପୌରାଣିକ ଯୁଗରେ ଆମ୍ଭର ପୂର୍ବପୁରୁଷମାନେ ସ୍ଥିର କରିଥିଲେ ।

ମତ୍ସ୍ୟ ପୁରାଣରେ ଏକ ଅଧ୍ୟାୟରେ ଲେଖାଅଛି ଯେ, ଯେତେବେଳେ ସୂର୍ଯ୍ୟ ଅମରାବତୀ ନଗରୀ ମଧ୍ୟରେ ପହଞ୍ଚନ୍ତି, ସେତେବେଳେ ଯମର ସଂଯମନୀ ପୁରୀର ପୂର୍ବ ଦିଗରେ ଉଦୟ ହେବାର ଦେଖାଯାଏ । ଚନ୍ଦ୍ରର ବିଭାବରୀ ନଗରୀରେ ଯେତେ-ବେଳେ ସୂର୍ଯ୍ୟାସ୍ତ ହୁଏ, ସେତେବେଳେ ବରୁଣର ସୁଷା ନଗରୀରେ ସୂର୍ଯ୍ୟ ଉଦୟ ହୁଏ । ବିଭାବରୀର ଯାହା ଅର୍ଦ୍ଧରାତ୍ରି ତାହା ଅମରାବତୀର ସୂର୍ଯ୍ୟାସ୍ତ ଅଟେ । ସୁଷାର ମଧ୍ୟ ଚନ୍ଦ୍ରପୁରର ସୂର୍ଯ୍ୟୋଦୟ ଯମପୁରୀରେ ଯାହା ଅର୍ଦ୍ଧରାତ୍ର, ତାହା ଇନ୍ଦ୍ରପୁରୀର ସୂର୍ଯ୍ୟୋଦୟ ଏବଂ ସୁଷାରେ ସୂର୍ଯ୍ୟାସ୍ତ ।

ଶୁକ୍ରନୀତିର (ପ୍ରଥମ ଅଧ୍ୟାୟ ଶ୍ଳୋ ୩୬୭) ଅନୁସାରେ ସେ କାଳରେ ଏପରି ଯନ୍ତ୍ରସବୁ ଥିଲା, ଯଦ୍ୱାରା ଦିନକ ଭିତରେ ୧୦,୦୦୦ ବାଉଁ ଯିବା ଆସିବା କରି ପାରୁଥିଲା । କଥୋପକଥନର ଶବ୍ଦ ଯାତାୟାତ କରି ପାରୁଥିଲା ।

'ଅଯୁତଂ ଯୋଜନାଂ ବା ହରେଦେକଦିନେନ ବୈ'

ବୈଦିକ କାଳରେ ଭୂଗୋଳ ଏବଂ ଖଗୋଳର ମାନଚିତ୍ର କାଷ୍ଠର ଗ୍ଲୋବ୍ ତିଆରି ହେଉଥିଲା । ଋତୁ ପରିଚୟ ପ୍ରାପ୍ତି ସକାଶେ ଉଷ୍ଣତାମାପକ ରୂପମାପକ ଘଟିଯନ୍ତ୍ର ଆଦି ଥିଲା । ଗରୁଡ଼ ପୁରାଣରେ ବିସ୍ତୃତ ଭାବରେ ଏସବୁ ଦେଖିବାକୁ ମିଳେ । ଶୁକ୍ର ନୀତିର ୪ର୍ଥ ଅଧ୍ୟାୟରେ ତୋପ, ବନ୍ଧୁକ, ବାରୁଦ ଓ ନଳୀଆଦିର ନିର୍ମାଣ କରିବା ପ୍ରଣାଳୀ, ପତଳା ନଳୀ, ମୋଟାନଳ ନିକଟରେ ମାରିବା ଓ ଦୂରରେ ମାରିବା ଇତ୍ୟାଦିନଳମାନଙ୍କର ବର୍ଣ୍ଣନା

Digitized by srujanika@gmail.com

ବର୍ଣ୍ଣନ ଅଛି । ଏହିପରି ଯନ୍ତ୍ର ମଧ୍ୟ ବ୍ୟବହୃତ ହେଉଥିଲା, ଯାହା ମାନବ ପରି ଚାଲିବୁଲି ପାରୁ ନ ଥିଲା ସତ୍ୟ, ମାତ୍ର କଥାବାର୍ତ୍ତା କରି ପାରୁଥିଲା । ରାବଣ ଦ୍ୱାରା ରଚିତ କୃତ୍ରିମ ସୀତା ରାମ ରାମ ବୋଲି କାନ୍ଦୁଥିଲା ।

କ୍ରୋଶନ୍ତୀ ରାମ ରାମେତି ମାୟୟା ଯୋଜିତାଂ ରଥେ
ତମେବ ଭୂଷଂ ରୁଦନ୍ତୀ ସୀତାଂ ମାୟାମୟୀଂ ଚ ତାଂ ।

—ଲଙ୍କାକାଣ୍ଡ

ଏହାର ଅର୍ଥ ଏହି ଯେ, ବିମାନଗୁଡ଼ିକର ଯୁଦ୍ଧକାଳୀନ ଉପଯୋଗିତା ପାଇଁ ଯେତେ ଜ୍ଞାନ ଦରକାର, ତାହା ପ୍ରାଚୀନ ଭାରତୀୟଙ୍କର ଥିଲା । ଅତି ମଧ୍ୟ ସେମାନେ ଜାଣି ପାରୁଥିଲେ ଯେ, ଶକ୍ତିର ଯାନ୍ତ୍ରିକ ପ୍ରାରୂପ ଏବଂ ଅବସ୍ଥାରେ କ'ଣ ହୁଏ, ଭରଦ୍ୱାଜ ମୁନିକୃତ ଯନ୍ତ୍ରାର୍ଣ୍ଣବରେ ଲେଖାଅଛି :—

ଦଣ୍ଡୈଶ୍ଚ ଦନ୍ତୈଶ୍ଚ ସରଣୀ ଭ୍ରମକାଦିଭିଃ
ଶକ୍ତେସ୍ତୁ ବର୍ଦ୍ଧକଂ ଯତ୍ତଦ୍ୟାଳଂକଂ ଯନ୍ତ୍ର ମୁଚ୍ୟତେ ।

ଦଣ୍ଡ, ଦନ୍ତ, ସରଣୀ, ଭ୍ରାମକ ଆଦିର ମାଧ୍ୟମରେ ଯେଉଁ ଶକ୍ତି ବର୍ଦ୍ଧିତ ହୁଏ, ତାହାକୁ ଯନ୍ତ୍ର କହନ୍ତି । ଆଜିକାଲି ମଧ୍ୟ ଶକ୍ତି ଓ ଗତି ବୈଜ୍ଞାନିକ ବିଶେଷଜ୍ଞ ଇଞ୍ଜିନିୟରମାନଙ୍କର ଯନ୍ତ୍ରଜ୍ଞାନ ସେତିକି ସୀମା ଅଟେ । ଯଦି ଯନ୍ତ୍ରଗୁଡ଼ିକର ଅତି ସୂକ୍ଷ୍ମ ଦୃଷ୍ଟିରେ ଦେଖି ଯାଉଥିବା ଲୋକେ ସେଗୁଡ଼ିକର ସୂକ୍ଷ୍ମାତିସୂକ୍ଷ୍ମ ବ୍ୟବହାର କରି ପାରନ୍ତି; ସେଥିରେ ଆଶ୍ଚର୍ଯ୍ୟ ହେବାର କାରଣ କଣ ? କେବଳ ଗୋଟିଏ ପ୍ରକାର ନୁହେଁ । ଅନେକ ପ୍ରକାର ବାୟୁଯାନ ଆମ ପୂର୍ବ ପୁରୁଷମାନେ କରି ପାରୁଥିଲେ । ସେହି ଯନ୍ତ୍ରଗୁଡ଼ିକରେ କେବଳ ଆକୃତିର ପାର୍ଥକ୍ୟ ନ ଥିଲା । ମୌଳିକ ପାର୍ଥକ୍ୟ ମଧ୍ୟ ଥିଲା ଯେ, ଯେ କୌଣସି ପ୍ରକାର ବିମାନ କି ପ୍ରକାର ଶକ୍ତିସ୍ରୋତ

Digitized by srujanika@gmail.com

ପାଇଁ ବ୍ୟବହାର କରାଯିବ । ପ୍ରାଚୀନ କାଳରେ ଗୋଟିଏ ଗ୍ରନ୍ଥ ଲେଖାଅଛି । ତାହାର ନାମ ଅଂଶୁବୋଧିନୀ । ମହର୍ଷି ଭରଦ୍ୱାଜ ତାହାର ରଚୟିତା ବୋଲି କେହି କେହି କହନ୍ତି । ସେହି ଗ୍ରନ୍ଥରେ ଗୋଟିଏ ବିଶାଳ ଅଧିକରଣ ବୋଲି ଅଧ୍ୟାୟ ଦେଖା-ଯାଏ । ଏହି ଅଧିକରଣରେ 'ଶକ୍ତ୍ୟୁଦ୍‌ଗମୌଷ୍ଟୌ' ଏହାକୁ ବୌଧାୟନୀବୃତ୍ତିରେ ଏହିପରି ବ୍ୟାଖ୍ୟା କରି ଅଛନ୍ତି ।

ଶକ୍ତ୍ୟୁଦ୍‌ଗମୋ ଭୂତବାହୋ
ଧୂମଯାନ ଶ୍ଚିଖୋଦ୍‌ଗମଃ,
ଅଂଶୁବାହଃତାରା ମୁଖୋ
ମଣୀବାହୋ ମରୁତ୍ ସଖଃ
ଇତ୍ୟଷ୍ଟକାଧିକରଣେ
ବର୍ଗାଣ୍ୟୁକ୍ତାନି ଶାସ୍ତ୍ରତଃ ।

ଅର୍ଥ—( ଶକ୍ତି—ଉଦ୍‌ଗମ ବିଦ୍ୟୁତ୍ ଚାଳିତ ), ଭୂତବାହ ( ଅଗ୍ନି, ଜଳ, ବାୟୁଦ୍ୱାରା ଚାଳିତ ), ଧୂମଯାନ ( ବାଷ୍ପଚାଳିତ ), ଶିଖୋଦ୍‌ଗମ ( ପଞ୍ଚଶିଖୀ ତେଲରେ ଚାଳିତ ) ଅଂଶୁବାହ ( ସୂର୍ଯ୍ୟ କିରଣ ଚାଳିତ ) ତାରାମୁଖ (ଉଲ୍‌କାରସ ଚୁମ୍ବକ ଦ୍ୱାରା ଚାଳିତ), ମଣିବାହ (ସୂର୍ଯ୍ୟକାନ୍ତ ଓ ଚନ୍ଦ୍ରକାନ୍ତ ମଣି ଦ୍ୱାରା ଚାଳିତ), ମରୁତ୍ ସଖା (ବାୟୁଦ୍ୱାରା ଚାଳିତ), ଏହି ଅଠ ପ୍ରକାର ବିମାନ ଶାସ୍ତ୍ରୋକ୍ତ ଅଟେ ।

ଅଂଶୁବୋଧିନୀ ନାମରୁ ସ୍ପଷ୍ଟ ଜଣା ଯାଉଅଛି ଯେ, ଏହି ଗ୍ରନ୍ଥରେ ପ୍ରକାଶ ରଶ୍ମି, ରଞ୍ଜନରଶ୍ମି, ଶରବରାହ ଏବଂ ସମ୍ଭବତଃ ଅନ୍ତରୀକ୍ଷ କିରଣର ଏବଂ ଚୁମ୍ବକୀୟ ତତ୍ତ୍ୱର ଅଧ୍ୟୟନ ସେତେବେଳେ କରା ଯାଇଥିଲା । ଏହିପରି ନାନା ପ୍ରକାର ଶକ୍ତିସ୍ରୋତ ସମ୍ବନ୍ଧରେ ବର୍ତ୍ତମାନ ଅନୁସନ୍ଧାନ କରିବା ଆବଶ୍ୟକ । ଅନୁସନ୍ଧାନର ଉପଯୁକ୍ତ

Digitized by srujanika@gmail.com

ବିଷଯ଼ ଅଟେ କି ଉଲ୍ଲୁକ ନାମରେ କୌଣସି ପ୍ରକାର ବାଯ଼ୁଯାନର ନାମ ସୁଦ୍ଧା ନ ଥିଲା । କିନ୍ତୁ ଉଲ୍ଲୁକ ରାତିରେ ଯାତାଯ଼ାତ କରେ ଏବଂ ତସ୍କର ବ୍ୟାପାରରେ ଉପଯୋଗୀ ହୁଏ । ଲକ୍ଷ୍ମୀ ଭଗବାନଙ୍କ ସହିତ ଗରୁଡ଼ବାହନା ଅଟନ୍ତି, ଲକ୍ଷ୍ମୀ ଏକା ଉଲ୍ଲୁକବାହନା । ଏହି କାବ୍ୟମଯ଼ୀ ଶବ୍ଦର ଭୌତିକ ଅର୍ଥ ଖୋଜିବା ଆବଶ୍ୟକ ।

ବୌଦ୍ଧ ଯୁଗରେ ମଧ୍ୟ ବିମାନ ନିର୍ମାଣରେ ବିଶେଷଜ୍ଞ ଥିଲେ । ଏହାର ପ୍ରମାଣ ସ୍ୱରୂପ ଧର୍ମପଦରୁ ଏକ ବୃତ୍ତାନ୍ତ ମଧ୍ୟ ଦିଆଗଲା ।

ବୋଧି ରାଜକୁମାର ଏକ ପରମ ବିଚିତ୍ର ମହଲ କନୈକ କାରିଗର ଦ୍ୱାରା ନିର୍ମାଣ କରାଇ ଥିଲେ । ପରେ ଆଶଙ୍କା ହେଲା କି ଏହି କାରିଗର କାଳେ ଏହାପରି ଅନ୍ୟ ଗୋଟିଏ ସୁନ୍ଦର ପ୍ରାସାଦ ଅନ୍ୟ କାହା ପାଇଁ ଗଢ଼ି ଦେଇପାରେ, ଏହି ଆଶଙ୍କାରେ ରାଜା ତାହାର ହସ୍ତ ଛେଦନ କରିଦେବାକୁ ବିଚାର କଲେ । ରାଜା ନିଜର ବିଚାର ମନ୍ତ୍ରୀଙ୍କଠାରେ ପ୍ରକାଶ କଲେ । ମନ୍ତ୍ରୀ ମଧ୍ୟ କାରିଗରକୁ ଜଣାଇ ଦେଲେ । କାରିଗର ନିଜର ସମସ୍ତ ସମ୍ପତ୍ତି ଚୁପ୍ ଚାପ୍ ବିକି କରିଦେଲା ଏବଂ ଦରଖାସ୍ତ ଦେଲା ଯେ, ସ୍ତ୍ରୀପୁତ୍ର ପରିଜନମାନଙ୍କୁ ଏ ଗୃହଟି ଦେଖାଇବାକୁ ତାହାର ଇଚ୍ଛା । ଅତଏବ ମତେ ହୁକୁମ ଦିଆଯାଉ । ଯଥା ସମଯ଼ରେ 'ହୁକୁମ ମଧ୍ୟ ମିଳିଗଲା । କାରିଗର ସମସ୍ତ ପରିବାର ସହିତ ପ୍ରାସାଦକୁ ଗଲା । ପ୍ରାସାଦର ଏକ କୋଠରୀରେ ଗରୁଡ଼ ଯନ୍ତ୍ର ଥିଲା । କାରିଗର ତାହା ଜାଣିଥିଲା—ସେ ସପରିବାର ଗରୁଡ଼ ଉପରେ ଚଢ଼ି ପ୍ରଥମେ ନେପାଳକୁ ଚାଲିଗଲା ।

Digitized by srujanika@gmail.com

ପୁନର୍ଦାରମସକ୍ତୁନସ୍ତସ କୃତ୍ରିମଂ
ନିଷୀଦଯିତ୍ୱା ବାତପାତେନ ।
ନିଷ୍କ୍ରମିତ୍ୱା ପଳାୟି ... ...

( ଧର୍ମପଜ୍ଜ ବୋଧି ରାଜ କୁମାର ବଥୁ ) ଏଠାରେ ବିମାନ ପାଇଁ ଗରୁଡ଼ ଯନ୍ତ୍ର ଶବ୍ଦର ଉପଯୋଗ କରାଯାଇ ଥିବା । ଏହା ମଧ୍ୟ ଲିଖିତ ଅଛି କି ସେହି ଯନ୍ତ୍ର ଗୋଟିଏ କୋଠରୀରେ ବନ୍ଦ ରହୁଥିଲା, ଯାହା ଉପରେ ଶିଳ୍ପୀର ସମସ୍ତ ପରିବାର ଉଡ଼ିଗଲେ । ଏହିପରି ବିମାନ କପର କୋଠରୀ ମଧ୍ୟରେ ବନ୍ଦ ରହୁଥିଲା ।

ବାଲ୍ମୀକି ରାମାୟଣରେ ରାବଣର ପୁଷ୍ପକ ବିମାନ ଅତି ସଜୀବ ଭାବେ ବର୍ଣ୍ଣନା ହୋଇଅଛି । ରତ୍ନପ୍ରଭାରେ ପ୍ରକାଶମାନ (ରତ୍ନପ୍ରଭାଭିଷ୍ଟ ଦେଦୀପ୍ୟମାନମ୍ ୭।୧୧) ସ୍ୱର୍ଣ୍ଣକମଳରେ ବିଭୂଷିତ (ହେମପଦ୍ମ ବିଭୂଷିତମ୍ ଖ ୭।୧୧ ଓ ୧।୨୪) ଏହି ନଭଯାନରେ

କୃତାଶ୍ଚ ବୈଦୁର୍ଯ୍ୟମୟାଃ ବିହଙ୍ଗାଃ
ରୂପ୍ୟ ପ୍ରବାଳୈଶ୍ଚ କୃତା ବିହଙ୍ଗାଃ
ଚିତ୍ରାଶ୍ଚନାନା ବସୁଭିଃ ବିହଙ୍ଗାଃ
ଜାତ୍ୟାନୁରୂପାଃ ତୁରଗା ଶୁଭାଂଗାଃ ।
୫।୭।୧୨

ଏଥିରେ ବୈଦୁର୍ଯ୍ୟମଣି, ରୂପା ଓ ସୁନାର ପକ୍ଷୀ ନାନାବିଧ ରତ୍ନରେ ଅଶ୍ୱ ମଧ୍ୟ ନିର୍ମିତ ଥିଲା ।

ବିମାନର ଖମ୍ଭସବୁ ଏପରି ଭାବେ ବର୍ଣ୍ଣନା ହୋଇଥିଲା :—

ଇହାମୃଗ ସମାଯୁକ୍ତୈଃ କାର୍ତ୍ତସ୍ୱର ହିରଣ୍ମୟୈଃ
ମୁକ୍ତାଭୈରାଜିତଂ ସ୍ତମ୍ଭୈଃ ପ୍ରଦୀପ୍ତମପି ଚ ଶ୍ରିୟା ।
୫।୯।୧୩



Digitized by srujanika@gmail.com

ଏହି ଖମ୍ବମାନଙ୍କରେ ନାଗମାନଙ୍କର ଚିହ୍ନ ଥିଲା । ମନେ ହେଉଥିଲା, ଏହି ହଂସମାନେ ବିମାନକୁ ଉଡ଼ାଇ ନେଉଅଛନ୍ତି କି ?

ହଂସୈଃ ପ୍ରବଦ୍ଭିରିବ ବାହ୍ୟମାନଂ । ୫।୭।୭

ସେଥିରେ ସୁନା ଏବଂ ସ୍ଫଟିକରେ ପାହାଚ୍ଛ ଇନ୍ଦ୍ରନୀଳ ଓ ମହାନୀଳ ମଣି ନିର୍ମିତ ଝରକାସବୁ ଥିଲା । ୫।୯।୧୫।୧୬

ଏହି ବିମାନରେ କମଳାସନା ଲକ୍ଷ୍ମୀଙ୍କର ଏକ ବଡ଼ କଳାମୟୀ ମୂର୍ତ୍ତି ମଧ୍ୟ ଥିଲା ।

ଲକ୍ଷ୍ମୀ ସ୍ତଥା ପଦ୍ମିନୀ ପଦ୍ମହସ୍ତା । ୫।୭।୧୪

ସମ୍ଭବତଃ ଏହି ପଦ୍ମାକୃତି ସାମ୍ୟର କାରଣ ବଶତଃ ବିମାନକୁ ପୁଷ୍ପକ ନାମ ଦିଆ ଯାଇଥିଲା । ସମ୍ଭବତଃ ଗରୁଡ଼ ବିମାନର ଅକୃତି ଗରୁଡ଼ ପକ୍ଷୀ ସଦୃଶ ହୋଇଥିଲା ।

ଏହାପରି ଅଧିକ ନିଶାଚର ତଥିର ଭରି ଯାଇଥିଲା, ସେମାନେ ଆକାଶରେ ଉଡ଼ିବା ସମୟରେ ପୁଷ୍ପକ ଯାନକୁ ମଧ୍ୟ ଉଡ଼ାଇ ନେଉଥିଲେ ।

ମହାଶନା ବ୍ୟୋମଚର ନିଶାଚରାଃ ।

ପୁଷ୍ପକ ବିମାନ ଉଡ଼ିବାର ରମଣୀୟ ବର୍ଣ୍ଣନା ମଧ୍ୟ ଲେଖା ଅଛି ।

ପ୍ରବାଳ ଜାମ୍ବୁନଦ ପୁଷ୍ପପକ୍ଷାଃ
ସଲୀଳ ମାବର୍ଜିତ ଜିହ୍ମପକ୍ଷାଃ
କାମସ୍ୟ ସାକ୍ଷାଦିବ ଭାନ୍ତିପକ୍ଷାଃ
କୃତାଃ ବିହଙ୍ଗା ସୁମୁଖାଃ ସୁପକ୍ଷାଃ ।
୫।୭।୧୩

ଏହି ବିବରଣୀରୁ ଗରୁଡ଼ ବାହନ ସମ୍ବନ୍ଧରେ ଅଧିକ ଜ୍ଞାନର ପ୍ରେରଣା ମିଳେ । ଦେବକୁଳର ବାହନ ଗୁଡ଼ିକର ପରମ୍ପରା

Digitized by srujanika@gmail.com

ଭାରତରେ ଅଧିକ ସମୟ ପର୍ଯ୍ୟନ୍ତ ବିଦ୍ୟମାନ ରହିଅଛି ।
ଉକ୍ତିପକ୍ଷର ଯାନକୁ କାଳିଦାସ ଯେପରି ବର୍ଣ୍ଣନା କରିଅଛନ୍ତି,
ତାହା ଭୂମିସ୍ଥିତ ରଥ ଅପେକ୍ଷା ଆକାଶସ୍ଥିତ ରଥ ସହିତ ଅଧିକ
ସାମ୍ୟ ଅଛି ।

ମରୁତ୍ ପ୍ରଯୁକ୍ତାଶ୍ଚ ମରୁତ୍ ସଖା ଭଂ
ତମର୍ଚ୍ଚ୍ୟମାରାଦଭିବର୍ତ୍ତି୍ୟ ମାନଂ ।
ଅବା କିରନ୍ ବାଲଲତା ପ୍ରସୂନେ
ରାଚାରଲାଜୈରିବ ପୌରକନ୍ୟା ॥ (ରଘୁବଂଶ)

ବିଷ୍ଣୁପୁରାଣରେ ଏକ ପ୍ରସଙ୍ଗରେ ଲେଖା ଅଛି—ଗରୁଡ଼
ଅର୍ଥାତ୍ ହରିଯାନ ଆକାଶ ଗଙ୍ଗାରେ ବୁଡ଼ୁଥିଲା ।

ତାହା ହେଲେ ଏଥିରୁ ସେହି ଗରୁଡ଼ ଅନ୍ତରୀକ୍ଷ ଯାନର
ନିଦର୍ଶନ ବୋଲି ପ୍ରତୀତ ହୁଏ ।

ଗରୁଡ଼ ପାଇଁ ହରିଯାନ ଶବ୍ଦର ପ୍ରୟୋଗ ବହୁ କାବ୍ୟରେ
ଦେଖିବାକୁ ମିଳେ । ଏହାର ଆକାର ଗୋଟିଏ ପକ୍ଷୀପରି ଥିଲା ।
ପୁଷ୍ପକର ଆକାର ମଧ୍ୟ ସେହିପରି ଥିଲା । ପକ୍ଷୀ ନ ଥାଇ ପାରେ,
କିନ୍ତୁ କାବ୍ୟର ଶୈଳୀ ତାକୁ ପକ୍ଷୀ ନାମ ଦେଇଥିଲା ।

ପଞ୍ଚତନ୍ତ୍ରରେ ଗୋଟିଏ ଗଳ୍ପ ଅଛି । ଯହିଁରେ ଗୋଟିଏ
ସ୍ତ୍ରୀଲୋକ ବିଷ୍ଣୁଙ୍କର ରୂପ ଧାରଣ କରି ଗରୁଡ଼ ସଦୃଶ ବିମାନରେ
ବସି ଆକାଶ ମାର୍ଗରେ କୌଣସି ରାଜକୁମାର ସହିତ ଦେଖା
କରିବାକୁ ପ୍ରତ୍ୟହ ଯାଉଥିଲା ।

ଶ୍ରୀମଦ୍ ଭାଗବତରେ ଶାଲ୍ୱ ଦେଶର ରାଜାଙ୍କର ବିମାନ
ଚାଳନରେ ଅଦ୍ଭୁତ କ୍ଷମତା ଥିଲା ।

ଭୋଜ ପ୍ରବନ୍ଧରେ ଲେଖାଅଛି ଯେ, ଭୋଜ ରାଜାଙ୍କର
ଗୋଟିଏ କାଷ୍ଠନିର୍ମିତ ଘୋଡ଼ାଟିଏ ଥିଲା । ସେ ଏକ ଘଣ୍ଟାରେ

Digitized by srujanika@gmail.com

୧୧ କୋଶ ଯାତାୟାତ କରୁଥିଲା । ତାଙ୍କ ପାଖରେ ଏକ ପଙ୍ଖା ଥିଲା, ଯେ କି ବିନା ମନୁଷ୍ୟରେ ସର୍ବଦା ତୀବ୍ରଗତିରେ ଚାଲୁଥିଲା :-

ଘଟୀଦ୍ୱୟେନୈକଯୁଗ୍ମକୋଶଦ ଟୈକମଶ୍ୱଃ
ସୁକୃତମୋ ଗଚ୍ଛତି ଚାରୁଗତ୍ୟା ।
ବାୟୁଂ ଦଦାତି ବ୍ୟଜନଂ ସୁପୁଷ୍କଲଂ
ବିନା ମନୁଷ୍ୟେଣ ଚଲତ୍ୟଜସ୍ରମ୍ ।

ଏହି ଯନ୍ତ୍ରବିଦ୍ୟା ପୂର୍ବେ ଯନ୍ତ୍ରକଳାରେ ଏତେ ଅଧିକ ମହତ୍ତ୍ୱ ପ୍ରଦାନ କରୁଥିଲା । ଆଜି ବୈଦେଶିକ ଶାସନବଶତଃ ସେହି ସବୁ ଅକସ୍ମାତ୍ ଲୁପ୍ତ ହୋଇଅଛି । ତେଣୁ ଆଧୁନିକ ଶିକ୍ଷିତମାନଙ୍କର ଆମ ପ୍ରାଚୀନ ଭାରତରେ ଏସବୁ ବିଦ୍ୟା ଥିଲା ବୋଲି ବିଶ୍ୱାସ ହେଉ ନାହିଁ ।

ତୋପ, ବନ୍ଧୁକ, ବାରୁଦ ପ୍ରଭୃତି ଆମ ଦେଶରେ ନିର୍ମିତ ହେଉଥିଲା । ଏ ବିଷୟରେ ଶୁକ୍ରାଚାର୍ଯ୍ୟ କହିଅଛନ୍ତି :—

ମାନ୍ତ୍ରିକ ଅସ୍ତ୍ର ଅଭାବରେ ନାଳିକାସ୍ତ୍ର ଓ ଶସ୍ତ୍ର ରାଜାମାନେ ଯୁଦ୍ଧରେ ବ୍ୟବହାର କରୁଥିଲେ । ଏହି ନାଳିକ ଅସ୍ତ୍ର ଦୁଇପ୍ରକାର ଲଘୁ ନାଳିକ ( ବନ୍ଧୁକ ), ବୃହନ୍ନାଳିକ ( ତୋପ ), ଅଗ୍ନିଚୂର୍ଣ୍ଣ (ବାରୁଦ) । ଏହାର ପ୍ରମାଣ ଶୁକ୍ରନୀତିରୁ ୪ଅଗଳ—୨୮, ୩୧, ୩୪ ଶ୍ଳୋକ ।

ନାଳିକଂ ଦ୍ୱିବିଧଂ ଜ୍ଞେୟଂ ବୃହତ୍ କ୍ଷୁଦ୍ର ବିଭେଦତଃ
ତିର୍ଯ୍ୟଗୂର୍ଦ୍ଧ୍ୱ ଛିଦ୍ରମୂଳଂ ନାଳଂ ପଞ୍ଚ ବିତସ୍ତିକମ୍ ।
ମୂଳାଗ୍ରୟୋ ର୍ଲକ୍ଷ ଭେଦ ତିଲବିନ୍ଦୁ ଯୁତଂ ସଦା
ଯନ୍ତ୍ରାଘାତାଗ୍ନି କୃଦ୍ରାବଚୂର୍ଣ୍ଣଧୃକ୍ କର୍ଣ୍ଣକମ୍
ସୁକାଷ୍ଠୋ ପାଗ ବୁଘ୍ନଂ ଚ ମଧ୍ୟାଙ୍ଗୁଳ ବିଳାନ୍ତରଂ
ସ୍ୱାନ୍ତେଽଗ୍ନି ଚୂର୍ଣ୍ଣସଂଧାତ୍ରୀ ଶଳକା ସଂଯୁତଂ ଦୃଢମ୍ ।

Digitized by srujanika@gmail.com

ଲଘୁନାଲକମପେୟତତ୍ର ପ୍ରଧାର୍ଯ୍ୟଂ ପଞ୍ଚସାଦଭୁଃ
ଯଥା ଯଥାତ୍ର ଵୃକ୍‌ସାରଂ ଯଥା ସ୍ଥୂଳ ବଲାନ୍ତରଂ
ସୁବର୍ଚ୍ଚି ଲବଣାଢ୍ୟଂତ ପଲାନ୍ନ ଗନ୍ଧକାତ୍ର ପଲଂ
ଅନ୍ତର୍ଧୂମ ଵିପକ୍ୱାର୍କ ସ୍ନୁହ୍ୟା ଦ୍ୟଙ୍ଗାରତଃ ପଲମ୍ ।

୨୮, ୩୧, ୩୪ ଶ୍ଲୋକ

---

# ଆୟୁର୍ବେଦର ଯନ୍ତ୍ରକର୍ମ

ନିର୍ଘାତନୋନ୍ମଥନ ପୂରଣ ମାର୍ଗଶୁଦ୍ଧିଃ
ସଂବ୍ୟୂହନାହରଣ ବନ୍ଧନ ପୀଡ଼ନାନି ।
ଅଚୂଷଣୋନ୍ନମନ ନାମନ ଚ୍ଛଲଭଙ୍ଗ
ବ୍ୟାବର୍ତ୍ତିନର୍ଜୁକରଣାନି ଚ ଯନ୍ତ୍ରକର୍ମ ।

(ଅ, ହୃ, ସୂ, ଅ, ୨୫)

ନିର୍ଘାତନ ( ତାଡ଼ନ ) ଉନ୍ମଥନ ( ଉନ୍ମୂଳନ ) ପୂରଣ, ମାର୍ଗଶୁଦ୍ଧି, ସଂବ୍ୟୂହନ (ଉର୍ଦ୍ଧିକରଣ), ଅହରଣ, ବନ୍ଧନ, ପୀଡ଼ନ, ଆଚୂଷଣ, ଉନ୍ନମନ; ନାମନ, ଚ୍ଛଳ, ଭଙ୍ଗ, ବ୍ୟାବର୍ତ୍ତନ (ଭିତରେ ବୁଲାଇବା) ଓ ଋଜୁକରଣ ଏହି ସକଳ କାର୍ଯ୍ୟ ଯନ୍ତ୍ରଦ୍ୱାରା ସାଧିତ ହୁଏ ।

ପୂରଣ ଅର୍ଥ ଔଷଧଦ୍ରବ୍ୟ ଅଥବା ଅହାରଦ୍ରବ୍ୟକୁ ଯନ୍ତ୍ରଦ୍ୱାରା ଶରୀରରେ ଯେ କୌଣସି ସ୍ଥାନରେ ପ୍ରବେଶ କରାଇବା । ଯଥା— ସ୍ନେହବସ୍ତି, ନିରୁହବସ୍ତି, ଉତ୍ତରବସ୍ତି, ବ୍ରଣବସ୍ତି, ଅଧଃଶ୍ୱାଚୀସ୍ଥ ବସ୍ତି, ଶ୍ୱାଚୀସ୍ଥବସ୍ତି, ଶିରାନ୍ତର୍ଗତ ବସ୍ତି ଆଦିକୁ ପୂରଣ ଯନ୍ତ୍ର ବା ପିଚକାରୀ (Syrange) କହନ୍ତି । ଏହି ବସ୍ତିମାନଙ୍କ ମଧ୍ୟରୁ କେତେ ଗୋଟି ବସ୍ତିର ସୂଚନା ଦେଉଅଛି ।

Digitized by srujanika@gmail.com

'ବସ୍ତିକର୍ମକ୍ଷୁଦ୍ରସ୍ତୋନାଭେଃ ଶସତେ ସ୍ତବପୀଡ଼ନଃ' (ଚ-ଚକିତ୍ସା ସ୍ଥାନ) ବସ୍ତିକର୍ମ ନାଭିର ତଳଦେଶ ୪ ଅଙ୍ଗୁଳ ପରିସ୍ଥାନ, କ୍ଷୁଦ୍ର (ଚର୍ମ) ରେ କରିବ । ଏହାକୁ ଅଧଃକ୍ଷୁଦ୍ରୀୟ ବସ୍ତି (ପରକ୍ୟୁଟେନିୟସ ଇଞ୍ଜେକ୍‌ସନ) କୁହ'ଯାଏ ।

"ଅନ୍ତର କଣ୍ଡରାଙ୍ଗୁଳ୍ୟୋ ଶିରାବସ୍ତ୍ୟଗ୍ନି କର୍ମଚ ।"

"ବିସୂଚିକାୟାମପି ଶିରାବସ୍ତି କୁର୍ଯ୍ୟାତ୍ " (ଚ—ଚିକିତ୍ସାସ୍ଥାନ)

ପକ୍ଷାଘାତ ରୋଗରେ ଅଙ୍ଗୁଳ କଣ୍ଡରା ମଧ୍ୟେ ଶିରାବସ୍ତି ଓ ଅଗ୍ନିକର୍ମ କରିବ । ବିସୂଚିକା ରୋଗରେ ଶିରାବସ୍ତି (ଇଣ୍ଟ୍ରାଭେନସ୍ ଇଞ୍ଜେକ୍‌ସନ) ଦେବ ।

"କ୍ଷୁଦ୍ରତଳାତଂ ଶିରାବନ୍ଧଂ ଛିତ୍ତ୍ୱା (ଭିତ୍ତ୍ୱା) ବା ପରକୃତ୍ୟା ବା
ଅନ୍ତର କଣ୍ଡରାଙ୍ଗୁଳ୍ୟୋ ଶିରାବସ୍ତ୍ୟଗ୍ନି କର୍ମଚ" (ସୁ—ଶରୀର ସ୍ଥାନ)

ଚର୍ମକୁ ଚିରି ପଶ୍ଚାତ୍ ମଧ୍ୟ ଶିରାକୁ ଚିରି ଶ୍ରେଷ୍ଠ ଶିରାମାନଙ୍କୁ ଅଲଗା କରି ଶିରା ବସ୍ତିକର୍ମ ବିଦ୍ୱାନ୍ ହସ୍ତକୁଶଳ ବୈଦ୍ୟ ଯେ ଏ ମର୍ମଶିରାକୁ ଜାଣେ ସେ ଏହି ବସ୍ତି କର୍ମ କରିବ ।

"ବ୍ରହ୍ମଦ୍ୱାର ବିଦାର୍ଯ୍ୟ ଲୋହିତ ଲବେ ଗୁଞ୍ଜେକମାନଂ ଦଦେ-
ଦତ୍ତ୍ୱା ସଂପୁଟ ବନ୍ଧ ତନ୍ଦ୍ରକ ଧନୁର୍ବାତେ ସଶାଖାନ୍ଧ ମେ ।"
(ସା, ସଂହିତା)

ଧନୁର୍ବାତ ତଥା ତନ୍ଦ୍ରକ ରୋଗ ଓ ଶୀତାଙ୍ଗ ସନ୍ନିପାତରେ ତାଳୁର ମଧ୍ୟଦେଶ ଲୋହଶସ୍ତ୍ର (ଗ୍ରକୁ, କ୍ୟୁଟେନିୟସ୍ ଇଞ୍ଜେକ୍‌ସନ) ଦ୍ୱାରା ବିଦାର୍ଯ୍ୟ ( ବିଦାରଣ ) କରି ୧ ଗୁଞ୍ଜ ସୂଚୀମୁଖରସ ନେଇ ବିଦାରଣ କ୍ଷତ ଉପରେ ଘସି ପଟି ବାନ୍ଧିବ । ମସ୍ତିଷ୍କର ଝିଲ୍ଲି ମଧ୍ୟରେ ଉପଯୁକ୍ତ ପ୍ରକାର ଔଷଧ ପହୁଞ୍ଚାଇ ଦେବ ।

ଅନେକ ରୂପ କାର୍ଯ୍ୟାଣି ଯନ୍ତ୍ରାଣି ବିବଧାନ୍ୟତଃ
ବିକଲ୍ପ୍ୟ କଲ୍ପୟେଦ୍ ବୁଦ୍ଧ୍ୟା ଯଥାସ୍ଥୁଳଂ ତୁ ବକ୍ଷ୍ୟତେ ।
(ଅ, ହୃ, ସୂ, ଅ,—୨୫)

Digitized by srujanika@gmail.com

ଅନେକ ପ୍ରକାର ଅକୃତ ଓ କାର୍ଯ୍ୟ ବଶିଷ୍ଟ ଯନ୍ତ୍ର ବର୍ଣ୍ଣିତ ଅଛି । ବୁଦ୍ଧି ପୂର୍ବକ କାର୍ଯ୍ୟାନୁସାରେ ଯନ୍ତ୍ରର କଳ୍ପନା କରିବେ । ଏଠାରେ ସ୍ଥୂଳ ଯନ୍ତ୍ରର ଉଲ୍ଲେଖ କରୁଁ । ସ୍ଥୂଳ ଯନ୍ତ୍ରରେ ବୁଦ୍ଧିମାନ ବ୍ୟକ୍ତି ପ୍ରୟୋଜନ ମତେ ଶେଷ ସୂକ୍ଷ୍ମ ଯନ୍ତ୍ରର ଉତ୍ପାଦନରେ ସକ୍ଷମ ହେବେ ।

"ସମୀକ୍ଷ୍ୟଦୋଷୌଷଧ ଦେଶକାଳ
ସାତ୍ମ୍ୟାଗ୍ନି ସତ୍ତ୍ୱାଦ ବୟୋବଳାନ୍ ।
ବସ୍ତି ପ୍ରଯୁକ୍ତୋ ନିୟତଂ ଗୁଣାୟ ସ୍ୟାଃ
ସର୍ବକର୍ମାଣି ଚ ସିଦ୍ଧିମନ୍ତ୍ର ।"

ବସ୍ତିକର୍ମ ଚିକିତ୍ସା କରିବା ପୂର୍ବରୁ ଯେଉଁସବୁ ବିଷୟ ପ୍ରତି ବୈଦ୍ୟର ଅଧିକ ଧ୍ୟାନ ଦେବା ଦରକାର ତାହା ସ୍ପଷ୍ଟ କରି ଦେବାକୁ ଯାଇ ଚରକ କହିଛନ୍ତି ଦୋଷ, ଔଷଧ, ଦେଶ, କାଳ, ସାତ୍ମ୍ୟ, ଅଗ୍ନି—ସତ୍ତ୍ୱ, ବଳ ତଥା ବୟସକୁ ଦେଖି ବିଚାର ପୂର୍ବକ ବସ୍ତି ଦେଲେ ସିଦ୍ଧି ହୋଇଥାଏ ସୁତରାଂ ଉପଯୁକ୍ତ ହସ୍ତକୁଶଳ ବୈଦ୍ୟ ଠାରୁ ସୂଚୀବେଧ ବସ୍ତିକର୍ମର ସମସ୍ତ ବିଧାନ ଶିକ୍ଷା ପରେ ସ୍ୱୟଂ ଚିକିତ୍ସା ଆରମ୍ଭ କରିବେ । ଏଥିରୁ ସ୍ପଷ୍ଟ ଜଣାଯାଉଅଛି ଯେ, ଇଂଜେକ୍ସନ ପ୍ରଭୃତି ଆମ ଦେଶରେ ଥିଲା ।

## କୌଟିଲ୍ୟ ଓ ଅର୍ଥଶାସ୍ତ୍ର

ଜାତୀୟ ଐତିହ୍ୟର ଅସାରତାପ୍ରମାଣ କରି ଗର୍ବ ଅନୁଭବ କରିବା ଆଧୁନିକ ଯୁଗର କେତେକ ତଥାକଥିତ ଶିକ୍ଷିତମାନଙ୍କର ଏକ ପ୍ରଧାନ ଚରିତ୍ରଗତ ବୈଶିଷ୍ଟ୍ୟ । ଅତୀତକୁ ଏକମାତ୍ରସମ୍ବଳ କରି ଗ୍ରହଣ କରିବା ଏବଂ ବର୍ତ୍ତମାନ ଜଗତ ସହିତ ସମତାଳରେ ଗତି କରିବାରୁ ନିଜର ସଭ୍ୟତା ଓ ସଂସ୍କୃତିକୁ ବଞ୍ଚିତ କରିବା ଯେ ଜାତୀୟମର୍ଯ୍ୟାଦା କ୍ଷୁଣ୍ଣ କରେ ଏଥିରେ ସନ୍ଦେହର ଅବକାଶ ନାହିଁ ।

Digitized by srujanika@gmail.com

କିନ୍ତୁ ଏହାବୋଲି ଅତୀତର ଭିତ୍ତିଭୂମି ଉପରେ ଭବିଷ୍ୟତର ଅଟ୍ଟାଳିକା ନିର୍ମାଣ କରିବା ଏବଂ ଅତୀତ ସାଗରର ବେଳା ଭୂମିରୁ ଉପାଦେୟ ଉପଲଖଣ୍ଡର ଆହରଣ କରି ଭବିଷ୍ୟତ ପାଇଁ ସାଇତି ରଖିବା କେବେହେଲେ ଦୋଷଦୁଷ୍ଟ ନୁହେଁ। ସେ ଯାହାହେଉ, ଅନ୍ୟାନ୍ୟ କ୍ଷେତ୍ରପରି ରାଜନୀତି ସମାଜନୀତି କ୍ଷେତ୍ରରେ ଅତୀତ ଭାରତୀୟ ବିଦ୍ୱାନ୍‌ମାନେ ଯେ କେବେହେଲେ ଯୁଗୋପଯୋଗୀ ଚିନ୍ତାଧାରାର ପରିବେଷଣ ସମାଜସମକ୍ଷରେ କରି ନ ଥିଲେ ଏହା କହିବା ନିତାନ୍ତ ଅଯୌକ୍ତିକ । ରାଜତନ୍ତ୍ର ଶାସନ ହେଉ ବା ପ୍ରଜାତନ୍ତ୍ର ଶାସନ ହେଉ, ଏହାର କ୍ରମବିବର୍ତ୍ତନ ବିଷୟ ଆଲୋଚନା କରିବାକୁ ଗଲାବେଳେ ଆମେ ସାଧାରଣତଃ ଭାରତୀୟ ଅତୀତ ପରମ୍ପରାକୁ ବିସ୍ମୃତ ହୋଇଯାଉ । ଶିବି ବା ଉଶୀନର ଐତିହାସିକ ଚରିତ୍ର ହୋଇ ନ ପାରନ୍ତି । କିନ୍ତୁ ସେମାନଙ୍କ ସମ୍ବନ୍ଧୀୟ ଉପାଖ୍ୟାନରେ ଯେ ତାତ୍କାଳିକ ସମାଜର ଚିତ୍ର ପରିସ୍ଫୁଟ ନ ହୋଇଛି ଏହା କୁହାଯାଇ ନ ପାରେ । ପୌରାଣିକ ଗାଥାଗୁଡ଼ିକ କାଳ୍ପନିକ ହୋଇ ପାରନ୍ତି । କିନ୍ତୁ ସେଥିରେ ବର୍ଣ୍ଣିତ ରାଜଧର୍ମ, ପ୍ରଜାର କର୍ତ୍ତବ୍ୟ ପ୍ରଭୃତି ସେହି ସମୟର ସମାଜର ନିଷ୍ଠାର ଏକ ପ୍ରଧାନ ଅଙ୍ଗରୂପେ ପ୍ରଚଳିତ ଥିଲା । ଅତୀତଭାରତର ରାଜନୀତି ତଥା ସମାଜନୀତି ବିଜ୍ଞାନ ମଧ୍ୟରେ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର, ମନୁ, ପରାଶର, ଯାଜ୍ଞବଲ୍କ୍ୟ ଆଦିଙ୍କ 'ସଂହିତା' ତଥା କାମନ୍ଦକଙ୍କ 'ନୀତିସାର' ପ୍ରଭୃତି ଗ୍ରନ୍ଥଗୁଡ଼ିକ ଉଲ୍ଲେଖଯୋଗ୍ୟ । ଶ୍ରୀଯୁକ୍ତ ରାଜେନ୍ଦ୍ରଲାଲ ମିତ୍ରଙ୍କ ମତାନୁସାରେ ଖ୍ରୀଷ୍ଟୀୟ ୪ର୍ଥ ଶତାବ୍ଦୀରେ ବାଲିଦେଶକୁ ପଳାଇ ଆସିଥିବା ହିନ୍ଦୁମାନଙ୍କ ମଧ୍ୟରେ 'ନୀତିସାର' ଏକ ପ୍ରଧାନ ଗ୍ରନ୍ଥରୂପେ ପ୍ରଚଳିତ ଥିଲା । ଏହାର ସ୍ଥାନଥିଲା ମହାଭାରତରେ ପରେ ।ଯୁଗରେ ବର୍ତ୍ତମାନ ଏହି ପ୍ରବନ୍ଧରେ ଆମ୍ଭେମାନେ ଅତୀତ ଭାରତର

Digitized by srujanika@gmail.com

ଅର୍ଥନୀତିଜ୍ଞ ତଥା ରାଜନୀତିଜ୍ଞ କୌଟିଲ୍ୟ ଓ ତତ୍ପ୍ରଣୀତ 'ଅର୍ଥଶାସ୍ତ୍ର' ବିଷୟରେ କିଞ୍ଚିତ୍ ଅବଲୋକନା କରିବୁଁ ।

ଭାରତ ଇତିହାସର ପୃଷ୍ଠା ପର୍ଯ୍ୟାଲୋଚନା କଲେ ଆମେ ଦେଖୁଁ ଯେ, ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦୀର ପ୍ରଥମାର୍ଦ୍ଧରେ ନନ୍ଦବଂଶର ଧ୍ୱଂସ ସାଧନ ହେବାପରେ ମୌର୍ଯ୍ୟବଂଶର ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ପ୍ରଥମ ହୋଇ ଭାରତର ସମ୍ରାଟ ହେଲେ । କିନ୍ତୁ ଚନ୍ଦ୍ରଗୁପ୍ତଙ୍କୁ ରାଜଗାଦିରେ ଅଧିଷ୍ଠିତ କରିବା ପଛରେ ଏକ କୌତୁହଳୋଦ୍ଦୀପକ ଗାଥା ପ୍ରଚଳିତ ଅଛି । ନନ୍ଦରାଜାଙ୍କ ଦ୍ୱାରା ଅପମାନିତ ହୋଇ ତାଙ୍କର ପୁରୋହିତ ଚାଣକ୍ୟ ପ୍ରତିଜ୍ଞାବଦ୍ଧ ହୋଇଛନ୍ତି ନନ୍ଦବଂଶର ବିନାଶସାଧନ କରିବା ପାଇଁ । ପ୍ରତିହିଂସା ସାଧନ କରିବା ପାଇଁ ସେ ବିପକ୍ଷପକ୍ଷର ରାଜା ଚନ୍ଦ୍ରଗୁପ୍ତଙ୍କ ନିକଟକୁ ନିମନ୍ତ୍ରଣ ନେଇ ଯାଇ ଅଛନ୍ତି ଯେ, ସେ ଅତି ସ୍ୱେଚ୍ଛାଚାରୀ ଏବଂ ଦେବତା-ବ୍ରାହ୍ମଣ ପରାଙ୍ମୁଖ ନନ୍ଦରାଜାଙ୍କର ଧ୍ୱଂସସାଧନ କରନ୍ତୁ । ଚନ୍ଦ୍ରଗୁପ୍ତ, ଯେତେବେଳେ ଦେଖନ୍ତି ଯେ ନନ୍ଦବଂଶର କୁଳଶତ୍ରୁ ହେଉଛନ୍ତି ସେହି ବଂଶର ପୁରୋହିତ ସେତେବେଳେ ସେ ଅତି ଆନନ୍ଦିତ ହୋଇ ସେହି ଚାଣକ୍ୟଙ୍କର ପରାମର୍ଶରେ ଯୁଦ୍ଧାଭିଯାନ ଚଳାଇଛନ୍ତି ନନ୍ଦବଂଶର ବିରୁଦ୍ଧରେ । ଯୁଦ୍ଧରେ ନନ୍ଦବଂଶର ପତନ ହେଲା । ଚନ୍ଦ୍ରଗୁପ୍ତ ନିଜର ସାମ୍ରାଜ୍ୟ ସ୍ଥାପନ କଲେ । ଏହି ଚାଣକ୍ୟ ହିଁ ହେଉଛନ୍ତି 'ଅର୍ଥଶାସ୍ତ୍ର'ର ପ୍ରଣେତା କୌଟିଲ୍ୟ । ଅନ୍ୟତ୍ର ସେ ବିଷ୍ଣୁଗୁପ୍ତ ନାମରେ ମଧ୍ୟ ପରିଚିତ । କୁଟିଳ ଗୋତ୍ରରେ ଜନ୍ମଗ୍ରହଣ କରିଥିବାରୁ ତାଙ୍କୁ କୌଟିଲ୍ୟ କୁହାଯାଏ । ତାଙ୍କର ନିଜର ବାସସ୍ଥାନ 'ଚଣକ' ଅନୁଯାୟୀ ସେ ଚାଣକ୍ୟ ବୋଲି ପ୍ରସିଦ୍ଧ ଏବଂ ତାଙ୍କର ନାମକରଣ ସମୟରେ ତାଙ୍କର ପିତା ତାଙ୍କୁ ବିଷ୍ଣୁଗୁପ୍ତ ଆଖ୍ୟା ପ୍ରଦାନ କରିଥିଲେ । କୌଟିଲ୍ୟଙ୍କ ସମୟ ବିଷୟରେ

Digitized by srujanika@gmail.com

ବହୁବାଦାନୁବାଦ ପରେ ଏହା ସିଦ୍ଧାନ୍ତିତ ହୋଇଅଛି ଯେ ଖ୍ରୀଷ୍ଟପୂର୍ବ ୩୨୧ରୁ ୩୦୦ ଅବ୍ଦ ମଧ୍ୟରେହିଁ ଚାଣକ୍ୟ ଅର୍ଥଶାସ୍ତ୍ର ରଚନା କରିଥିଲେ । ଇତିହାସ କହେ ଯେ ଖ୍ରୀଷ୍ଟପୂର୍ବ ୩୨୧ ଅବ୍ଦରେ ଚନ୍ଦ୍ରଗୁପ୍ତ ସିଂହାସନାରୋହଣ କଲେ ଏବଂ ଅର୍ଥଶାସ୍ତ୍ରର ବର୍ଣ୍ଣନା କହେ ଯେ ଏହା ଚନ୍ଦ୍ରଗୁପ୍ତଙ୍କ ରାଜ୍ୟଶାସନ ପ୍ରଣାଳୀର ଏକ ଅମୂଲ ବର୍ଣ୍ଣନା । ତେଣୁ ଏହା ନିଶ୍ଚିତ ଯେ, ଖ୍ରୀଷ୍ଟପୂର୍ବ ୩୨୧ ପରେ ହିଁ କୌଟିଲ୍ୟ ଅର୍ଥଶାସ୍ତ୍ର ପ୍ରଣୟନ କରିଥିଲେ ।

କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ୧୫ଟି ଅଧିକରଣରେ ବିଭକ୍ତ । ପ୍ରତ୍ୟେକ ଅଧିକରଣରେ ଗୋଟିଏ ଗୋଟିଏ ପ୍ରଧାନ ବିଷୟ ବସ୍ତୁର ଅବତାରଣା ହୋଇଅଛି । ପ୍ରତ୍ୟେକ ଅଧିକରଣ କେତେଗୁଡ଼ିଏ ଅଧ୍ୟାୟରେ ବିଭକ୍ତ । ପ୍ରତ୍ୟେକ ଅଧ୍ୟାୟରେ ଠିକ ନିର୍ଦ୍ଦିଷ୍ଟ ଭାବରେ ଅଧିକରଣର ବିଷୟ ବସ୍ତୁର ଆଲୋଚନା କରି ଯାଇଅଛି । ପ୍ରଥମ ଅଧିକରଣରେ "ବିନୟାଧିକାରିକ" ଶୀର୍ଷକ ବିଷୟ ବସ୍ତୁର ଆଲୋଚନା ୨୧ଟି ଅଧ୍ୟାୟରେ କରାଯାଇଅଛି । ୨ୟ ଅଧ୍ୟାୟ 'ଅଧ୍ୟକ୍ଷ ପ୍ରଚାର' । ଏଥିରେ ୩୬ଟି ଅଧ୍ୟାୟ ଅଛି । ୩ୟ ଅଧ୍ୟାୟ 'ଧର୍ମସ୍ଥୀୟ' । ଏହା ୨୦ଟି ଅଧ୍ୟାୟ ବିଶିଷ୍ଟ । ଏଥିରେ ମୋକଦ୍ଦମାର ବିଚାର କପରି କରିବାକୁ ହୁଏ ତାହାର ସବିଶେଷ ବିବରଣ ଦିଆଯାଇଅଛି । ମୋକଦ୍ଦମା ଗୁଡ଼ିକୁ ଆଧୁନିକ ଯୁଗର ବିଭାଗ ଭଳି ଦେବାନୀ ଓ ଫୌଜଦାରୀ ଏହିପରି ୨ଟି ଭାଗରେ ବିଭକ୍ତ କରାଯାଇଅଛି ଏବଂ ପ୍ରତ୍ୟେକ ବିଭାଗ ପାଇଁ ସ୍ୱତନ୍ତ୍ର ବିଚାର ପଦ୍ଧତି ନିର୍ଦ୍ଦିଷ୍ଟ କରାଯାଇଅଛି । ମୋକଦ୍ଦମା ବିଚାର ସମ୍ବନ୍ଧରେ କୌଟିଲ୍ୟ କହନ୍ତି—

"ଧର୍ମସ୍ଥାସ୍ତ୍ରୟସ୍ତ୍ରୟୋଽମାତ୍ୟା, ଜନପଦସନ୍ଧିସଂଗ୍ରହ
ଦ୍ରୋଣମୁଖସ୍ଥାନୀୟେଷୁ ବ୍ୟାବହାରିକାନର୍ଥାନ୍ କୁର୍ଯୁଃ ।"
(୩ୟ ଅଧି. ୧ମ ଅଧ୍ୟାୟ, ପୃ. ୨୩୨ )

Digitized by srujanika@gmail.com

ସେତେବେଳେ ନାଗରିକ ଜୀବନକୁ ସର୍ବଦା ଶାନ୍ତିପୂର୍ଣ୍ଣ ରଖିବା ପାଇଁ ନରପତି ଚେଷ୍ଟିତ ଥିଲେ । କାରଣ ଅନ୍ୟର ଘରେ ବଳପୂର୍ବକ ପ୍ରବେଶ ପ୍ରଭୃତି ଅପରାଧ ଗୁଡ଼ିକର ମଧ୍ୟ ରାଜା ଅତି କଠୋର ଶାସ୍ତି ବିଧାନ କରୁଥିଲେ । କୌଟିଲ୍ୟ କହିଛନ୍ତି—

"ସାହସାନୁପ୍ରବେଶ କଲହବିବାହବିରାଜନିଯୋଗଯୁକ୍ତାଃ
ପୂର୍ବାପରବ୍ୟବହାରିଣାଂ ଚ ପ୍ରବିକ୍ରିତାଃ ସିଦ୍ଧୟେୟୁଃ" (ପୃ. ୨୩୩)

ସେତେବେଳେ ରାଜା ଥିଲେ ଧର୍ମ ରକ୍ଷକ । ପ୍ରଜାମାନଙ୍କର ପାରଲୌକିକ ତଥା ଇହଲୌକିକ ମଙ୍ଗଳ ବିଧାନ ପାଇଁ ସେ ଥିଲେ ସର୍ବଦା ଚେଷ୍ଟିତ । ନରପତିଙ୍କ ବିଷୟରେ କୌଟିଲ୍ୟ କହନ୍ତି—

"ଚତୁର୍ବର୍ଣ୍ଣାଶ୍ରମସ୍ୟାୟଂ ଲୋକସ୍ୟ ଗୃହରକ୍ଷଣାତ୍ ।
ନଶ୍ୟତାଂ ସର୍ବଧର୍ମାଣାଂ ରାଜା ଧର୍ମପ୍ରବର୍ତ୍ତକଃ ॥" ପୃ. ୨୩୭

୪ର୍ଥ ଅଧିକରଣ 'କଣ୍ଟକଶୋଧନ' ନାମରେ ନାମିତ ଏବଂ ଏଥିରେ ୧୩ଟି ଅଧ୍ୟାୟ ଅଛି । ଶିଳ୍ପୀ ତଥା ବ୍ୟବସାୟୀମାନେ ପ୍ରଜାମାନଙ୍କୁ ନାନା ପ୍ରକାରରେ ଅସୁବିଧାର ସମ୍ମୁଖୀନ କରାଇଥାନ୍ତି । ଅନେକ ସମୟରେ ରାଜ୍ୟରେ ଦୈବ ବିପତ୍ତିର ମଧ୍ୟ କୁପ୍ରଭାବ ପଡ଼ିଥାଏ । ଏ ସବୁଥିରୁ ପ୍ରଜାମାନଙ୍କୁ ରକ୍ଷା କରିବାର ଉପାୟ ଏହି ଅଧିକରଣରେ ବର୍ଣ୍ଣିତ ହୋଇଅଛି । ଗୁପ୍ତଚର ନିଯୋଗ ଦ୍ୱାରା ରାଜ୍ୟରେ ତସ୍କରମାନଙ୍କୁ ଧରିବାର ବିଷୟ ମଧ୍ୟ ଏହି ପ୍ରସଙ୍ଗରେ ଉଲ୍ଲେଖ କରାଯାଇଅଛି । କେବଳ ଯେ ଚୋର ତସ୍କର ବା ଶିଳ୍ପୀ ବ୍ୟବସାୟୀମାନେ ରାଜ୍ୟରେ ଅମଙ୍ଗଳର ସୂତ୍ରପାତ କରନ୍ତି ତା ନୁହେଁ । ଅନେକ ସମୟରେ ଧନ ତଥା ଶକ୍ତିଲିପ୍ସୁ ରାଜକର୍ମଚାରୀମାନେ ମଧ୍ୟ ରାଜାଙ୍କର ବିରୁଦ୍ଧାଚରଣ କରିଥାନ୍ତି । ସେମାନେ ରାଜାଙ୍କର ଗୃହ ଶତ୍ରୁ ଭଳି । ତେଣୁ ସେମାନଙ୍କୁ

Digitized by srujanika@gmail.com

ଶାସନ କରିବା ରାଜାଙ୍କର ଏକ ପ୍ରଧାନ କାର୍ଯ୍ୟ । 'ଯୋଗବୃତ୍ତ' ଶୀର୍ଷକ ୫ମ ଅଧିକରଣ ଏହି ବିଷୟବସ୍ତୁ ଉପରେ ପର୍ଯ୍ୟବସିତ । ରାଜାଙ୍କର ଗୃହ ଶତ୍ରୁ ପ୍ରଭୃତିଙ୍କ ବିଷୟ ଅବଧାରଣା କରିବାକୁ ଯାଇ କୌଟିଲ୍ୟ ପ୍ରଥମତଃ ଆରମ୍ଭ କରିଛନ୍ତି—

"ରାଜାନାମବଗ୍ରହେଽପ ଜୀବନଃ ଶତ୍ରୁ ସାଧାରଣୀ ବା ଯେ ମୁଖ୍ୟାସ୍ତେଷୁ ଗୂଢ଼ ପୁରୁଷ ପ୍ରଣିଧିଃ କୃତ୍ୟପକ୍ଷୋପଗ୍ରହୋ ବା ସିଦ୍ଧି- ର୍ଯଥୋକ୍ତଂ ପୁରସ୍ତାଦପଜା ବୋପସର୍ପୋ ବା ଯଥା ଚ ପାରଗ୍ରାମିକେ ବକ୍ଷ୍ୟାମଃ । ରାଜ୍ୟୋପଘାତିନସ୍ତୁ ବଲ୍ଲଭାଃ ସଂହତା ବା ଯେ ମୁଖ୍ୟାଃ ପ୍ରକାଶମଶକ୍ୟାଃ ପ୍ରତିଷେଦ୍ଧୁଂ ଦୁଷ୍ୟାସ୍ତେଷୁ ଧର୍ମରୁଚିରୁ ପାଂଶୁଦଣ୍ଡଂ ପ୍ରଯୁଞ୍ଜୀତ ।" ପୃ. ୩୬୦

ରାଜକର୍ମଚାରୀମାନଙ୍କୁ ନିଯୁକ୍ତ କରିବା ପାଇଁ ଆଜିକାଲି ଆମର Public Service Commission ପ୍ରଭୃତି ବିଭିନ୍ନ ଅନୁଷ୍ଠାନ ରହିଅଛି । କିନ୍ତୁ ସେତେବେଳେ ରାଜା ନିଜେ ଏମାନଙ୍କୁ ନିଯୁକ୍ତ କରୁଥିଲେ । ତେଣୁ ମନ୍ତ୍ରୀ ଓ ଅନ୍ୟାନ୍ୟ ଉଚ୍ଚପଦସ୍ଥ କର୍ମଚାରୀମାନଙ୍କୁ ନିଯୁକ୍ତ ଦେବାବେଳେ ରାଜାଙ୍କୁ ସେମାନଙ୍କ ଚରିତ୍ର ବିଷୟରେ କେତେଗୁଡ଼ିଏ ପ୍ରଧାନ ବିଷୟ ପ୍ରତି ଦୃଷ୍ଟି ଦେବାକୁ ପଡ଼ୁଥିଲା । ୬ଟି ଅଧ୍ୟାୟ ସମ୍ବଳିତ 'ମଣ୍ଡଳ- ଯୋନି' ଶୀର୍ଷକ ୬ଷ୍ଠ ଅଧିକରଣରେ ଏହି ବିଷୟ ବର୍ଣ୍ଣିତ ହୋଇଛି ।

ମନ୍ତ୍ରୀ ନିର୍ଣ୍ଣୟର ଉପାୟ ବିଷୟରେ କୌଟିଲ୍ୟ କହନ୍ତି ଯେ, ଉତ୍ତମ ଗୁଣ ବିଶିଷ୍ଟ ବ୍ୟକ୍ତି ମନ୍ତ୍ରୀତ୍ୱ ଗ୍ରହଣ କରିବାର ଉପଯୁକ୍ତ ।

ରାଜାଙ୍କର ଗୁଣ ବର୍ଣ୍ଣନା କରି ସେ କହନ୍ତି—"ମହା କୁଳୀନୋ, ଦୈବବୁଦ୍ଧିଃ ସତ୍ତ୍ୱ ସମ୍ପନ୍ନୋ ବୃଦ୍ଧଦର୍ଶୀ ଧାର୍ମିକଃ ସତ୍ୟ ବାଗବି ସଂବାଦ୍ୟାଃ କୃତଜ୍ଞଃ ସ୍ଥୂଲଲକ୍ଷୋ ମହୋତ୍ସାହୋ

Digitized by srujanika@gmail.com

ଧାର୍ମିସୂକ୍ତଃ ଶକ୍ୟସାମନ୍ତୋ ଦୃଢ଼ବୁଦ୍ଧିର କ୍ଷୁଦ୍ର ପରିଷତ୍‌କୋ ଧନସ୍ୱକାମ ଇତ୍ୟାଭିଗାମିକାଗୁଣାଃ ।" ପୃ. ୩୯୦

ରାଜଧର୍ମର ୬ଟି ବିଭାଗ—ସନ୍ଧି, ବିଗ୍ରହ, ଆସନ, ଯାନଃ, ସଂଶ୍ରୟ ଓ ଦ୍ୱୈଧୀଭାବ—ପ୍ରଭୃତିର ପ୍ରୟୋଗ ବିଷୟ 'ଷାଡ୍‌ଗୁଣ୍ୟ' ଶୀର୍ଷକ ୭ମ ଅଧିକରଣର ବିଷୟ ବସ୍ତୁ । ଅଷ୍ଟମ ଅଧିକରଣ 'ବ୍ୟସନାଧିକାରିକ' ଶୀର୍ଷକ, ଏଥିରେ ୫ଟି ଅଧ୍ୟାୟ ଅଛି । ଏଥିରେ ରାଜାଙ୍କର ବିପତ୍ତି ଓ ତାର ପ୍ରତିକାର ବିଷୟ ବର୍ଣ୍ଣିତ ହୋଇଅଛି । ରାଜାଙ୍କର ୫ଟି ପ୍ରଧାନ ବିପତ୍ତି, ଯଥା—୧ ସନ୍ଧିବିଗ୍ରହାଦି ଗୁଣର ବିରୋଧ, ୨ ତାର ଅଭାବ, ୩ ସେମାନଙ୍କର ଅନୁଚିତ ପ୍ରୟୋଗ, ୪ ବିଷୟାଶକ୍ତି ଓ ୫ ଶତ୍ରୁ ପୀଡ଼ନ । ଭରଦ୍ୱାଜଙ୍କ ମତରେ ରାଜାଙ୍କ ବିପତ୍ତି ଅପେକ୍ଷା ପ୍ରଜାମାନଙ୍କର ବିପତ୍ତି ଅତି ଗୁରୁତ୍ୱପୂର୍ଣ୍ଣ ତେଣୁ ପ୍ରଥମତଃ ସେମାନଙ୍କ ବିପତ୍ତି ବିଷୟ ଅଲୋଚ୍ୟ । କିନ୍ତୁ କୌଟିଲ୍ୟଙ୍କ ମତରେ ରାଜାଙ୍କ ବିପତ୍ତି ପ୍ରଜାମାନଙ୍କ ବିପତ୍ତି ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ । ରାଜା ହେଉଛନ୍ତି ରାଜ୍ୟର ଶାସକ ତଥା ରକ୍ଷାକର୍ତ୍ତା । ତେଣୁ ପ୍ରଥମତଃ ସେ ନିରାପଦରେ ରହିବା ଉଚିତ । ରାଜା ଯଦି ନିରାପଦରେ ରହନ୍ତି ତେବେ ସମଗ୍ର ରାଜ୍ୟ ମଧ୍ୟ ନିରାପଦରେ ରହିପାରିବ । ଏବେ ଠିକ୍ ଏହି କଥା ରାଜଭକ୍ତ ଇଂରେଜମାନଙ୍କ ମଧ୍ୟରେ ପ୍ରଚଳିତ ଅଛି । ଜାତୀୟ ବିପତ୍ତିର ସମ୍ମୁଖୀନ ହେବାକୁ ଗଲବେଳେ ମଧ୍ୟ ଇଂରେଜ ପ୍ରଥମେ ପ୍ରାର୍ଥନା କରେ—**Long live the King**—ତାହାହିଁ ଥିଲା ଆମର ଅତୀତ ଭାରତର ପରମ୍ପରା । ୯ମ ଅଧିକରଣ 'ଅଭିଯାସ୍ୟତ୍ କର୍ମ' ନାମରେ ଅଭିହିତ । ଏଥିରେ ଯାତ୍ରାକାଳ ନିର୍ଣ୍ଣୟ ପ୍ରଭୃତି ବିଭିନ୍ନ ବିଷୟର ଅବତାରଣା କରାଯାଇଅଛି । ୧୦ମ ଅଧିକରଣ 'ସାଂଗ୍ରାମିକ'ରେ ସୈନ୍ୟ ପରିଚାଳନାର ନିୟମ

Digitized by srujanika@gmail.com

ପ୍ରଣୟନ କରାଯାଇଅଛି । ୧୧ଶ ଅଧିକରଣ 'ସଂଘବୃତ୍ତଂ' ନାମିତ ଏଥିରେ ଭେଦ ପ୍ରୟୋଗ ଓ ଗୁପ୍ତ ମାରଣର ବ୍ୟବସ୍ଥା କରାଯାଇଅଛି । ୧୨ଶ ଅଧିକରଣ 'ଅବଳୀୟସଂ' ନାମରେ ନାମିତ ଏବଂ ଏଥିରେ ୫ଟି ଅଧ୍ୟାୟରେ ଦୂତ ନିୟୋଗ, ସେମାନଙ୍କର କାର୍ଯ୍ୟ କଳାପ ତଥା ଚରିତ୍ରଗତ ବୈଶିଷ୍ଟ୍ୟର ଅବତାରଣା କରାଯାଇଅଛି । ୧୩ଶ ଅଧିକରଣରେ 'ଦୁର୍ଗଲମ୍ଭୋପାୟ' ର ବର୍ଣ୍ଣନା କରାଯାଇଅଛି । ୧୪ଶ ଅଧିକରଣ ରାଜନୀତିର ଏକ ଚରମ ସୀମା ନିର୍ଦ୍ଦେଶ କରିଅଛି । ଯେଉଁଠାରେ ଶତ୍ରୁ ସହିତ ସମ୍ମୁଖ ଯୁଦ୍ଧରେ ଜୟ କରିବାର ଆଶା ଲୋପ ପାଏ ସେଠାରେ ଅବଶ୍ୟ ଦୈବୀ କିମ୍ବାର ଅଶ୍ରୟ ନେବାକୁ ପଡ଼ିଥାଏ । 'ଔପନିଷଦକ' ଶୀର୍ଷକ ଏହି ଅଧିକରଣରେ ଶତ୍ରୁ ପ୍ରତି କପଟ ଔଷଧ ଓ ପ୍ରଲମ୍ଭନ ପ୍ରୟୋଗ କରିବାକୁ ପଡ଼େ ତାହା ନିର୍ଦ୍ଦେଶ କରାଯାଇଅଛି । 'ତନ୍ତ୍ରଯୁକ୍ତି' ଶୀର୍ଷକ ୧୫ଶ ଅଧିକରଣରେ ଅର୍ଥଶାସ୍ତ୍ରରେ ବ୍ୟବହୃତ କଠିନ ଶବ୍ଦଗୁଡ଼ିକର ପରିଭାଷା ପ୍ରଦତ୍ତ ହୋଇଅଛି । ଏହିପରି ୧୫୧ ଅଧ୍ୟାୟ ବିଶିଷ୍ଟ ୧୫ଟି ଅଧିକରଣ ସମ୍ବଳିତ ଅର୍ଥଶାସ୍ତ୍ର ଅତୀତ ଭାରତର ରାଜାମାନଙ୍କର ରାଜ୍ୟ ଶାସନ ପ୍ରଣାଳୀର ଏକ ବିସ୍ତୃତ ଚିତ୍ର ପ୍ରଦାନ କରିଥାଏ । ପରିବାର ମୁଖ୍ୟବ୍ୟକ୍ତି ଯେପରି ଦେବ, ଦ୍ୱିଜ, ଗୁରୁ ଓ ପ୍ରାଜ୍ଞ ପୂଜନରେ ମନୋନିବେଶ କରି ସ୍ୱ କର୍ତ୍ତବ୍ୟ ପଥରୁ ତିଳେ ମାତ୍ର ବିଚଳିତ ନ ହୋଇ ନିଜର ପରିବାରବର୍ଗଙ୍କର ମଙ୍ଗଳ ନିମିତ୍ତ କାର୍ଯ୍ୟ କରୁଥାନ୍ତି, ସେହିପରି ରାଜା ମଧ୍ୟ ନିଜର କୋଟି କୋଟି ପ୍ରଜାମାନଙ୍କର ପାଳନ ନିମିତ୍ତ ସର୍ବଦା ଚେଷ୍ଟିତ ଥାନ୍ତି । ପ୍ରଜାମାନଙ୍କର ମଙ୍ଗଳ ନିମିତ୍ତ ସେମାନଙ୍କ ଉପରେ ଅଯଥା କର ଭାର ଲଦି ଦେବାକୁ କୌଟିଲ୍ୟ ପରାମର୍ଶ ଦେଇ ନାହାନ୍ତି । ରାଜ୍ୟର ଧନର ବଣ୍ଟନ ବିଷୟରେ ମଧ୍ୟ

Digitized by srujanika@gmail.com

ବିଶେଷ ପାର୍ଥକ୍ୟ ରଖିବାକୁ ସେ ଉପଦେଶ ଦେଇ ନାହାନ୍ତି । ଅନ୍ୟ ପକ୍ଷରେ ସାମାଜିକ କଲ୍ୟାଣ ସାଧନ ପାଇଁ ସେ ସର୍ବଦା ନିୟମ ପ୍ରଣୟନ କରି ଆସିଛନ୍ତି । ଆଜି କାଲିକାର ଯୋଜନାପ୍ରସାଗ୍ରୀ ( Welfare state ) ଗୁଡ଼ିକ ମଧ୍ୟ ଏହି ଆଦର୍ଶ ଉପରେ ପ୍ରତିଷ୍ଠିତ । ସ୍ୱରାଜ୍ୟ ରକ୍ଷା ଏବଂ ତତ୍ପରେ ପରରାଜ୍ୟ ଜୟ, ଏହି ଦୁଇଟି ହେଉଛି ରାଜଧର୍ମ ଏବଂ ଏହି ଦୁଇଟି ବିଷୟ ଉପରେ ପ୍ରାଧାନ୍ୟ ଦେଇ କୌଟିଲ୍ୟ ତାଙ୍କର ସମସ୍ତ ଅର୍ଥଶାସ୍ତ୍ର ପ୍ରଣୟନ କରିଛନ୍ତି ।

ପରିଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ, କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ଅତୀତ ଭାରତର ଉଚ୍ଚ ରାଜତାନ୍ତ୍ରିକ ଶାସନର ପରିଚୟ ଦିଏ ।

କୌଟିଲ୍ୟ ଅର୍ଥଶାସ୍ତ୍ରରୁ ପ୍ରମାଣ ମିଳୁଛି ଯେ, ଆଜିକାଲି ଇଉରୋପରେ ଯୁଦ୍ଧ ସମୟରେ ଯେପରି ବିଷାକ୍ତ ଧୂଆଁ ( ଗ୍ୟାସ୍ ) ପ୍ରୟୋଗ କରୁଅଛନ୍ତି, ସେହିପରି ମଧ୍ୟ ପ୍ରାଚୀନ ଭାରତୀୟ ଯୁଦ୍ଧରେ ବିଷାକ୍ତ ଧୂଆଁ ( ଗ୍ୟାସ୍ ) ପ୍ରୟୋଗ କରୁଥିଲେ ।

"କୃତକଣ୍ଡଳ କୃକଲାସ ଗୃହଗୋଲିକାନ୍ଧାହିକ
ଧୂମୋ ନେତ୍ରବଧଂ ଉନ୍ମାଦଂ ଚ କରୋତି ।"

"ଶତକର୍ଦ୍ଦମୋଚ୍ଛିଦିଙ୍ଗେ କରବୀର କଟୁ ତୁମ୍ବୀମତ୍ସ୍ୟ ଧୂମୋ
... ଯାବଦବତି ତାବନ୍ ମାରୟତି ।"

ଅ ୧୪-୧୧୦

"ବିଦ୍ୟୁତ୍ ପ୍ରଦଗ୍ଧୋଽଙ୍ଗାରୋ ... ଲିପ୍ତ ତୀକ୍ଷ୍ଣାଗ୍ରୋ ଦହତି

ଅ ୧୦୧-୩୯

Digitized by srujanika@gmail.com

"ଏକାମ୍ଳକଂ ବସ୍ତହାନ୍ତି ଖଦ୍ୟୋତଃ କାଳସାରବା
ଏତେନାଭ୍ୟକ୍ତ ନଷ୍ଟନା ସ୍ୱକାରୂପାଣି ପଶ୍ୟନ୍ତି ।"

ଅ ୧୪-୩-୫୬

ଏକାଗୁଳକା ମଭ୍ରମନ୍ତ୍ରିଦ୍ଧ୍ୱା ଯତୈତେନ ମନ୍ତ୍ରେଣ କ୍ଷିପନ୍ତି
ତସ୍ତ୍ରକଂ ପ୍ରସ୍ୱାପୟନ୍ତି"

ଅ ୧୪-୩-୩୧

କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରୁ ପ୍ରମାଣ ମିଳୁଅଛି ଯେ, ସେ-ସମୟରେ ମଧ୍ୟ ସମବାୟ ସଂଘ ପ୍ରଚଳିତ ଥିଲା । ଲୋକମାନେ ଗୋଟିଏ ସଂଘରେ ରହି ମିଳିମିଶି କର୍ଷଣ (ଚାଷ) ଇତ୍ୟାଦି କାର୍ଯ୍ୟ କରୁଥିଲେ ।

( ସଂଭୂୟ ସମୁତ୍‌ଥାନମ୍ ) ସମବାୟ ସଂଘ, ପୃ ୨୮୮, ଅ ୧୪

"ସଂଘଭୃତାଃ ସଂଭୂୟ ସମୁତ୍‌ଥାତାରୋ ବା ଯଥା ସଂଭାଷିତଂ ବେତନଂ ସମଂ ବା ବିଭଜେରନ୍ । କର୍ଷକ ବୈଦେହକା ବା ଶସ୍ୟପଣ୍ୟାରମ୍ଭ ପର୍ଯ୍ୟବସାନାନ୍ତରେ ସନ୍ନସ୍ୟ ଯଥାକୃତସ୍ୟ କର୍ମଣଃ ପ୍ରତ୍ୟଂଶଂ ଦଦ୍ୟୁଃ ।"

Digitized by srujanika@gmail.com

# ୧ ପ୍ରାଚୀନ ଭାରତରେ ଗଣତନ୍ତ୍ର ଶାସନ :—

## ଆର୍ଯ୍ୟାବର୍ତ୍ତ

(ଖ)

ଆସମୁଦ୍ରାତ୍ତୁ ବୈପୂର୍ବାତ୍ ଆସମୁଦ୍ରାତ୍ତୁ ପଶ୍ଚିମାତ୍
ତୟୋରେବାନ୍ତରଂ ଗିର୍ୟୋରାର୍ଯ୍ୟାବର୍ତ୍ତଂ ବଦୁର୍ବୁଧାଃ ।

ଆର୍ଯ୍ୟାବର୍ତ୍ତର ପୂର୍ବସୀମା ପୂର୍ବବଙ୍ଗୋପସାଗର, ପଶ୍ଚିମ ସୀମା ପଶ୍ଚିମ ଆରବ ମହାସାଗର, ଉତ୍ତର ସୀମା ହିମାଳୟ ଓ ଦକ୍ଷିଣ ସୀମା ବିନ୍ଧ୍ୟ ପର୍ବତ । ଏହି ପୁଣ୍ୟଭୂମି ଆର୍ଯ୍ୟାବର୍ତ୍ତରେ ଆର୍ଯ୍ୟମାନେ ସୃଷ୍ଟିର ଆଦ୍ୟରୁ ରହି ବେଦ ପ୍ରଭୃତି ଶାସ୍ତ୍ରମାନ ଆଲୋଚନା କରୁଥିଲେ । ଏହି ଆର୍ଯ୍ୟଜାତି ଭାରତର ଆଦିମ ନିବାସୀ ଅଟନ୍ତି ।

(ଗ)

କେହି କେହି କହନ୍ତି; ଆମ ଦେଶର ଆର୍ଯ୍ୟଗଣ ଭାରତର ଆଦିମ ନିବାସୀ ନୁହନ୍ତି । ଏମାନେ ଏସିଆର ମଧ୍ୟ ଭୂଭାଗର ଲୋକ, ସେହିଠାରୁ ଆସି ଭାରତର ବ୍ରହ୍ମାବର୍ତ୍ତ ଅଧୁନାକ ପଞ୍ଚନଦ ପ୍ରଦେଶରେ ପହଞ୍ଚି ଭାରତ ଅଧିକାର କରିଅଛନ୍ତି । ଏ ମତ ଠିକ୍ ନୁହେଁ ।

## ବ୍ରହ୍ମାବର୍ତ୍ତ

ସରସ୍ୱତୀ ଦୃଷଦ୍ୱତ୍ୟୋ ର୍ଦେବନଦ୍ୟୋ ର୍ଯଦନ୍ତରଂ
ତଂ ଦେବନିର୍ମିତଂ ଦେଶଂ ବ୍ରହ୍ମାବର୍ତ୍ତଂ ପ୍ରଚକ୍ଷ୍ୟତେ ।

ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏହି ତିନି ଜାତି ଆର୍ଯ୍ୟକୁଳ ସମ୍ଭୂତ । ଶୂଦ୍ରମାନେ କେବଳ ଭାରତର ଆଦିମ ଅଧିବାସୀ । ଏମାନେ ଉପର୍ଯ୍ୟୁକ୍ତ ତିନି ଜାତିଙ୍କଠାରେ ପରାଭୂତ ହୋଇ,



Digitized by srujanika@gmail.com

ଏମାନଙ୍କର ଦାସତ୍ୱ ସ୍ୱୀକାର କରିବାରୁ ଦାସ ଉପାଧି ଧାରଣ କରି ଅଛନ୍ତି । ଯେଉଁମାନେ ଏମାନଙ୍କର ଦାସତ୍ୱ ସ୍ୱୀକାର କରି ନାହାନ୍ତି, ସେହିମାନେ ଦସ୍ୟୁରୂପେ ବର୍ଣ୍ଣିତ ହୋଇ ଅଛନ୍ତି । ଅତାଏ କୋହ୍ଲ, ଭିଲ୍ଲ, ପୁଲିନ୍ଦ ଓ ଶବର ପ୍ରଭୃତି ଦସ୍ୟୁପଦ ବାଚ୍ୟ । ଏମାନେ କେବଳ ଭାରତର ପ୍ରକୃତି ଅଧିବାସୀ । ଏହି ଆର୍ଯ୍ୟଜାତିମାନଙ୍କର କାର୍ଯ୍ୟ ଓ ଗୁଣ ଅନୁସାରେ ଜାତି ବିଭାଗ ଓ ଉପାଧି ସୃଷ୍ଟି ହୋଇଥିଲା । ବ୍ରାହ୍ମଣାଦି ଜାତିମାନେ କିମ୍ବା ବ୍ରାହ୍ମଣାଦି ପିତାଠାରୁ ଉତ୍ପତ୍ତି ମାନେ କେହି ହେଲେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ହୋଇ ପାରୁ ନ ଥିଲେ । ଏହି ବିଷୟରେ ମହାତ୍ମା ଶୁକ୍ରାଚାର୍ଯ୍ୟ କହି ଅଛନ୍ତି—

ନ ଜାତ୍ୟା ବ୍ରାହ୍ମଣଶ୍ଚାତ୍ର କ୍ଷତ୍ରିୟଃ ବୈଶ୍ୟ ଏବ ନ
ନ ଶୂଦ୍ରୋ ନଚବୈ ମ୍ଳେଚ୍ଛୋ ଭେଦିତା ଗୁଣ କର୍ମଭିଃ ।

ଏମାନଙ୍କ ଭିତରୁ ଯେଉଁମାନେ ଜ୍ଞାନ, କର୍ମ ଓ ଦେବୋପାସନା ତତ୍ପର, ସର୍ବଲୋକ ମଙ୍ଗଳକାଂକ୍ଷୀ, ଶାନ୍ତ, ଦାନ୍ତ, ଦୟାଳୁ ଓ ବ୍ରହ୍ମଜ୍ଞ, ସେହି ଲୋକମାନେ ବ୍ରାହ୍ମଣରୂପେ ପରିଗଣିତ ହେଉଥିଲେ । ପୁଣି ସେମାନେ ସମସ୍ତ ଲୋକଙ୍କର ଶର୍ମ୍ମ—ମାନେ ମଙ୍ଗଳ ବିଧାନ କରୁଥିବାରୁ ସେମାନଙ୍କର ଉପାଧି ଥିଲା ଶର୍ମ୍ମା । ଯେଉଁମାନେ ଲୋକରକ୍ଷାରେ ଚତୁର, ଶୂର, ପରାକ୍ରମୀ, ଓ ଦୁଷ୍ଟଲୋକମାନଙ୍କର ଦଣ୍ଡ ବିଧାନ ତତ୍ପର, ସେହି ଲୋକମାନେ କ୍ଷତ୍ରିୟରୂପେ ପରିଗଣିତ ହେଉଥିଲେ । ପୁଣି ସେମାନେ ସମସ୍ତ ଲୋକଙ୍କୁ କ୍ଷତ—ମାନେ ବିପଦରୁ ରକ୍ଷା କରୁଥିବାରୁ କ୍ଷତ୍ରିୟ, ବର୍ମ—ମାନେ ସାଞ୍ଜୁ ପିନ୍ଧି ଯୁଦ୍ଧ କରୁଥିବାରୁ ସେମାନଙ୍କର ଉପାଧି ଥିଲା ବର୍ମ୍ମା । ଯେଉଁମାନେ କ୍ରୟ ବିକ୍ରୟରେ କୁଶଳ, କୃଷି ଓ ପଶୁ ରକ୍ଷାରେ ତତ୍ପର, ସେହି

Digitized by srujanika@gmail.com

ଲୋକମାନେ ବୈଶ୍ୟରୂପେ ପରିଗଣିତ ହେଉଥିଲେ । ବୈଶ୍ୟର ଅପର ନାମ ଥିଲା ଗୁପ୍ତ । ସେମାନେ ବ୍ୟବସାୟରେ ଠିକ୍ ସତ୍ୟ ନ କହି କଥିତ୍ ଗୋପନ କରୁଥିବାରୁ ସେମାନଙ୍କର ଉପାଧି ଥିଲା, ଗୁପ୍ତ ବା ବୈଶ୍ୟ ।

ଯେଉଁମାନେ ହଳ, ଲଙ୍ଗଳ, ଓ ଗୃହ କର୍ମରେ ଧୂରନ୍ଧର, ସେହି ଲୋକମାନେ ଶୂଦ୍ରରୂପେ ପରିଗଣିତ ହେଉଥିଲେ । ଦାସମାନେ ସେବକ, ପୁଣି ସେମାନେ ବ୍ରାହ୍ମଣ କ୍ଷତ୍ରିୟ ଓ ବୈଶ୍ୟ ଜାତିର ସେବା କରୁଥିବାରୁ ସେମାନଙ୍କର ଉପାଧି ଥିଲା ଦାସ । ଏ ବିଷୟରେ ଗୀତା ଓ ବେଦରେ ମଧ୍ୟ କହି ଅଛନ୍ତି ।

"ଚତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟଂ ଗୁଣକର୍ମ ବିଭାଗଶଃ"
"ବ୍ରାହ୍ମଣୋଽସ୍ୟମୁଖମାସୀତ୍ ବାହୁ ରାଜନ୍ୟଃକୃତଃ
ଊରୁତଦସ୍ୟ ଯତ୍ ବୈଶ୍ୟଃ ପଦ୍‌ଭ୍ୟାଂ ଶୂଦ୍ରୋଽଜାୟତ ।"

ବର୍ତ୍ତମାନ ଭାରତୀୟ ଆର୍ଯ୍ୟଜାତିର ଆଚାର, ବ୍ୟବହାର ଧର୍ମନୀତି ଓ ରାଜନୀତି ସମ୍ବନ୍ଧରେ କିଛି କୁହାଯାଉଅଛି । ଏହି ଆର୍ଯ୍ୟଜାତି ପ୍ରଥମେ ଶାସନ ପ୍ରଣାଳୀ ଉଦ୍ଭାବନ କଲେ ମଧ୍ୟ ଏମାନେ ନିଜ ନିଜର ଶାସନ ଭାର ପରାକ୍ରମଶାଳୀ କ୍ଷତ୍ରିୟ ହସ୍ତରେ ଅର୍ପଣ କରିଥିଲେ । ପରାକ୍ରମଶାଳୀ କ୍ଷତ୍ରିୟମାନଙ୍କୁ ରାଜା କୁହାଯାଉଥିଲା । ସୁପଣ୍ଡିତ ବ୍ରାହ୍ମଣମାନଙ୍କ ହସ୍ତରେ ମନ୍ତ୍ରଣା ଭାର, ବୈଶ୍ୟମାନଙ୍କ ହସ୍ତରେ ବାଣିଜ୍ୟ, କୃଷି ଓ ପଶୁପାଳନ ଭାର ଅର୍ପଣ କରିଥିଲେ । ଏମାନେ ଏମାନଙ୍କର ଦାସତ୍ୱ ନିର୍ବାହ ପାଇଁ କେବଳ ଶୂଦ୍ରଜାତିକୁ ବଶୀଭୂତ କରିଥିଲେ ।

ରାଜ୍ୟ ମଧ୍ୟରେ ସୁନିୟମ ନ ରହିଲେ ରାଜା ବା ସୁଶାସକଙ୍କର ପ୍ରଭୁତା ରହେନାହିଁ । ପ୍ରଭୁ ସମର୍ଥିତ ଲୋକ ଯେତେବେଳ ପର୍ଯ୍ୟନ୍ତ

Digitized by srujanika@gmail.com

ରାଜ୍ୟରେ ବିସ୍ତୃତ ନ ହୁଏ ସେତେବେଳ ପର୍ଯ୍ୟନ୍ତ ପ୍ରଜାମାନଙ୍କର ପାପ ପ୍ରତି ଦୟା ଓ ଧର୍ମପ୍ରତି ଅସ୍ଥା ଜନ୍ମେନାହିଁ । ସମାଜରେ ବିଶୃଙ୍ଖଳା ଘଟେ । ତେଣୁ ଆର୍ଯ୍ୟଜାତି ଶାସନରେ ରହିବାକୁ ଇଚ୍ଛା କରୁଥିଲେ । ରାଜା ବା ଶାସକଙ୍କୁ ଦିଗ୍‌ପାଳମାନଙ୍କ ଅଂଶରେ ଜନ୍ମ ବୋଲି ଭାବୁଥିଲେ, ମଧ୍ୟ ସେମାନଙ୍କୁ ଭକ୍ତି ଓ ଶ୍ରଦ୍ଧା କରୁଥିଲେ । ରାଜା ବା ଶାସକ ମଧ୍ୟ ପ୍ରଜାମାନଙ୍କର ମଙ୍ଗଳପାଇଁ ପ୍ରାଚୀନ ଋଷିଗଣଙ୍କ ଅନୁଷ୍ଠିତ ଆଚାର ବ୍ୟବହାର ଓ ତତ୍‌ପ୍ରଣୀତ ଶାସ୍ତ୍ରାନୁସାରେ ଚଳିବାକୁ ବାଧ୍ୟ ହେଉଥିଲେ ।

ଜ୍ଞାନାର୍ଜନ ବ୍ରାହ୍ମଣର, ରାଜ୍ୟପାଳନ କ୍ଷତ୍ରିୟର, ବ୍ୟବସାୟ କରଣ ବୈଶ୍ୟର ଓ ସେବାକରଣ ଶୂଦ୍ରର ଧର୍ମ ଥିଲା ।

ବ୍ରାହ୍ମଣସ୍ୟ ତପୋଜ୍ଞାନଂ ତପଃ କ୍ଷତ୍ରସ୍ୟ ରକ୍ଷଣଂ
ବୈଶ୍ୟସ୍ୟତୁ ତପୋବାର୍ତ୍ତା ତପଃ ଶୂଦ୍ରସ୍ୟ ସେବନମ୍ । (ମନୁ)

ଆର୍ଯ୍ୟଜାତି ରାଜା ବା ସୁଶାସକ ଶାସନରେ ରହିବାକୁ ଇଚ୍ଛା କରୁଥିଲେ । ରାଜା ବା ସୁଶାସକଙ୍କୁ ଇନ୍ଦ୍ରାଦି ଦିଗ୍‌ପାଳଗଣଙ୍କ ଅଂଶରେ ଜନ୍ମ ବୋଲି ଜ୍ଞାନ କରୁଥିଲେ ।

ଏପରିକି ସୁରାଜା ଓ ସୁଶାସକଙ୍କୁ ସାକ୍ଷାତ୍ ଧର୍ମ ସ୍ୱରୂପ ଜ୍ଞାନ କରୁଥିଲେ । ପ୍ରଜାମାନେ ସୁବିଚାରକ ଓ ରାଜାଙ୍କୁ କେବେତେବେଳେ ଭିନ୍ନ ମନେ କରୁ ନ ଥିଲେ । ବିଚାରାସନ ଓ ଧର୍ମାସନ ଆର୍ଯ୍ୟଗଣଙ୍କ ପକ୍ଷରେ ସମାନ ଥିଲା । ବିଚାରକ ଓ ଦେବତା ଏ ଦୁହେଁ ସମାନ । ଦେବଗଣ ବିଚାରକ ଦେହରେ ଅବସ୍ଥାନ କରି ଲୋକପାଳନ କରନ୍ତି । ସୁତରାଂ ସୁରାଜା ଓ ସୁଶାସକ ବାଳକ ହେଲେ ମଧ୍ୟ ତାହାଙ୍କୁ ଅବଜ୍ଞା କରୁ ନ ଥିଲେ ସତ୍ୟ ଏମାନଙ୍କର ପରମଧର୍ମ ଥିଲା ।

Digitized by srujanika@gmail.com

ରାଜା ବା ସୁଶାସକଙ୍କୁ ଦେବତାପରି ଭକ୍ତି କରା ଯାଉଥିଲା । ଯଥା :—

"ଇନ୍ଦ୍ରାନିଲ ଯମାର୍କାଣାଂ ଅଗ୍ନେଶ୍ଚ ବରୁଣସ୍ୟ ଚ
ଚନ୍ଦ୍ରବିତ୍ତେଶୟୋ ଶ୍ଚୈବ ମାତ୍ରାନିର୍ହୃତ୍ୟ ଶାଶ୍ୱତୀଃ
ଯସ୍ମାଦେଷାଂ ସୁରେନ୍ଦ୍ରାଣାଂ ମାତ୍ରାଭ୍ୟୋନିର୍ମିତୋନୃପଃ
ତସ୍ମାତ୍ ଅଭିଭବତ୍ୟେବ ସର୍ବଭୂତାନି ତେଜସା ।" (ମନୁ)-

ରାଜତନ୍ତ୍ର ଶାସନ, ଗଣତନ୍ତ୍ର ବା ପ୍ରଜାତନ୍ତ୍ର ଶାସନ ଏହି ଦୁଇ ଶାସନ ଆମ୍ଭ ଦେଶରେ ଥିଲା । ଯଥା :—

"ଗୁଣାତଷ୍ଟନ୍ତ୍ୱତଷ୍ଟନ୍ତୁ ଜ୍ୟେଷ୍ଠାନୁକ୍ରମିକଂ ରାଜ—
ପୁରୁଷସ୍ୟ ଶାସନଂ ଲୋକେ ରାଜତନ୍ତ୍ରଂ ପ୍ରକଥ୍ୟତେ ।"

ଗୁଣ ଥାଉ ବା ନ ଥାଉ ଜ୍ୟେଷ୍ଠାନୁକ୍ରମିକ ରାଜପୁରୁଷର ଶାସନକୁ ସମାଜରେ ରାଜତନ୍ତ୍ର ଶାସନ ବୋଲି କୁହାଯାଉଥିଲା ।

"ଲୋକମତ ଶାସନଂ ତୁ ଗଣତନ୍ତ୍ରଂ ପ୍ରଚକ୍ଷ୍ୟତେ ।"

ଗୁଣ ବିବେଚନା କରି ସମାଜରେ ଯେଉଁ ଲୋକକୁ ଶ୍ରେଷ୍ଠ ଦେଉଥିଲେ, ସେହି ଲୋକର ଶାସନକୁ ଗଣତନ୍ତ୍ର ବା ପ୍ରଜାତନ୍ତ୍ର ଶାସନ କୁହା ଯାଉଥିଲା ।

ଜ୍ୟେଷ୍ଠାନୁକ୍ରମିକ ରାଜା ବା ଲୋକମତ ବିବେଚିତ ସୁଶାସକ ଯଦି ପ୍ରଜାପୀଡ଼କ ହେଉଥିଲେ ଅର୍ଥାତ୍ ପ୍ରଜାମାନଙ୍କର ସନ୍ତୋଷର ପାତ୍ର ହୋଇ ନ ଥିଲେ ତାହାହେଲେ ସେତେବେଳେ ପ୍ରଜାମାନେ ମେଳବାନ୍ଧି ସେମାନଙ୍କୁ ସିଂହାସନରୁ ବହିଷ୍କୃତ କରି ପୁନର୍ବାର ଧର୍ମଘଟ କରି ସେମାନଙ୍କ ସ୍ଥାନରେ ନୂତନ ରାଜ୍ୟ ବା ସୁଶାସକ

Digitized by srujanika@gmail.com

ସ୍ଥାପନ କରି ପାରୁଥିଲେ । ସେତେବେଳେ ପ୍ରଜାମାନଙ୍କର ଧର୍ମନିଷ୍ଠା ଏହିପ୍ରକାର ଥିଲା । ଗୋଟିଏ ହସ୍ତୀକୁ ସୁସଜ୍ଜିତ କରି ସୁନାକଳଶରେ ସର୍ବତୀର୍ଥ ଜଳ ପୂର୍ଣ୍ଣକରି ହସ୍ତୀର ଶୁଣ୍ଢରେ ଦେଉଥିଲେ । ହସ୍ତୀ ସ୍ୱଇଚ୍ଛାନୁସାରେ ଯାହା ଉପରେ ସ୍ୱର୍ଣ୍ଣକଳଶ ଢାଳୁଥିଲା, ପ୍ରଜାମାନେ ସେହିଲୋକକୁ ରାଜା ବା ସୁଶାସକ ପଦରେ ନିଯୁକ୍ତ କରୁଥିଲେ । ଅସ୍ମଦେଶର ଏହି ପ୍ରଥା କଣ ଗଣତନ୍ତ୍ର ଶାସନ ନୁହେଁ କି ?

## ରାଜା ବା ସୁଶାସକ

ଯେ କାମକ୍ରୋଧାଦି ରିପୁ ଅଧୀନ ନୁହନ୍ତି ଯେ ସର୍ବଦା ପ୍ରଜାରଞ୍ଜନ ନିମିତ୍ତ ରତ ଥାନ୍ତି, ଦୁଷ୍ଟର ଦଣ୍ଡବିଧାନ ଓ ଶିଷ୍ଟର ପାଳନ କରନ୍ତି, ସେହି ଲୋକ ରାଜା ବା ସୁଶାସକ ପଦବାଚ୍ୟ । ଏପରି ଲୋକ ବ୍ୟତୀତ ଅନ୍ୟ କାହାକୁ ରାଜା ବା ସୁଶାସକ ପଦ ଦିଆଯାଉ ନ ଥିଲା ।

ଯଦି ନସ୍ୟାତ୍ ନରପତିଃ ସମ୍ୟକ୍‌ନେତା ତତଃ ପ୍ରଜାଃ
ଅକର୍ଣ୍ଣଧାରା ଜଳଧୌ ବିପ୍ଲବେତେହ ନୌରିବ ॥
ନୃପସ୍ୟ ପରମୋଧର୍ମଃ ପ୍ରାଜାନାଂ ପରିପାଳନଂ
ଦୁଷ୍ଟ ନିଗ୍ରହଣଂ ନିତ୍ୟଂ ନ ନିତ୍ୟା ତେ ବିନା ହ୍ୟତେ ॥
(ଶୁକ୍ରାଚାର୍ଯ୍ୟ)

## ମନ୍ତ୍ରୀ

ଶ୍ରେଷ୍ଠ, ସଦ୍‌ବଂଶଜ, ବୟୋବୃଦ୍ଧ, ଧାର୍ମିକ, ନିସ୍ପୃହ, ସତ୍ୟବାଦୀ, ନିର୍ଲୋଭ, ଜିତେନ୍ଦ୍ରିୟ, ମନ୍ତ୍ରଣା ଗୋପନ ତତ୍‌ପର, ସର୍ବଶାସ୍ତ୍ର ପାରଦର୍ଶୀ, ବେଦଜ୍ଞ, କ୍ଷମାଶୀଳ, ସୁଚତୁର, ବ୍ୟବହାର ଓ ନୀତିଶାସ୍ତ୍ରରେ ନିପୁଣ, ଦୋଷଶୂନ୍ୟ, ସତ୍କର୍ମର ଅନୁଷ୍ଠାତା, ଶତ୍ରୁମିତ୍ର ସମଦର୍ଶୀ, ରାଜା ବା ସୁଶାସକଙ୍କର ଭକ୍ତିଭାଜନ, ଏପରି ଲୋକ ମନ୍ତ୍ରୀ ପଦବାଚ୍ୟ । ଏପରିଲୋକ ବ୍ୟତୀତଅନ୍ୟ କାହାକୁ ମନ୍ତ୍ରୀପଦ ଦିଆଯାଉ ନ ଥିଲା ।

Digitized by srujanika@gmail.com

"ସର୍ବବସ୍ଥାପି ତତ୍‌କାର୍ଯ୍ୟଂ ଗ୍ରାଜ୍ଞେ ସମ୍ୟକ୍ ନିବେଦୟେତ୍ ।
ସାମଂ-ଦାନଂ ଚ ଭେଦଶ୍ଚ ଦଣ୍ଡଃକେଷୁ କଦାକଥମ୍ ॥" (ଶୁକ୍ରାଚାର୍ଯ୍ୟ)
"ଶୁଚିନା ସତ୍ୟସନ୍ଧେନ ଯଥା ଶାସ୍ତ୍ରାନୁସାରିଣା
ପ୍ରଣେତୁଂ ଶକ୍ୟତେଦଣ୍ଡଃ ସୁସହାୟେନ ଧୀମତା ।" (ମନୁ)

ଏଥିରୁ ସ୍ପଷ୍ଟ ଜଣା ଯାଉଅଛି ଯେ, ବଂଶାନୁକ୍ରମିକ ରାଜପୁତ୍ରର ରାଜତ୍ୱ ପ୍ରାପ୍ତି ବା ବଂଶାନୁକ୍ରମିକ ମନ୍ତ୍ରିପୁତ୍ରର ମନ୍ତ୍ରୀତ୍ୱ ପ୍ରାପ୍ତି ସେ ଯୁଗରେ ମଧ୍ୟ ଅମ୍ଭ ଭାରତ ବର୍ଷରେ ପ୍ରଜାମାନେ ସ୍ୱୀକାର କରୁ ନ ଥିଲେ । ସେମାନେ ଅବସ୍ଥା ଦେଖି ବ୍ୟବସ୍ଥା କରୁଥିଲେ । ଏହି ରୀତି ସମସ୍ତ ଦେଶରେ ଥିଲା, ବର୍ତ୍ତମାନ ମଧ୍ୟ ଅଛି । ଦେଖନ୍ତୁ, ଇଂଲଣ୍ଡରେ "ହୋସ୍ ଅବ୍ ଲର୍ଡ୍‌ସ୍" ଏହାର ଏକ ଜାଜ୍ୱଲ୍ୟମାନ ପ୍ରମାଣ ସ୍ୱରୂପ ଅଦ୍ୟାପି ବର୍ତ୍ତମାନ । ଜେବେ ଯେଉଁଠାରେ ଏହି ନିୟମ ବିପରୀତ ଦେଖା ଯାଇଛି ଅର୍ଥାତ୍ ଜାତମାନେ ବା କୌଳିକ ପ୍ରଥାନୁସାରେ ବଂଶ ମାନେ ରାଜା ବା ସୁଶାସକ ବା ମନ୍ତ୍ରୀ କରାଯାଇଛି ସେଠାରେ ବିଶେଷ ଦୋଷ ଦେଖା ଯାଇଅଛି । ରସିଆ ଜର୍ମାନ ଇଂଲଣ୍ଡରେ ସୁଦ୍ଧା ସର୍ବଦା ଗୁଣବାନ ବ୍ୟକ୍ତିଗଣ "କମନ୍‌ସ୍" ଶ୍ରେଣୀରୁ ନୀତହୋଇ ଲର୍ଡ୍‌ସ୍‌ଶ୍ରେଣୀ ଭୁକ୍ତ ହୁଅନ୍ତି, ଅର୍ଥାତ୍ ସେ ଦେଶରେ ଜାତି ଓ ବଂଶକୁ ଅପେକ୍ଷା ନ କରି କେବଳ ଗୁଣ ଦେଖି ନୀଚ ଜାତି ନୀଚ ବଂଶର ଲୋକକୁ ମଧ୍ୟ "ପ୍ରେସିଡେଣ୍ଟ୍" ବା ମନ୍ତ୍ରୀ କରୁଥିଲେ ମଧ୍ୟ କରୁଛନ୍ତି ।

## ଅଧିକ ମନ୍ତ୍ରୀ ସ୍ଥାପନ

ପୂର୍ବୋକ୍ତ ଗୁଣବିଶିଷ୍ଟ ମନ୍ତ୍ରୀମାନଙ୍କ ସଙ୍ଗେ ରାଜା ବା ସୁଶାସକ ବିନା ପରାମର୍ଶରେ ଅର୍ଥାତ୍ ସ୍ୱେଚ୍ଛାନୁସାରେ କୌଣସି କାର୍ଯ୍ୟ

Digitized by srujanika@gmail.com

କରୁ ନ ଥିଲେ ଏହି ରୀତି ଆମଦେଶରେ ବରାବର ଚାଲୁଥିଲା। ଅନ୍ୟ ଦେଶରେ ମଧ୍ୟ ଚାଲୁଛି। ଇଂଲଣ୍ଡରେ ମଧ୍ୟ ଇଂଲଣ୍ଡେଶ୍ୱରୀ ମହାରାଣୀ ଭିକ୍ଟୋରିଆ ଏହିରୀତି ବରାବର ପାଳୁଥିଲେ।
"ମନ୍ତ୍ରୟେତ୍ ପରମଂ ମନ୍ତ୍ରଂ ରାଜା ଷାଡ଼୍ଗୁଣ୍ୟ ସଂଯୁତମ୍।" (ମନୁ)

ରାଜ୍ୟରେ ସୁନିୟମ ସଂସ୍ଥାପନ ଓ ପ୍ରଜା ପାଳନ ନିମିତ୍ତ ରାଜା ବା ସୁଶାସକ ସାତ ଆଠଟି ମନ୍ତ୍ରୀ ସ୍ଥାପନ କରୁଥିଲେ। ଯେ ବ୍ୟକ୍ତି ଯେଉଁ କାର୍ଯ୍ୟରେ ନିପୁଣ ସେହି ବିଷୟରେ ତାଙ୍କ ସହିତ ପରାମର୍ଶ କରି ତାଙ୍କ ମତାନୁସାରେ କାର୍ଯ୍ୟ କରୁଥିଲେ। ସନ୍ଦେହ ପଡ଼ିଲେ ସମଗ୍ର ମନ୍ତ୍ରୀମାନଙ୍କୁ ଡକାଇ ସେମାନଙ୍କ ମତାନୁସାରେ ନିଜ ମତ ମିଶାଇ ଶାସ୍ତ୍ରାନୁସାରେ ନିଜ ମତ ପ୍ରକାଶ କରୁଥିଲେ। ଏହିପରି ରୀତି ଅନ୍ୟ ଦେଶର ଶାସନରେ ମଧ୍ୟ ଲଣ୍ଡନ ଶାସନରେ ଦେଖାଯାଏ।

"ସଚିବାନ୍ ସପ୍ତଚାଷ୍ଟୌବା ପ୍ରକୁର୍ବିତ ପରୀକ୍ଷିତାନ୍
ତେଷାଂ ସ୍ୱଂ ସ୍ୱମଭିପ୍ରାୟମୁପଲଭ୍ୟ ପୃଥକ୍ ପୃଥକ୍
ସମସ୍ତାନାଂଚକାର୍ଯ୍ୟେଷୁ ବିଦଧ୍ୟାତ୍ ହିତମାତ୍ମନଃ।"

(ସଚିବ ବାଗୀଶ ବାଗୀଶ୍ୱର)

ବିଚାର

ରାଜା ବା ସୁଶାସକ ସ୍ୱୟଂ ଅଥବା ତଦୀୟ ପ୍ରତିନିଧି ପ୍ରାଡ଼୍ ବିବାକ ଧର୍ମାସନରେ ବିନୀତଭାବେ ସଭ୍ୟମାନଙ୍କ ସଙ୍ଗେ ଏକତ୍ର ଉପବେଶନ ପୂର୍ବକ ପ୍ରଥମେ ବାଦୀର ପ୍ରାର୍ଥନା ଶ୍ରବଣ କରନ୍ତି। ଅଭିଯୋଗ ଉତ୍ଥାନ ପୂର୍ବରୁ ବାଦୀକୁ ସତ୍ୟ ଶ୍ରାବଣ କରାନ୍ତି ମିଥ୍ୟାବାଦ ଉତ୍ଥାପନରେ ଦଣ୍ଡଥିବାରୁ ପ୍ରାୟ କେହି ମିଥ୍ୟାଭିଯୋଗ କରନ୍ତି ନାହିଁ। ବିଚାରକ ବାଦୀର ବାଦବାକ୍ୟ ଲିଖନପୂର୍ବକ

Digitized by srujanika@gmail.com

ପ୍ରତିବାଦୀକୁ ଜିଜ୍ଞାସାବାଦ ସମୟରେ ପ୍ରଥମେ ସତର୍କ ଭାଷଣ କରାଇ ବାଦୀର ସମ୍ମୁଖରେ ସମସ୍ତ ଅଭିଯୋଗର କାରଣ ଗୁଡ଼ିକ ତାହାର ହୃଦୟଙ୍ଗମ କରାଇ ଦେଉଥିଲେ ।

ଏଥିରୁ ଯଦି ତତ୍ତ୍ୱ ନିର୍ଣ୍ଣୟ ହୁଏ, ତେବେ ସାକ୍ଷୀ ଦରକାର ହୁଏନାହିଁ । କିନ୍ତୁ ଅଭିଯୋକ୍ତା ଅଥବା ପ୍ରତିପକ୍ଷ ବ୍ୟକ୍ତି ମଧ୍ୟରେ ଯଦି କୌଣସି ସନ୍ଦେହର କାରଣ ଘଟେ, ତେବେ ସାକ୍ଷ୍ୟଗ୍ରହଣ ହୁଏ । ସାକ୍ଷ୍ୟଗ୍ରହଣ ସମୟରେ ସାକ୍ଷୀ ସତ୍ୟର ଶ୍ରାବଣ କରିବାକୁ ବାଧ୍ୟ । ସାକ୍ଷୀର ବିଷୟ ପୃଥକ୍ ସ୍ଥଳେ ଲିଖିତ ହୁଏ । ବାଦୀର ନାମ ତଦୀୟ ବଚନ, ପ୍ରତିବଚନ, ରାଜା ଅଥବା ପ୍ରାଡ଼୍‌ବିବାକର ପ୍ରଶ୍ନ ଓ ବିଚାର, ସଭ୍ୟମାନଙ୍କର ପରିପୃଚ୍ଛା ଓ ପରାମର୍ଶ, ଅର୍ଥୀ ପ୍ରତ୍ୟର୍ଥୀ ମଧ୍ୟରେ କେଉଁ ପକ୍ଷରେ ଜୟ କି ହେତୁ ଅନ୍ୟ ପକ୍ଷର ପରାଜୟ, କିୟତ୍ ସଂଖ୍ୟକ ମନ୍ତ୍ରୀ ସମବେତ ସଭାର ଓ କାହାଦ୍ୱାରା ତତ୍ତ୍ୱ ନିର୍ଣ୍ଣୟ ପୂର୍ବକ ବିଚାରକାର୍ଯ୍ୟ ସମାଧାନ ହେଲା, କେଉଁ ସମୟରେ ଅଭିଯୋଗର କାରଣ ଘଟିଲା, କେଉଁ ସମୟରେ ଅଭିଯୋଗ ଉତ୍ଥାପିତ ହେଲା ଏବଂ କେଉଁ ସମୟରେ ବିଚାର ନିଷ୍ପତ୍ତି ହେଲା, ଏ ସମସ୍ତ ଜୟ ପତ୍ରରେ ଲେଖା ଯାଉଥିଲା ।

## ପୁନର୍ବିଚାର (ଅପିଲ)

ବିଚାର କାଳେ ଯଦି ଅଭିଯୋକ୍ତା ବା ପ୍ରତିଯୋଗୀ ବ୍ୟକ୍ତି ପକ୍ଷରେ ପ୍ରମାଣ ପ୍ରୟୋଗାଦି ପରିଶୁଦ୍ଧ ରୂପେ ଗ୍ରହଣ ହୋଇ ନ ଥାଏ, ତାହା ହେଲେ ପୁନର୍ବିଚାର ହୋଇପାରେ, କିନ୍ତୁ ପ୍ରାଡ଼୍‌ବିବାକାଦି କର୍ତ୍ତୃକ ନିଷ୍ପାଦିତ ବିଚାରର ପ୍ରକୃତ ଦୋଷ ପ୍ରଦର୍ଶନ ନ କରାଇ ପାରିଲେ ଅଭିଯୋଗ ପୁନର୍ବିଚାର ଯୋଗ୍ୟ ହୁଏ ନାହିଁ ।

Digitized by srujanika@gmail.com

ଅସାକ୍ଷିକହତୁ ଯଦ୍‌ଦୃଷ୍ଟଂ ବିମାର୍ଗେଣ ଚ ତୀରିତଂ,
ଅସନ୍ମତ ମତୈର୍ଦୃଷ୍ଟଂ ପୁନର୍ଦର୍ଶନମର୍ହତି । (ଯାଜ୍ଞବଲ୍‌କ୍ୟ)

ପୁନର୍ବିଚାର ସ୍ଥଳେ ରାଜା ବା ସୁଶାସକଙ୍କୁ ବିଚାରାସନରେ ଉପସ୍ଥିତ ହେବାକୁ ପଡ଼େ, ଦୈବାତ୍ ସେ ଉପସ୍ଥିତ ନ ଥିଲେ ମକଦ୍ଦମା ସ୍ଥଗିତ ରହୁଥାଏ । ପ୍ରଥମ ଧର୍ମାଧିକରଣଙ୍କ ନିଷ୍ପନ୍ନ ବିଚାରରେ ଦୋଷ ଦେଖାଗଲେ ଦ୍ୱିତୀୟ ଧର୍ମାଧିକରଣଙ୍କର ମତାନୁସାରେ ରାଜା ବା ସୁଶାସକଙ୍କକର୍ତ୍ତୃକ ପ୍ରଥମ ବିଚାରକଙ୍କ ଦଣ୍ଡ ବିଧାନ କରା ଯିବାର ରୀତି ମଧ୍ୟ ଥିଲା ।

ସୁବିଚାର ନ କଲେ ଧର୍ମାଧିକରଣରୁ ବହିଷ୍କୃତ ଲୋକ ସମାଜରେ ଘୃଣିତ ଏବଂ ପରକାଳେ ନରକଗାମୀ ହେବାକୁ ହେବ ଏହି ଭୟରେ ଅଧିକାଂଶ ବିଚାରକ ଜ୍ଞାନ ଗୋଚରରେ କଦାପି ଅବିଚାର କରୁ ନ ଥିଲେ । ସେଥିପାଇଁ ଅପିଲ୍ ସଂଖ୍ୟା କମ୍ ହେଉଥିଲା ।

ଅମାତ୍ୟାଃ ପ୍ରାଡ୍‌ବିବାକୋବା ଯତ୍‌କୁର୍ଯ୍ୟୁଃ କାର୍ଯ୍ୟ ମନ୍ୟଥା
ତତ୍‌ସ୍ୱୟଂ ନୃପତିଃ କୁର୍ଯ୍ୟାତ୍ ତାନ୍ ସହସ୍ରଂ ଚ ଦଣ୍ଡୟେତ୍ । (ମନୁ)୯

ବିଶେଷତଃ ବିବାଦ ମାନେ ଯେ, ଧର୍ମାଧିକରଣଦ୍ୱାରା ମକଦ୍ଦମା ନିଷ୍ପତ୍ତି ହେଉଥିଲା ତାହା ନୁହେଁ । କୁଳ, ସିନ୍ଧ, ଶ୍ରେଣୀ, ପରିବାର-ରକ୍ଷକ ପିତା, ମାତା ଏବଂ ଗୁରୁ ପ୍ରଭୃତି ପରିଶେଷରେ ଗ୍ରାମର ପାଞ୍ଚଭଦ୍ରବ୍ୟକ୍ତିଙ୍କ ଦ୍ୱାରା ପ୍ରଥମେ ମକଦ୍ଦମା ନିଷ୍ପତ୍ତି ହେଉଥିଲା, ସେଥିପାଇଁ କେହି ଧର୍ମାଧିକରଣକୁ ମକଦ୍ଦମା କରିବାକୁ ଆସୁ ନ ଥିଲେ ଅପିଲ୍ ମକଦ୍ଦମା ତ ଦୂରର କଥା ଏତଦ୍ଦ୍ୱାରା ଜଣା ଯାଉଅଛି-ଯେ, ପୂର୍ବେ ଗ୍ରାମ ପଞ୍ଚାୟତି ଶାସନ ମଧ୍ୟ ଥିଲା ।

Digitized by srujanika@gmail.com

ଶପଥ ଦ୍ୱାରା ମଧ୍ୟ ବିବାଦର ମୀମାଂସା ହେଉଥିଲା । ଶପଥ ପ୍ରକାର ମାହନାରଦ ।

ସତ୍ୟବାହନ ଶସ୍ତ୍ରାଣି ଗୋବୀଜ କନକାନିଚ,
ସ୍ପୃଶେତ୍ ଶିରାଂସି ପୁତ୍ରାଣାଂ ଦାରାଣାଂ ସୁହୃଦାଂ ତଥା ।
(ବୃହସ୍ପତି ସଂହିତା)

ଇଂରାଜମାନଙ୍କ ଶାସନ ପ୍ରଣାଳୀ ପୁଣି ଆଧୁନିକ ଗଣତାନ୍ତ୍ରିକ ଶାସନ ପ୍ରଣାଳୀ, ପ୍ରାଚୀନ ଭାରତୀୟଙ୍କ ଶାସନ ପ୍ରଣାଳୀ ଅପେକ୍ଷା କେଉଁ ଗୁଣରେ ଯେ ଅଧିକ ତାହା ବିଚାରକମାନେ ବିଚାର କରନ୍ତୁ । ନ ଥିଲା କଣ ଅଧିକା ହେଲା କଣ ? ବରଂ ପ୍ରାଚୀନ ସିଭିଲ୍ କୋଡ଼୍ ବର୍ତ୍ତମାନ ସିଭିଲ୍ କୋଡ଼୍ ଅପେକ୍ଷା ସର୍ବାଂଶେ ଉତ୍କୃଷ୍ଟ ।

## କର ଧାର୍ଯ୍ୟ

ରାଜା ବା ସୁଶାସକ କାହାକୁ ହେଲେ ଖଜଣା ଅର୍ଥାତ୍ ଟ୍ୟାକ୍ସ୍‌ରୁ ମୁକ୍ତ ଦେଇ ନ ଥିଲେ, ଏପରି କି ତପସ୍ୱୀମାନଙ୍କର ସଂଗୃହୀତ ଧର୍ମରୁ ମଧ୍ୟ ଷଷ୍ଠାଂଶ କର ପ୍ରକାରାନ୍ତରେ ଗ୍ରହଣ କରୁଥିଲେ । ପ୍ରଜା ବା ଅନ୍ୟ କୌଣସି ରାଜପୁରୁଷଙ୍କ କର୍ତ୍ତୃକ ଯଦି କୌଣସି ଗୁପ୍ତଧନ ଆବିଷ୍କୃତ ହୁଏ ଏବଂ ପଶ୍ଚାତ୍ ଯଦି କୌଣସି ବ୍ୟକ୍ତି ଆସି ଏହି ଧନ ମୋହର ବୋଲି ସତ୍ୟ ଭାଷଣ କରେ ତେବେ ରାଜା ବା ସୁଶାସକ ଏହି ଧନର ଷଷ୍ଠାଂଶ ଗ୍ରହଣ କରି ଅବଶିଷ୍ଟ ଆବିଷ୍କୃତ ବ୍ୟକ୍ତିଙ୍କୁ ଫେରସ୍ତ ଦେଉଥିଲେ ।

ଅସ୍ୱାମୀକ ଧନ ପ୍ରାପ୍ତି ହେଲେ ଏହି ଧନର ପ୍ରକୃତ ଉତ୍ତରାଧିକାରୀ ନିର୍ଦ୍ଧାରଣ ନିମିତ୍ତ ତିନିବର୍ଷ ସମୟ ଦିଆ ଯାଉଥିଲା । ଇଂରାଜମାନେ ବ ୦୧୬ ସମୟ ଦେଉଥିଲେ, ଏଠାରେ ଦେଖନ୍ତୁ ପ୍ରାଚୀନ

Digitized by srujanika@gmail.com

ନିୟମଟି କେତେ ସୁନ୍ଦର ଥିଲା । ଅସ୍ୱାମୀକ ଧନର ଉତ୍ତରାଧିକାରୀର ଅନ୍ୱେଷଣ ପାଇଁ ଘୋଷଣା ପ୍ରଚାର କରା ଯାଉଥିଲା । ତିନିବର୍ଷ ମଧ୍ୟରେ ପ୍ରକୃତ ଉତ୍ତରାଧିକାରୀ ଉପସ୍ଥିତ ନ ହେଲେ ସେହି ଧନ ରାଜକୋଷରେ ମିଶି ଯାଉଥିଲା । ଯଦି ତିନିବର୍ଷ ମଧ୍ୟରେ ଅସ୍ୱାମୀକ ଧନ ପ୍ରାର୍ଥୀର ସ୍ଥିରତା ମିଳେ ତାହାହେଲେ ତାହାଠାରୁ ପ୍ରମାଣ ନେଇ ଏହି ଅସ୍ୱାମୀକ ଧନ ପ୍ରତ୍ୟର୍ପଣ କରା ଯାଉଥିଲା । ସ୍ଥାବରାଧିଗତ ଧନସ୍ୱାମୀ ଶାସକଙ୍କୁ ଷଷ୍ଠାଂଶ, ସ୍ଥଳ ବିଶେଷରେ ଦଶମାଂସ ବା ଦ୍ୱାଦଶାଂଶ କର ସ୍ୱରୂପ ଦେଉଥିଲେ ।

ଯେ ସମସ୍ତ ବ୍ୟକ୍ତିର ଭୂମି ସଙ୍ଗେ ସମ୍ବନ୍ଧ ନ ଥିଲା ଅଥଚ ଅରଣ୍ୟର ବୃକ୍ଷ, ମୃଗୟା ଲବ୍ଧମାଂଶ, ବନଜାତ ମଧୁ, ଗୋଷ୍ଠୋତ୍ପନ୍ନ ଦୁଗ୍ଧ, ଘୃତ, ସର୍ବପ୍ରକାର ଗନ୍ଧଦ୍ରବ୍ୟ, ଔଷଧି, ବୃକ୍ଷାଦିର ରସ, ପତ୍ର, ଶାକ, ଫଳ, ମୂଳ, ପୁଷ୍ପ, ଓ ତୃଣ ପାଷାଣାଦି ଦ୍ରବ୍ୟ ଇତ୍ୟାଦି ପଦାର୍ଥ ବିକ୍ରୟ ଦ୍ୱାରା ଜୀବିକା ନିର୍ବାହ କରୁଥିବା ବ୍ୟକ୍ତିଠାରୁ ମଧ୍ୟ ସୁଶାସକ ଷଷ୍ଠାଂଶ ଗ୍ରହଣ କରୁଥିଲେ ।

ଆଦଦୀତାଥ ଷଡ଼୍‌ଭାଗଂ ଦ୍ରୁମାନ୍ ସମଧୁ ସର୍ପିଷାଂ,
ଗନ୍ଧୌଷଧିରସାନାଂ ଚ ପୁଷ୍ପମୂଳ ଫଳସ୍ୟ ଚ ।

ଯଦି କେହି ପ୍ରବଞ୍ଚକ ଉକ୍ତ ପଦାର୍ଥମାନଙ୍କର ବ୍ୟବସାୟ ଗୁପ୍ତ ଭାବରେ କରୁଥାଏ, ପୁଣି ସେ ଯଦି ଧରା ପଡ଼େ, ତେବେ ସେ ଷଷ୍ଠାଂଶ ଦେବାକୁ ବାଧ୍ୟ ହେଉଥିଲେ, ମଧ୍ୟ ଆଇନ୍ ଅନୁସାରେ ଦଣ୍ଡିତ ହେଉଥିଲେ । ଏହା ପ୍ରାଚୀନ "ଲାଇସେନ୍ସ୍" । ଯେଉଁମାନେ ବାଣିଜ୍ୟ କରୁଥିଲେ ଅର୍ଥାତ୍ ପଶୁପାଳନ ମଣି ମାଣିକ୍ୟାଦି ବିକ୍ରୟ ଦ୍ୱାରା ଜୀବିକା ନିର୍ବାହ କରୁଥିଲେ ସେମାନେ ମଧ୍ୟ ସେହି ସେହି

Digitized by srujanika@gmail.com

ଦ୍ରବ୍ୟୋତ୍ପନ୍ନ ଲଭ୍ୟାଂଶର ପଞ୍ଚାଶ ଭାଗରୁ ଏକଭାଗ ଶାସକଙ୍କୁ କର ସ୍ୱରୂପ ପ୍ରଦାନ କରୁଥିଲେ ।

କ୍ଷେତ୍ରବିଶେଷରେ ଫଳବିଶେଷରେ କୃଷକର ପରିଶ୍ରମ ବିବେଚନା କରି ଧାନ୍ୟାଦି ଶସ୍ୟର କର ନିର୍ଦ୍ଧାରଣ କରି ଯାଉଥିଲା । ଯେତେ ବିବେଚନା କଲେ ମଧ୍ୟ ଷଷ୍ଠାଂଶରୁ ଅଧିକ କର ନିର୍ଦ୍ଧାରଣ କରାଯାଇ ନ ଥିଲା ।

ଗୋଚାରଣ, ଶ୍ମଶାନ ଓ ସର୍ବସାଧାରଣ ରାସ୍ତା ପାଇଁ ଭୂମି ବାଦ ଦେଇ ଅନ୍ୟାନ୍ୟ ହିତକର କାର୍ଯ୍ୟ ପାଇଁ ପ୍ରଜାମାନଙ୍କୁ ଉର୍ବର ଭୂମି ଦିଆ ଯାଉଥିଲା ।

କୁମ୍ଭକାର, କାଂସ୍ୟକାର, ମାଳାକାର, ସୂତ୍ରଧାର, ଚିତ୍ରକର ପ୍ରଭୃତିଙ୍କ ଠାରୁ କର ଗ୍ରହଣ ପରିବର୍ତ୍ତେ ସେମାନଙ୍କ ଠାରୁ ମାସକୁ ମାସ କିଛି କିଛି କାର୍ଯ୍ୟ କରାଇ ନେଉଥିଲେ । ଏହି କାର୍ଯ୍ୟଟା ସେମାନଙ୍କର କର ସ୍ୱରୂପ ଧରା ଯାଉଥିଲା । ନୈଷ୍ଠିକ ବେଦବିତ୍ ବ୍ରାହ୍ମଣମାନେ ମଧ୍ୟ ରାଜା ବା ଶାସକଙ୍କର ମଙ୍ଗଳ କାମନା କରୁଥିଲେ ମଧ୍ୟ ରାଜସିଂହାସନରେ ଉପବେଶନ କଲାବେଳେ ଶାସକଙ୍କୁ ବିଷ୍ଣୁ ବୋଲି ଭାବି ଅଳଙ୍କୃତ ପ୍ରଭୃତି କରୁଥିଲେ । ଏହି କାର୍ଯ୍ୟ ସେମାନଙ୍କର କର ସ୍ୱରୂପ ଧରା ଯାଉଥିଲା ।

"କାରୁକାନ୍ ଶିଳ୍ପିନ ଶ୍ଚୈବ ଶୂଦ୍ରାଣାଂ ଶ୍ଚାତ୍ମୋ ପଜୀବିନଃ,
ଏକୈକଂ କାରୟେତ୍ କର୍ମ ମାସି ମାସି ମହୀପତିଃ ।"

ଏହା ଛଡ଼ା ଶାସ୍ତ୍ର ଆଲୋଚନା କରିବା ପାଇଁ ଏବଂ ସମାଜର ମଙ୍ଗଳ କାମନା କରିବା ପାଇଁ ଜ୍ଞାନୀଲୋକଙ୍କୁ ନିଷ୍କର ଭୂମି ଦାନ କରା ଯାଉଥିଲା ।

Digitized by srujanika@gmail.com

ରାଜା ବା ସୁଶାସକ ପ୍ରଜାମାନଙ୍କର ଧର୍ମ ମାନ ଏମନ୍ତକି ପ୍ରାଣ ପର୍ଯ୍ୟନ୍ତ ସମୁଦାୟ ବିଷୟ ନିଜର ଧନ ମାନ ଓ ପ୍ରାଣ ପରି ରକ୍ଷା କରି ପିତୃତୁଲ୍ୟ ପୂଜାର ପାତ୍ର ଥିଲେ ।

ରାଜା ବା ସୁଶାସକ ମଧ୍ୟ ମୃତ ପିତୃକ ଶିଶୁମାନଙ୍କର ଧନ ମାନ କାତି ଅଗ୍ନିର ବ୍ୟବହାର ବିଦ୍ୟା ଶିକ୍ଷା ସତ୍‌କ୍ରିୟା ରକ୍ଷଣ ବେକ୍ଷଣ ପ୍ରଭୃତି ଯାବତୀୟ ବିଷୟର ଭାର ଗ୍ରହଣ କରୁଥିଲେ । ମୃତ ପିତୃକ ଶିଶୁମାନେ ଯେ ପର୍ଯ୍ୟନ୍ତ ବୟଃପ୍ରାପ୍ତ ବା ଜ୍ଞାନପ୍ରାପ୍ତ ନ ହୋଇଥାନ୍ତି ସେ ପର୍ଯ୍ୟନ୍ତ ସେମାନଙ୍କୁ ପୁତ୍ରବତ୍ ପାଳନ କରି ବିଦ୍ୟାଶିକ୍ଷା ଦେଉଥିଲେ । ଯେତେବେଳେ ସେମାନେ ନିଜର ବିଷୟ ବୁଝିବାକୁ ସମର୍ଥ ହୁଅନ୍ତି, ସେତେବେଳେ ସେମାନଙ୍କର ଯାବତୀୟ ଗଚ୍ଛିତ ଧନ ସୁଧ ସହିତ ସର୍ବଜନ ସମକ୍ଷରେ ଦେଇ ଦେଉଥିଲେ ।

ବ୍ରିଟିଶ ଶାସନରେ ଯେ "କୋର୍ଟ୍ ଅଫ୍ ୱାର୍ଡ୍" ପ୍ରଥା ଥିଲା ତାହା କଣ ଅମ୍ଭ ଦେଶ ଶାସନର ଅନୁକରଣ ନୁହେଁ କି ?

## ଅନାଥା ଶରଣ

ଅନାଥା ସ୍ତ୍ରୀ ମଧ୍ୟ ଶାସକଙ୍କ ଶାସନରେ ଦୁଶ୍ଚରିତ୍ରା ହୋଇ ପାରୁ ନ ଥିଲେ । ଉଦ୍ଧତ ଯୁବା ମଧ୍ୟ ଅନାୟାସରେ ଅସ୍ଥ ସ୍ତ୍ରୀ ବିସର୍ଜନ କରି ପାରୁ ନ ଥିଲେ ।

ରାଜା ବା ସୁଶାସକ, ବନ୍ଧ୍ୟା, ପ୍ରୋଷିତ ଭର୍ତୃକା, ରୋଗାତୁରା, ସାଧ୍ୱୀ, ଧର୍ମଶୀଳା ସ୍ତ୍ରୀ ମାନଙ୍କର, ପୁଣି ଅନ୍ଧ, ବଧୀର, ମୂକ ଇତ୍ୟାଦି ଅକର୍ମଣ୍ୟ ପୁରୁଷ ଓ ସ୍ତ୍ରୀଙ୍କର ଶାସକ ଏବଂ ରକ୍ଷକ ଥିଲେ ।

Digitized by srujanika@gmail.com

## ଷଷ୍ଠାଂଶ କର ଗ୍ରହଣ

ଯଥା ଫଳେନ ଯୁଜ୍ୟେତ ରାଜା କର୍ତ୍ତା ଚ କର୍ମଣାମ୍,
ତଥା ବେକ୍ଷ୍ୟ ନୃପୋରାଷ୍ଟ୍ରେ କଳ୍ପୟେତ୍ ଶତତଂ କରାନ୍ ।

## କର ବର୍ଜନ

ଅନ୍ଧ, ଜଡ଼, ମୂକ, କୁବ୍ଜ, ଅନାଥାସ୍ତ୍ରୀ, ସଂସାରାଶ୍ରମ ତ୍ୟାଗୀ ପ୍ରଭୃତ ଜନଗଣ ରାଜ କରରୁ ବଞ୍ଚିତ ହେଉଥିଲେ ।

ଅନ୍ଧୋ ଜଡ଼ଃ ପୀଠସର୍ପୀ ସପ୍ତତ୍ୟା ସ୍ଥବିରଶ୍ଚଯଃ,
ଶ୍ରୋତ୍ରିୟେଷୁ ପ୍ରକୁର୍ବଂଶ୍ଚ ନଦାପ୍ୟା କେନଚିତ୍ କରମ୍ ।

(ମନୁ)

---

ମୁଦ୍ରାକର—ଶ୍ରୀ ଲକ୍ଷ୍ମୀଧର ଗଡ଼ବଡ଼, ଶ୍ରୀରାଧାରମଣ ପ୍ରେସ, କଟକ—୨

Digitized by srujanika@gmail.com